ପ୍ରକାଶକ :

ଅଭିରାମ ମହାପାତ୍ର
ଗ୍ରନ୍ଥ ମନ୍ଦିର
କଟକ-୨ : ବ୍ରହ୍ମପୁର-୧

ମୁଦ୍ରକ :

ଜୟରାମ ମହାପାତ୍ର
ଗ୍ରନ୍ଥ ପ୍ରକାଶିନୀ
କଟକ-୧

ଗ୍ରନ୍ଥ ମନ୍ଦିର କର୍ତ୍ତୃକ ପ୍ରଥମ ମୁଦ୍ରଣ :
ଡିସେମ୍ବର, ୧୯୭୭

ମୂଲ୍ୟ : ଟ ୮.୦୦

ସାଦା ବନ୍ଧେଇ ଟ ୧୦-୫୦

# ଯନ୍ତ୍ରାରୂଢ଼

ବହୁଦିନର ସେ ବୃଦ୍ଧମଠାକୁ ଲକ୍ଷ୍ୟହେଇ ଗୋଟେ ବରଗଛ ଆଉ ଗୋଟେ ଓସ୍ତଗଛ ଏକାଠି ଲଟେଇ ଉଠିଛନ୍ତି । ବହୁକାଳର ଗଛ ମଧ୍ୟ—ଗୋଟିଏ ଗୋଲଣ୍ଡି ବଟ, ଆରଟି ଶ୍ୱେତ ପିପ୍ପଳ ।

ବୃଦ୍ଧମଠ ପଛକୁ ଯାଉଁଳକବାଟ—ଗୋବଦଯା, ଲୁହାଫାଳ ପଣ ନଘଣ କବାଟ । ସେମିତ ବଳୁଆନହେଲେ ଜଣକ ଆୟତ୍ତରେ ପେଲ ହୁଏ ନାହିଁ, ପେଲଦେଲେ ଗାଉ ଗଉଁ ଡାକେ । ···ତା ପଛକୁ ଦୋଉଙ୍କି ପାହାଚ, ଧାଡ଼ିବନ୍ଧା ଯାଉଁଳ ଖମ୍ବ, ପଥର ଦେହରେ ତଳଯାକ ଯୋଡ଼ି ଯୋଡ଼ି ହୋଇ ପଦ୍ମ, ପଥର ଖୋପରେ ଜୟ-ବିଜୟ । ସବୁ ଯେଉଁଠି ଯୋଡ଼ିଯୋଡ଼ି, ଛନ୍ଦାଛନ୍ଦ, ଗଙ୍ଗା-ଯମୁନା !

ଗମ୍ଭୀର ଭିତରେ ଧୂପ ଧୂଆଁ ଆଉ ଦୀପ ଆଲୁଅରେ ସ୍ମିତ ପ୍ରଫୁଲ୍ଲ ହେଲ ପୂଜା ପାଉଛନ୍ତି ଲକ୍ଷ୍ମୀ-ନାରାୟଣଙ୍କ ଯୁଗଳ ବିଗ୍ରହ ।

ମାତ୍ର ସେଠି ସନ୍ଧ୍ୟା ସକାଳେ ଆରତିବେଳେ ପଟେ ଘଣ୍ଟା ବାଜେ । ଗୋଟିଏ ଶଙ୍ଖ ଫୁଙ୍କା ହୁଏ । ଜଣେ ଗମ୍ଭୀର ଭିତରେ ମନ୍ତ୍ର ପଢ଼େ, ପୂଜା କରେ, ଘଣ୍ଟା ବଜାଏ । ବେଳାବୁଡ଼େ ପାତଳ ଆଲୁଅରେ ଧୂଆଁଧୋଇ ହୋଇ ନିର୍ମଳ ଆକାଶ ସ୍ମୃତିବତ ଘୋଟି ରହିଥାଏ । ଗୋଠଛଡ଼ା ପକ୍ଷୀଟାଏ ଏକୁଟିଆ ବାଟ ଚରି ଉଡ଼ି ଗଲାବେଳେ ଚିଁ ଚିଁ ଡାକେ—ଅଭ୍ୟାସରେ । ଉପରେ ଆକାଶ, ତଳେ ପୃଥିବୀ ତାକୁ ସାଙ୍ଗ ଦେବାକୁ ଯାଇ ଆହୁରି ନିସ୍ତୁଟିଆ କରିଦିଅନ୍ତି । ସେ ହଜିଯାଏ, ମିଳେଇଯାଏ । ଆକାଶରେ ନା ପୃଥିବୀରେ ବାରି ହୁଏ ନାହିଁ । ତଥାପି ସେ ଚିଁ ଚିଁ ଡାକୁଥାଏ । ସେ ତା'ର ନୀଡ଼ ଖୋଜୁଥାଏ । ତା ପିଲାଙ୍କ ପାଇଁ ସେ ଆହାର ଆଣିଥାଏ । ସେମିତଥା କନକନିଆ, ନିସ୍ତୁଟିଆ ସେ ମନ୍ତ୍ର, ଅଉ ସେ ପାତଳ ଘଣ୍ଟି ।

ବ୍ରତ ହେଲାଦିନୁ ଲକ୍ଷ୍ମୀନାରାୟଣ ମନ୍ଦିରର ପୂଜାରୀ ସନାତନ ଦାସ । ବୟସ ତାଙ୍କର ପଚାଶକୁ ଧାପିଲାଣି, ହେଲେ ଦାନ୍ତେ ଦମ୍ଭୁରିଆ ନିର୍ଦ୍ଦୋଷ । ସେତେ ଜଣାପଡ଼ୁନାହିଁ । ସେ ଟିକ୍ ଅଳ୍ପକଥା କହନ୍ତି । ଅଳ୍ପକେ ହସିଦିଅନ୍ତି ମଧ୍ୟ । ସେ ପାନଖିଆ ହସରେ ଯେ ହେଲେ ଦେଖିବ ଲୋକଟା ଖାଏ ଭଲ; ଥାଏ ଆପଣା ସୁଖରେ ଅପେ । ମନେ ମନେ ହୁଏତ କହେ—'ଆଜି ମରିଗଲେ କାଲିକି ଦି'ଦିନ—ଏ ନିଅଣ୍ଟିଆ ସଂସାରରେ ଯଦି

ମିଳୁଛି ଖାଇପିଇ ନିଶ୍ଚିନ୍ତରେ ଦିନାକେତେ ବଞ୍ଚି ତେଣିକି ମରିଯାଅ ।''···ମୋଟ ଉପରେ ତାଙ୍କ ହସ ଦେଖି କେହି ହେଲେ ତାଙ୍କ ମାଉଁସିଆ ଦେହ କଥା ହିଁ କେବଳ ଭାବିବ, ଆଉ କହିବ, 'ଏ ଲୋକଟାର ଜୀବନରେ ଭାବନା କିଛି ନାହିଁ ।'

ମାତ୍ର ତାଙ୍କ ଆଖି ଯୋଡ଼ିକ ?

ଅଳ୍ପ କହିବା, ନବୁଝିଲା ପରି ଆଖି ଯୋଡ଼ିଏ । ଲକ୍ଷ୍ମୀନାରାୟଣଙ୍କର ସେଇ କାଚ ଆଖି ପରି । ସେଥିରେ ପଲକ ନ ଥିଲା ପରି ଲାଗେ ସତ, ମାତ୍ର ସେ କେତେ ଗଭୀର ତା' କଳିବା କଷ୍ଟ ।···ସେ ସବୁ ଦେଖେ, ସବୁ ବୁଝେ, ହେଲେ କେବେ ଠାରି କହିଦିଏ ନାହିଁ ସେ କେତେ ଦେଖିଲା ଆଉ କେତେ ବୁଝିଲା । ପଢ଼ିପାରିଲେ ସେ ଫାଙ୍କା ଆଖି ଭିତରେ ପୋଥିଏ ପାଠ । ସତେ ଯେମିତି ସେ ଯୋଡ଼ିକ ସଂସାରର ଭିତର ବାହାର ସବୁ ଦେଖିଦେଇ କହୁଛନ୍ତି, 'ହଉ, ହେଲା ଏବେ, କ'ଣ ହେଲା ସେଇଠୁ ?'···ମାତ୍ର ବୁଦ୍ଧିମଣ୍ଡା ସବୁ ଆଖିର ଗହୀରରେ ଲୁଚିଥାଏ । ପଦାକୁ ଦିଶେ କେବଳ କହରା କହରା ରଙ୍ଗ ଏବଂ ଆଉସବୁ ଲୋକଙ୍କ ଆଖି ପରି ଅତି ସାଧାରଣ ଆକୃତି ।

ସନାତନ ଦାସ ଲକ୍ଷ୍ମୀନାରାୟଣ ମନ୍ଦିରର ପୂଜାରୀ । ଗାଁଯାକ ଲୋକ ତାଙ୍କୁ ଜାଣନ୍ତି, ଭକ୍ତିକରନ୍ତି । ପର୍ବପର୍ବାଣିରେ ମନ୍ଦିରରେ ଭୋଗଲାଗେ; କିଏ କେମିତି ଯାଚିଥିଲେ ମଧ୍ୟ ଭୋଗ ଲାଗି ହୁଏ । ଦାସେ ସବୁ କଥା ବୁଝନ୍ତି ।

ସେଦିନ ଦର୍ଶକଙ୍କୁ ପଦ୍ଧୁହେଇ ସାରି କବାଟ କିଳାଅଣିଲା ବେଳକୁ ରାତି ପ୍ରାୟ ଦୁଇଘଡ଼ି । ପଧାନପୁଅ ଭିକାରି ଗଣ୍ଡେ ସରପୁଲି ପଠେଇଥିଲା ପୂଜା ପାଇଁ । ସେଇ ପ୍ରସାଦ କାନିରେ ବାନ୍ଧି ଦାସେ କବାଟରେ କୋଳପ ଦେଉଥାନ୍ତି ।···ତାରା ଆଲୁଅରେ ଦେଉଳ, ଗଛ ବୃକ୍ଷ ସବୁ କେମିତିଆ ଦେଖାଯାଉଥାନ୍ତି । ସେଇ ଗୁମ୍‌ସୁମ୍ ଅନ୍ଧାରରେ ସବୁ କାକୁଜୁକୁ ହୋଇ ଯିଏ କୋଳରେ ଯେ, ତା କୋଳରେ ସେ ପଶି ଘୁମାଉଛନ୍ତି—ଏକାକାର ହୋଇଯିବେ, କେହି କାହାଠାରୁ ଆଉ ବାରି ହୋଇ ରହିବେ ନାହିଁ ।

ଦାସେ କଣ୍ଠିମାଳ ଅଣ୍ଟାରେ ଖୋସି ବାହାରିପଡ଼ିଲେ ।

ତାଙ୍କ ଘର ଯାଇ ଗାଁଟାର ଆର ମୁଣ୍ଡରେ । ରାତି ଆସି ଏତିକି ହେଲାଣି । ଜହ୍ନଟିଆ ଶଗଡ଼ ଦଣ୍ଡାଟାରେ ବାଟ ବାରି ବାରି ଦାସେ ଚାଲିଛନ୍ତି ।···

ତାଙ୍କୁ ମିଶି ଦି'ପୁରୁଷ ହେଲା ତାଙ୍କ ଘର ଏ ମନ୍ଦିରର ପୂଜାରୀ । କଥାପଡ଼ିଲେ ଦାସେ ବନ୍ଧୁ ସମସ୍ତଙ୍କରେ ଖାଲି କହନ୍ତି, ''ହଁ, ସବୁ ସେ ପ୍ରଭୁଙ୍କ ଇଚ୍ଛା ।'' ମାତ୍ର ମନକୁ ମନ ଭାବନ୍ତି, ଏଇ ବିଶାଳହେ କୋଣ ପୃଥ୍ୱୀର ମାଲିକ ହେଲେ ଲକ୍ଷ୍ମୀନାରାୟଣ । ତାଙ୍କୁ ଆଶ୍ରା କରି ଏତେ ସହସ୍ର ଲୋକ ପଡ଼ିଛନ୍ତି । ତାଙ୍କ କୃପାରୁ ଏତେ ଜୀବଙ୍କୁ ଆହାର ମିଳୁଛି । ଦାସେ ତାଙ୍କର ସେବା କରୁଛନ୍ତି — କିଛି କମ୍ କଥା ନୁହେଁ ତ ! ସେ ଭାଗ୍ୟ କାହାକୁ ମିଳେ ! ତାଙ୍କ ନନା ମୁକୁନ୍ଦ ଦାସେ—ମରି କାହିଁ ସ୍ୱର୍ଗପୁରେ ରହିଲେଣି । କହୁଥିଲେ, ''ବୁଝିଲୁ ସନେଇ, ଏଇ ଛୋର ସବୁ । ସ୍ୱାଙ୍କୁ ଭରସା କରି ତାଙ୍କ ସେବା କରିଯା, ସେ ତୋ କଥା ବଳେ ବୁଝିବେ !'' ତାଙ୍କର ସେ 'ସନେଇ' ଡାକ ସତେ ଏବେ ସାତ ସପନ ହୋଇଗଲା । ଆଉ

କେହି ତାଙ୍କୁ ଏବେ ନାଁ ଧରି ଡାକୁ ନାହିଁ । ଡାକୁଆ ମଧ୍ୟ କେବେ କେମିତି ଚିଠି ନେଇ ଆସେ ତାଙ୍କ ସମ୍ପନ୍ଧ ଘରୁ । ଆସି ଧନ୍ଦହୁଏ, ସ୍ୱାକୁ ଚାକୁ ପଚାରେ, "ଏ ସନାତନ ଦାସ କିଏ ?"···କେହି ଜଣେ କହେ, "ଆରେ, ଆମ ଦାସେ ମ ! ଦାସଙ୍କୁ ଚହ୍ନିନୁ !" —'ଓ !' ସାଙ୍ଗେ ସାଙ୍ଗେ ସେ ଚୁହିଁଯାଏ । ଟିକିଏ ହସେ; ବୋଧହୁଏ ଭାବେ, "ଦାସଙ୍କର ପୁଣି ଗୋଟେ ନାଁ କ'ଣ ଅଛି ?"···ଏବର ଟୋକାଟା ତ ଶାମ ମଲିକ—ଚୌଦ ବର୍ଷରେ ଖଡ଼ି ଛୁଇଁଲା । ତା' ବାପ ବଳିଆ ମଲିକ । ସେ ବି ସେହି ଡାକଘରେ କାମ କରୁଥିଲା ।

ଏଣ୍ଡ ଏଣିକି କେତେ ସବୁ ବଦଳିଗଲଣି । ଗାଁଟାରେ ଆଉ ପୁରୁଣା ଲୋକ କାହିଁ ?···ପାକୁଆ ମିଶ୍ରେ—ସେ ଦାସଙ୍କ ଜନାଙ୍କଠୁ ବୟସରେ କିଛି ସାନ । ତାଙ୍କୁ ଦେଖିଲେ ଦାସେ କକେଇ ମାନ୍ୟରେ ଓଲଗି ହୁଅନ୍ତି । ମିଶ୍ରେ ଟିକିଏ ନଇଁ ଯାଆନ୍ତି— କହନ୍ତି "ଥିଲେଇ ଜଳେ ?" ଦାସେ କେବଳ ବୁଝନ୍ତି ଯେ ସେ ତାଙ୍କୁ 'ସନେଇ' ବୋଲି ଡାକୁଛନ୍ତି । ଆଉ କେହି ବୁଝନ୍ତି ନାହିଁ, ଜାଣନ୍ତି ନାହିଁ । ବଡ଼ ଆଶ୍ଚର୍ଯ୍ୟ ଲଗେ ଦାସଙ୍କୁ । ତାଙ୍କ ଅହନକରେ ତାଙ୍କ ନାଁଟା ଆସ୍ତେ କେମିତି ମେଣ୍ଟି ମେଣ୍ଟି ଯାଉଛି ! ତାଙ୍କୁ ଯେତେ ଦୁଃଖ ଲଗେ ନାହିଁ, ସେତେ କଉତୁକ ଲଗେ । ସମାଧାନ କଲା ପରି ଭାବନ୍ତି—ଯାଉ, ଏବେ କ'ଣ ହେଇଗଲା ? ନାଁଟାରେ କ'ଣ ଏମିତିଆ ଅଛି କି ? ଏ ମଣିଷ ତ ଦିନେ ଚାଲିଯିବ ।

ବାଉଁଶ ବୁଦାଟା ଦେଉଳ ଆଉ ଗାଁ ମୁଣ୍ଡ ମହିରେ । ଟାଉ ଟାଉ ଚାଲି ଦାସେ ଆସି ସେଇଠି ପହଞ୍ଚିଗଲେଣି ।

'ଆସ୍ତିକ ! ଆସ୍ତିକ !' କହି ଭୁଇଁଟାକୁ ଠେଙ୍ଗାରେ ପାହାରେ ଲେଖାଁ ବାଡ଼େଇ ବାଡ଼େଇ ପାଣହୋଇଗଲେ । ଏଇଠି ପରା ପଅରିହନ ପଧାନଘର କପିଳା ବଳଦଟାକୁ ନାଗ ଦଂଶିଦେଲା ! ଆସ୍ତିକ ! ଆସ୍ତିକ ! ଗରୁଡ଼ ! ଗରୁଡ଼ !

ସେଇଠୁ ଗାଁ ଆଖଡ଼ା ଘରର ଆଲୁଅ ଦିଶେ । ରାତି ଅଧ ପର୍ଯ୍ୟନ୍ତ ଟୋକାଙ୍କ ଗହଳି ଥାଏ ।

ଗାଁଟାରେ ଏବକୁ କେତେ ସବୁ ପାଠୁଆ ବାହାରିଲେଣି । ମାତ୍ର ସ୍ୱାପକର ବୁଦ୍ଧି ଆଉ ହେଲନାହିଁ । ରାତି ଅଧପର୍ଯ୍ୟନ୍ତ ଜଗ୍ରତ ହେବେ, ଉଠିବେ ବେଳ ଦ'ଘଡ଼ିକୁ । ଖାଇବାରେ ହେଲେ କ'ଣ ତାଙ୍କର ଶ୍ରଦ୍ଧା ଅଛି ? ବଣି ଠୁଙ୍କିଲା ପରି କ'ଣ ସବୁ ଖାଉଛନ୍ତି ? ଟୋକା ବୟସ, ସ୍ୱାପ ଚମ ତଳେ ରକ୍ତ ଉଭାର ରହିଥାନ୍ତା ! କ'ଣ ନା ଚାମଡ଼ା ପରି ଧଡ଼ିଆ ମୋଡ଼ିଆ ହୋଇ ବୁଲୁଛନ୍ତି ଏଗୁଡ଼ାକ—ପିଣ୍ଡରେ ପ୍ରାଣ ନାହିଁ ଯେମିତି, ଫୁଙ୍କିଦେଲେ ପଡ଼ିଯିବେ । କଉ, ଆହାର-ନିଦ୍ରା ପରିତ୍ୟାଗ କରି କଣ କୋଉକାଳେ ମଣିଷ ବଞ୍ଚିଲଣି ! ଛିଃ !

ଆଖଡ଼ା ଘରର ଆଲୁଅ ସବୁ ହୋଇ ଖଣ୍ଡେ ବାଟ ବୋହି ଯାଇଛି । ମୋଡ଼ର ନବୃଢ଼ ଅନ୍ଧାର ଭିତରୁ ଆଲୁଅ ଧାର ଭିତରକୁ ପଶିଆସିଲେ ଆଗ ଠେଙ୍ଗା, ତା ପଛକୁ ପେଟ, ତା ପଛକୁ ଦାସେ ଆପଣେ । କାନ୍ଧରେ ମସିଆ ଗାମୁଛା ଖଣ୍ଡ ଘିଅରେ ବୁଡ଼ ପୁତ ପୁତ

ହେଉଥାଏ । ଖେଳ ଯଉପୁଳଯାକ ସେଥିରେ ଆକମାଣ ଦାସେ ଘରକୁ ନଉଥାନ୍ତି ।

'ଯାହା କହ, ଖଲୁଆ ପଧାନଟା ସେ ଘଉଯାକରେ ସୁନାଟାଏ । ସେ ଖାଏ ଯେମିତ, ଖଟୁଆଏ ତା'ଠୁ ଆହୁର ଭଲ । ମନ ଚଳ୍ଳି ସେ ଦଏ । ତା ବାପଟା ନଇଲେ··· ଓହୋ, ପୁରୁଣା କାମି । ବହୁରୁ ମଳ ଦବନାହିଁ ସେଇଟା । ଏବକୁ ସିନା ସମୁଦ୍ର ପାଙ୍ଗରେ ବାଦ କର ପୁରାଣ ବସଉଛୁ ବର୍ଷକୁ ବର୍ଷ । ନହେଲେ ସିଏ କ'ଣ ଉପରେ ପଡ଼ ଧର୍ମକରନ୍ତା ? ଆଜିର ଯଉପୁଳ ଗଣ୍ଡାକ ଖଲୁଆ ନହେଲେ କଏ ଆଉ କଟେଇଥାନ୍ତା ! ···ଏ ଯଉପୁଳ ଗଣ୍ଡାକୁ କାହାକୁ ନେଇ ବାଣ୍ଟିବ ?···ଏତକ ଲୋକ ଘରେ । କାହାର ଖଣ୍ଡେ ତ କାହାର ଯୋଗିଏ ପଡ଼ିବ । ···ଓଃ, ଜାଣିବା ଲୋକ କୁଟୁମ୍ବ ଉପକାର କରବ ନାହିଁ । ···ମାତ୍ର ଏ କ'ଣ କାହା ହାତ କଥା ହେଇଚ ! ସଂସାର କଲଠୁ ତ ପୁଅଝିଅ ଅବଶ୍ୟ ହେବେ । ଏ ପରି ମାୟା···ଏକା ଶ୍ରୀକୃଷ୍ଣଙ୍କୁ ଗ୍ରାହ୍ୟଦେଲେ କଏ ସେଥିରେ ଆଉ ନପଡ଼ିଛ ? ହଉ ଦେଖିବା, ଯାହା ହବ ବାଣ୍ଟି କୁଣ୍ଟି ଖାଇବେ ।'

ଏତକବେଳେ କୋଉଠି ଥିଲ ଗୋଟେ କୁକୁର ଆସି ଛପକନା ତାଙ୍କ ପଛରେ ଲାଗିଗଲ । ସେ ଚମକପଡ଼ ବାଡ଼ଟାକୁ ବୁଲେଇଦେଲେ । ଦେଖିଲେ, ଅନ୍ଧ ଭଅଁର ଘୋଡ଼ାବୁଆ ପର ବାଦୁଆ ନଣଢରେ ଦ'ଖେପା ଅପସରିଗଲ । ମାତ୍ର ପବନରେ ଯଉପୁଳର ଫିଠାଳିଆ ଚକ୍‌କଣିଆ ଗନ୍ଧ ତାକୁ ଓଲିଆ କରଦେଇଛୁ । ସେ ଦାସଙ୍କ ପିଛ ଆଉ ଛାଡ଼ୁଛ କେତେବେଳେ ? ଦାସେ ଲମ୍ବ ଲମ୍ବ ପାହୁଲ ପକେଇ ଅଟକିଗଲେଣି । ଛନ୍‌ଛନିଆ ଲାଗୁଛ । ସିର୍ ସିର୍ ହୋଇ ଗୋଟିଏ ଡେଙ୍ଗୁ ଶୀତକଣ୍ଟା ବଗ୍ଡ଼ ଗୁଲଲାପର ତାଙ୍କ ତଙ୍କଣିଯାଁ ପର୍ଯ୍ୟନ୍ତ ଚଢ଼ିଯାଉଛୁ । ଦାସେ ଭୟରେ ଧାଇଁଲ ପର ଗୁଲଛନ୍ତି ।

ଦାସଙ୍କର ଅନେକ କଥାରେ ଭୟହୁଏ । ସେ ତାଙ୍କ ତଳସାହ ଲଣ୍ଡା ପଠାଣକୁ ଭୟକରନ୍ତି । ଘର ଟିକସ୍ ନଏ ବୁଢ଼ା ନ'ହାକ, ତାକୁ ଭୟକରନ୍ତି । କରଜ ଆଣିଛନ୍ତି··· ମାସକୁ ମାସ ଟଙ୍କାରେ ଅଣେ କଲନ୍ତର ଦଅନ୍ତି, ହେଲେ ପାଜ ବୁଢ଼ାଟାକୁ ସେ ଡରନ୍ତି । ଘରର ଘରଣୀ ସିନା, ରାଗ ଉଠାଣିରେ ସେ ଯେଉଁ ଚଣ୍ଡୀରୂପ, ତାକୁ ଦାସେ ପ୍ରାଣେ ଭୟକରନ୍ତି । ଏମିତ ଏମିତ ସେ କାହାକୁ ଆଉ ନଡର ଅଛନ୍ତି ? ପୁଅ, ବୋହୂ, ସାହ ପଡ଼ଶା, ବନ୍ଧୁ, ଗୋତ ସମସ୍ତଙ୍କୁ ଉଣାଅଧିକେ ଦାସେ ଡରନ୍ତି । ବଞ୍ଚିବାକୁ ହେଲେ ଏମିତ ଡରଡର ବଞ୍ଚିବାକୁ ହେବ, ଆଜି ଡରଡର ଦାସଙ୍କ ବହକ ଗଲ ।

ହୁସ୍ କର ଠେଙ୍ଗାଟା ବୁଲଲ !

ବାଦୁଆ ମଧ ତରକ ଘୁଞ୍ଚିଗଲ । ଏଇଟା ଦାସଙ୍କର ଚହ୍ଲା କୁକୁରଟା ଯେ, ହେଲେ କ'ଣ ହେଲ ? ଲଣ୍ଡା ପଠାଣ କଣ ତାଙ୍କ ଚହ୍ଲା ନୁହେ, ନା ତାଙ୍କ ଟୁକୁମା ତାଙ୍କ ଚହ୍ଲା ନୁହେ ? ପଶୁ ଜନ୍ତୁ ସ୍ୱାପ, ସେ କ'ଣ ଚହ୍ଲା ଅଚହ୍ଲା ବାରବ ? ଯଉପୁଳ ଲୋଭରେ ଗାଉଁକନା ଦେକକୁ କାବଦେବ କ ଆଉ ! ନୃସିଂହ ! ନୃସିଂହ ! ନୃସିଂହ !

ପୋଖରୀ ହୁଡ଼ାଟା ପାରହୋଇଗଲେ ଦାସେ ଘରଭିତରେ ପଶିଯାନ୍ତେ । ପଛରୁ ପେଲଦେଲ ପର, ମାଡ଼ ପକାଇଲ ପର ଯାହା ଲାଗୁଥିଲ ଟିକଏ ଉଶ୍ୱାସ ଜଣାଗଲ । ଦାସେ

ବୁଲିପଡ଼ି ଦେଖିଲେ ବାଘୁଆ ପଛେଇ ଗଲାଣି । 'କୁ...ଜାଁ' ହୋଇ ସେ ଖେଳ ଲଗେଇଚ—ଆରଟା ଦାଣ୍ଡବୁଲା କୁତ୍ତଟାଏ ହବ ପରା !

'ଓ !!'......

ଦାସେ ଅଳ୍ପକେ ସବୁ ଠଉରେଇନେଲେ । ଉଲ୍ଲାସରେ ଟିକିଏ ହସିଦେଇ ନିଶ୍ଚିନ୍ତ ଚାଲିଲେ ।

ନୀଳକଣ୍ଠ ପଣ୍ଡିତ ସ୍ୱାପ କାଶୀରୁ କ'ଣ ପାଠ ପଢ଼ି ଆସିଛୁ ବୋଲି ବହଲେଇ ହୁଏ ସିନା, ମଝିରେ ମଝିରେ ମାତ୍ର ଭଲ ମନ୍ଦ କଥାଟିମାନ କହେ । ବଇଲ—ଆହାର, ନିଦ୍ରା, ଭୟ, ମୈଥୁନ ହେଲା ଜୀବନର ମୂଳ । ସ୍ୱାପ ସତ କହୁଥିଲା ! ମଣିଷ ତ ଏଥିରେ ପଡ଼ି ମୁକୁଳିପାରୁନାହିଁ । ଶ୍ରୀଅଡ଼ ଚେର ଗୁଡ଼େଇଲାପରି ଏସବୁ ଜକଡ଼ି ଧରିଛନ୍ତି । ଆଉ ବାଘୁଆ ତ ସହଜେ ପଶୁଜନ୍ତୁ ! ସ୍ୱାପ ଧାଉଁଥିଲା ସରପୁଲି ଖାଇବ ବୋଲି । ଲାଙ୍ଗୁଡ଼ି ଟିପ ଟିପି କରି ଯେମିତି ସେ କୁତ୍ତ ସବୁ ମୁହଁ ଦେଖେଇଦେଇଛୁ...ବାଘୁଆ ଏକା ଅରକେ ଜବତ୍ । ମନକୁ ମନ ହସିଲେ ଦାସେ ।

ଆଚ୍ଛା, ବଉଲଟାକୁ କାଲି ହାସପାତାଳ ନବା । ସେଥିରେ ପୁଣି କୁଆଡ଼େ ବଡ଼ ବାହୁସ୍ତି ହଉଚନ୍ତି ।

ତାଙ୍କୁ ଆହ୍ନର ନିସମାଡ଼ିଲା ।

ସ୍ୱା ଭିତରେ ଦାସେ ଘର ଦୁଆରେ ପହଞ୍ଚିଯାଇଛନ୍ତି । କବାଟ ଫିଟାଇ ଘରଣୀ ପ୍ରଥମ ଡାକିଦା ଶୁଣେଇଲେ, "ଆଉର ଅନ୍ଧାରଟିକ ଆସିଲ ନାହିଁ ! ପିଲେ ସବୁ ସେ ପୁଆଡ଼େ ଶୋଇଗଲେଣି ।"

ଦାସେ କିନ୍ତୁ ଅବାଗରେ ଉତ୍ତର ଦେଲେ—"କାଲି ସକାଳୁ ବଉଲକୁ ହାସପାତାଳ ନବା । ଆଉ ନିଅ ଏ ସରପୁଲି ଗଣ୍ଡାକ ରଖ ପିଲାଙ୍କୁ ଦବ ।" ମନକୁ ମନ କହୁଥାନ୍ତି, "ସ୍ୱାପ ସବୁ ସମାନ; ମଣିଷ, ଗାଈ, କୁକୁର, ସର୍ବେ ସମାନାଃ ।"

ଦାସଙ୍କୁ ବଡ଼ ନିଦ । ସେ ଗୋଡ଼ହାତ ଧୋଇ, ଯାଇ ସିଧା ଖଟରେ ଗଡ଼ିପଡ଼ିଲେ ।

କଡ଼ ଲେଉଟାଉଛନ୍ତି ଦାସେ ।

ଘରଣୀ ପିଣ୍ଡାରେ ବସି ସରପୁଲି ଚାଖିଛନ୍ତି । ଡିବିଟା ଜଳୁଛି । ଅଧରାତିଆ ପାସେଞ୍ଜର ଧଡ଼ ଧଡ଼ ହୋଇ ଗାଁ ମଶାଣି କଡ଼ ଦେଇ ଗଡ଼ିଚାଲିଗଲା । ଲୁହା ପଥରର ରାସ୍ତା କାମୁଡ଼ି ସେ ପଡ଼ିଥାଏ, ଧାଡ଼ି ବଦଳେଇ ପାରେନାହିଁ । ଦିନ ରାତି ସାଉଁ ସାଉଁ ହାଉଁ ହାଉଁ ହୋଇ ଧାଉଁଥାଏ । ଦେହସାକ ତାର ଜଳାକବାଟି, ଫାଙ୍କା, ମେଲା । ମଣିଷ, ପେଡ଼ି, ପେଟେରା ସେଥିରେ ଗଳି ଯାଆନ୍ତି, ପୁଣି ଗଳି ବାହାରି ଆସନ୍ତି । ଭିତରେ ତା ନାଡ଼ି ଧରି ଯେ ବସିଛି ସେ ଯେମିତି କଳ ମୋଡ଼ିବ ସେମିତି ଚକ ଗଡ଼ିବ; ଆଲୁଅ ଜଳିବ, ଲିଭିବ । ବିଚିତ୍ର ବଡ଼ ହନ୍ତସନ୍ତ ହୁଏ ଏ ରେଲଗାଡ଼ିଟା !

ଏତ ବୋଧହୁଏ ଆଖଡ଼ାଘର ପାରିହୋଇଗଲା । ସେ ଟୋକା ପଞ୍ଝା ଏଇଲାଗେ ଗୋଟିଏ ଗୋଟିଏ ଉଠିବେ । କୁଳାଙ୍ଗାର ସ୍ୱାପେ, ଦେଖିବାକୁ ସିନା ଏମିତି ମଢ଼ିଆ, ମାତ୍ର

ରସିକପଣିଆ କ'ଣ କମ୍ ? ବଢ଼ ଚାଣି ଅଭିଆଡ଼ୀ ଟିଅକ୍ସ ବଣଭୂଆ ପଣ ତକେଇବେ, କଣ ତକୁ ଦାନ୍ତ କକୁଚିବେ । ମାତ୍ର ତାଙ୍କର ବା ଆସୁନ୍ଥ କ'ଣ ? ବୟସ ଜାଣି ପ୍ରକୃତ ବକାର ତ କଷ୍ଟସ୍ଥ ହବ ! ଖର୍ଦ୍ଦନ ଭେଣ୍ଡି ଗଛ ଶୁଖି ଶୁଖି ଶୁକୁଟା, ବୁଢ଼ି ଆ ହୋଇଗଲେ ସୁଦ୍ଧା କ'ଣ ସେଥିରେ ଫୁଲ ନ ଧଣବ ନା ଫଳ ନ ଫଳବ ? ତାଙ୍କୁ ଯେମିତ ନଚେଇବ ସେମିତ ନାଚବାକୁ ସେମାନେ ବାଧ । ବୃଢ଼ୀଆଣି ଜାଲରେ ମାଛ ପର ତାଙ୍କୁ ନ ପକେଇଲେ କ'ଣ ମାୟା ଗୁଡ଼୍‌ଛୁ ? ବଢ ଅଲୁଅ ଜଳ ଜଳ ଲଭିଯାଏ । ତା ଭିତରେ ଗୁଡ଼ଏ ଉଡ଼ାପୋକ ଡେଣା ପୋଡ଼ି କମିଖି ହୋଇ ମରଯାନ୍ତ । ନହେଲେ କ ଆଉ ଏ ସଂସାର ଚଳନ୍ତା ? ନାସ୍ତି ହେଲେ ପର୍ ମୋହନୀ—ପୁରୁଷ ସେଥିରେ ପଡ଼ବେ, ବୁଡ଼ବେ, ଉବେଇ ଚୁବେଇ ହେବେ । ଶେଷକୁ ଏଇ ଉବେଇ ଚୁବେଇ, ଚଣା ଓ୍ୱଟର୍ର ପୁର୍ଣ ଲେଖାହେବ ।

ଦାପ ଲଭିଛୁ ।

ଘରଣୀ ସରପୁଲଆ ସ୍ୱରରେ ପଗ୍ଚରଲେ, "ଶୋଇଲଣି କଓ ! ଇମିତ କଦ ଆଉ ଦେଖିନାହିଁ ! ଉଠ୍ଚୁ !!"

"ଆରେ ନାହିଁ ମ ! କଦ କ'ଣ ହଉଛୁ କ ? ଆଜ ପଗ୍ ଧାଇଁ ଧାଇଁ ହାଲିଆ ହୋ ! ତୁମକୁ କ'ଣ ସେ ନ୍ୟାସ୍ଥ କହିଲଣି କ ?"

ପାଖରେ ଆସି ବସିଲେ ଟୁକୁବୋଉ । ଦାସେ ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତେ ବାଘୁଆ ବଷୟ ବେଶ୍ ରସୁଆଳ କର ବୁଝାଇ ଗଲେ ! "ଆହେ, ଟିକଏ ଧୀର୍ ଧୀର୍ କହ ! ତମର ଆଉ କୋଉ ବୟସକୁ ବୁଦ୍ଧି ହବ ! ଆର ଘରେ ପଗ୍ ପୁଅ ବୋହୂ ଶୋଇଚନ୍ତ !"

× × ×

ତା ଆରଦନ ସକାଳ ।

ଗୋଟିଏ ମେଘୁଆ ଅଳସୁଆ ସକାଳ ।

ଦାସେ ଉଠି ବଢ଼ ଉଦାସରେ ବାହାରେ ଠିଆହୋଇଛନ୍ତ । ହଠାତ୍ କାହିଁକ ନୀଳକଣ୍ଠ ପଣ୍ଡିତେ ତାଙ୍କର ମନେପଡ଼ଲେ । ନୀଳକଣ୍ଠ ପଣ୍ଡିତ ଗୀତା ପଢ଼େ, ବୁଝେ, ମାତ୍ର ତାଠ୍ ବେଶୀ ବୁଝାଏ । ଶାସ୍ତ୍ର ମଧ ପଢ଼ିଛୁ । ହେଲେ କ'ଣ ହବ—ଏବଟିକୁ ମିଶାଇଲେ ଚାର ହେଲେ ପାଞ୍ଚଟି ପିଲ । ଇଆଡ଼େ ଜମି ସଂକାନ୍ତ ମକଦ୍ଦମା ବ ଗ୍ଲଲଛୁ । ପଣ୍ଡିତ ସନ୍ଧ୍ୟାଉଲକୁ ଦୁଖପାଏ, କୋଡ଼ଏ କୋଣ ର୍ସ୍ତାରୁ ଗ୍ଲଲ ବୁହା ହୋଇ ଆସେ । ସେଇଟା ତ ସବୁ ଜାଣେ, ମାତ୍ର ନ ଜାଣିଲା ଲୋକଙ୍କ ପର ଆଚରଣ କରେ କାହିଁକ ? ସେଦନ ତା ପୁଅ ଇନ୍ଦ୍ରମଣି ଗୋଟେ ସର୍ବ କର କ'ଣ ଗୁଡ଼େ ଗପିଲା । ବାପ କୁହାଳିଆକୁ ପୁଅ କୁହାଳିଆ ! ମାତ୍ର ସେ କ'ଣ କହିଲା ? କୁଆଡ଼େ ଏବେ ସବୁ ଚନ୍ଦ୍ର ଗ୍ରହକୁ ମୂଷା, ମାଙ୍କଡ଼, କୁକୁର ସବୁ ପଠେଇଲେଣି ! ···ଶେଷକୁ ପଞ୍ଚେ ମଣିଷ କୁଆଡ଼େ ଜଗି ବସିଛନ୍ତ ଯିବେ ବୋଲି ! ହଁ, ଘୋର କଳିକାଳ···ନହେଲେ କ'ଣ ଏମିତ ବପରୀତ ବୁଦ୍ଧି ଘୋଟେ ? କଓ, ଚନ୍ଦ୍ରମଣ୍ଡଳ କାହିଁ ଦୁଇ ଲକ୍ଷ ଯୋଜନ, ସେଠକ ପୁଣି ଇଏ ପୁଅ ହେଲେ ଯିବାକୁ ! ହଁ, ଯାଇଥିଲେ ରାଜା ଦଶରଥ—ଶନିଙ୍କ ସାଙ୍ଗେ ମଇତ୍ର ବସି ବାହାର ଆସିଲେ । ମହାଶୂନ୍ୟ

ଯେ ମହାକାଳ ରୂପ, ଯେଉଁ ଗୋଟେ ଯନ୍ତ୍ରରେ ବସି ଘୂରୁଛନ୍ତି ତାଙ୍କୁ କଲଦେବେ ! କଉଁ, ଏଇଠୁ ତ ଖୋପଟିଏ ନେଇ ଯିବ, ସ୍ବାପ ଶୂନ୍ୟକୁ ଯାଅ, ଶନକୁ ଯାଅ ସେଥିରେ କ'ଣ ଥାଏ ? ସେଇ ହେଲଣି ଅସଲ କଥା । ଏ ଖୋପ ନ ଛାଡ଼ିଲେ କୌଣସି କଥା ହବ ନାହିଁ ।

ନୀଳକଣ୍ଠ ବିପାଠୀ ସ୍ବାପ ପଣ୍ଡିତ । ମାତ୍ର କ ପଣ୍ଡିତ ସେ ? ସେଇଟା କ'ଣ ଜାଣେ ?···କାହାକୁ ଭଲ ଜଣା ଅଛି ?···ଏ ପରା ଚକ୍ରକୂଟ ମାୟା ! ପଣ୍ଡିତ ଅପଣ୍ଡିତ ସମସ୍ତେ ସ୍ବାପ ଅଠାକାଠିର ଶୁଆ । ଅଳ୍ପ ବହୁତ ସମସ୍ତେ କାଣ୍ଡିଆ ଅଠାରେ ଲାଗଚେ । ମରିବା ପଛେ ସେ ଅଠା ଆମକୁ ନ ଛାଡ଼େ ।···ନ ଛାଡ଼ୁ ହେ ! କ'ଣ ହେଇଯିବ ସେଇଠୁ ? ବ୍ୟାସ ପରାଶର ତ ଆମ ଆଗରୁ ଯାଇଛନ୍ତି । ସହସ୍ର କୋଟି ଜୀବ ଯାଇଛନ୍ତି, ଯିବେ, ଆମେ ମଧ୍ୟ ଗଲୁଁ କ'ଣ ହେଇଗଲା ?

ହାଇ ମାରି ଦାସେ ପେଟରେ ହାତ ବୁଲଉଥାନ୍ତି । ଡାକଲେ, "ଆରେ ବଟ ! ପାଣି ଲୋଟେ ଆଣିବୁ, ମୁହଁ ଧୋଇବା ।"

# ନରମାୟା

"ଆକୁଞ୍ଚିତ କେଶ ପୁଣି ସୁପଞ୍ଚ ବଦନ ।
ରସାଣ କଡ଼ି ପ୍ରାୟେକ ଲଲାଟ ଚନ୍ଦନ ॥
ନୀଳରେଖା ପ୍ରାୟେ ତଥି ପରେ ରୋମାବଳୀ ।
ସ୍ଥିର ଦର୍ପଣରେ ନୀଳରେଖା ପ୍ରାୟେ ଝଳ ॥"

ଗଛରୁ ତୋଳାଲପର ପଦମାନ !!

ଦାସେ ପଦେହେଲେ ହୁଡ଼ନ୍ତି ନାହିଁ, କି ଅଠର ଖଣ୍ଡ ମହାଭାରତଯାକରେ ଠାଏ ହେଲେ ଅଟକି ଯାଆନ୍ତି ନାହିଁ । ଗୋଟେ ଯାଇ ଗାଁମୁଣ୍ଡ ପୋଖରୀ ହୁଡ଼ାରେ ବସି ଜହ୍ନ ଆଲୁଅରେ ପୁରାଣ ଶୁଣନ୍ତି, ସେଠିକି ମଧ୍ୟ ଠୋ ଠୋ ଶୁଭେ । ଦାସେ କିନ୍ତୁ ଗାଉଥାନ୍ତି ଯାଇ ପାଏ ବାଟରେ, ପଧାନ ବୁଢ଼ା ଗୁମୁଣ୍ଡିଆ ତଳେ ।

ଗାଇବାର ଭଙ୍ଗୀରେ ଦାସେ ବେଶ୍ ଶାରଳା ଦାସଙ୍କ ଅର୍ଥଟି ବୁଝାଇଦେଇଯାଆନ୍ତି । ଶୁଣିବା ଲୋକେ ବୋହଲ ଉଠନ୍ତି, ଦାସେ ଝୁଲିଲେ ସେମାନେ ବି ଝୁଲନ୍ତି । ସେମାନଙ୍କୁ ଲାଗେ ପାଞ୍ଚ ପାଣ୍ଡବ ତାଙ୍କ ନିଜ ଲୋକ, ଦ୍ରୌପଦୀ ତାଙ୍କ ଘରର ବୋହୂ,—କୀଚକ ଶଳେ ଯାଇ ତାଙ୍କ ପଡ଼ିଶା ଗାଁ ଲୋକ—ହରିପୁରିଆ—ଏ ବର୍ଷ ମେଳଣ ବେଳେ ତାଙ୍କ ଭଣ୍ଟି ମୋଡ଼ି ନଆଁକୁ ପକେଇଦେବେ । କୀଚକ ଦ୍ରୌପଦୀଙ୍କୁ ସଭାରେ ଅପମାନ ଦେଲାବେଳେ ଦାସେ ରାଗରେ ଫୁଲିଉଠନ୍ତି । ଦ୍ରୌପଦୀ ବିରାଟଙ୍କୁ ଅନୁନୟ କଲାବେଳେ ତାଙ୍କର କୋହ ଉଠେ, ସ୍ୱର ଭାଙ୍ଗି ପଡ଼େ । ଭୀମସେନ ଆଖଡ଼ା ଘରକୁ ସଜ ହେଲାବେଳେ ଜଙ୍ଘରେ ଚାପୁଡ଼ା ମାରି ଦାସେ ସଳଖି ହୋଇଯାଆନ୍ତି । ପୋଥି ଉପରକୁ ଟେକିହୋଇଯାଏ । ସମୁଦ୍ରରେ ପୂର୍ଣ୍ଣିମୀ ଜୁଆର ପରି ତାଙ୍କ ସ୍ୱର ତେଜିହୋଇଯାଏ । ଚଣମାରେ ଘିଅ ଦୀପ ଆଲୁଅ ପଡ଼ି ଦାଉ ଦାଉ ଦିଶେ । ଶିଖାରେ ହଳଦିଆ କନିଅର ଫୁଲ ଝୁଲେ, କାନରେ ମଗରଦିଆ କୁଣ୍ଡଳ ଝୁଲେ । ଦୂରରୁ ଦେଖିଲେ ଜଣାପଡ଼େ ସତେ ଯେମିତି ପୁରାଣ ପଣ୍ଡା ଓ ଶ୍ରୋତା ସବୁ ସେଇ ସ୍ୱର ଓ ମହାଭାରତର ଜୁଆରରେ ପଡ଼ି ଝୁଲୁଛନ୍ତି । ଦାସେ ଶବ୍ଦରେ ପ୍ରାଣଦାନ କରିଦିଅନ୍ତି । ଯେତେ ଥର ଶୁଣିଲେ ମଧ୍ୟ ଆହୁରି ଥରେ ସେଇକଥା ଶୁଣିବାକୁ ମନହୁଏ । ପଧାନବୁଢ଼ା ଭକ୍ତିରେ ଗଦ୍‌ଗଦ୍ ହୋଇ ଦାସଙ୍କ କପାଳରେ, ବୁକୁରେ ମେଞ୍ଚାମେଞ୍ଚା ବାସି ଚନ୍ଦନ ବୋଳେ । ଗାଁର ବୁଢ଼ା ବୁଢ଼ୀ ସବୁ ମେଞ୍ଚାଏଲେଖାଁ ଚନ୍ଦନ ଆଣିଥାନ୍ତି । ଖରାଦିନେ ଦାସଙ୍କୁ ମଧ୍ୟ ଚନ୍ଦନ ବଡ଼ ସୁଖଲାଗେ । କିନ୍ତୁ ସେମାନଙ୍କ ଆଖିରେ ସେ କ'ଣ ଆଉ ଦାସେ ହୋଇଥାଆନ୍ତି ? ସେ

ସେଇ ଦ୍ୱାପର ଯୁଗର ଧୌମ୍ୟ, କୋନ୍‌ଭଟ ପରି ବସନ୍ତି । ସମସ୍ତ ପ୍ରତିଶ୍ଳୋକରେ ଋଷିଯାଇ ଧର୍ମରାଜଙ୍କ ହସ୍ତିନାକୁ ଯେଉଁ ଅଟକଯାଏ ।

ପଧାନବୁଢ଼ାର ଅମାର ଘରେ ତିନି ବର୍ଷର ପୁରୁଣା ଧାନ ମୂଷା ଖାଇଯାଆନ୍ତି । ବୁଢ଼ାର ଗୁର ପୁଅ । ବଡ଼ପୁଅ ହରି ପଧାନ ଷାଖ ହୋଇ ଘରକୁ ବୋହୂ ଅଣିଲାଣି । ହେଲେ ତିନି ବର୍ଷ ହେଲା ବୁଢ଼ା ନାତି ନାତୁଣୀ ମୁହଁ ଦେଖିବାକୁ ପାଇନାହିଁ । ନାତି ଆଶାରେ ହରିବଂଶ, ଭାଗବତ, ମହାଭାରତ ବୁଢ଼ା ବର୍ଷକୁ ବର୍ଷ ବସାଏ । କିନ୍ତୁ ସେ କ'ଣ ଜାଣେନାହିଁ ଯେ ଭାଗ୍ୟରେ ନ ଥିଲେ, ଏ କଳ୍ପ ଗଛରୁ ତୋଳି ଆଣିବା କଥା ହୋଇନାହିଁ ଯେ କିଏ ତୋଳି ଆଣି ଦେଇଦେବ ! ଅସଲ କଥା ହେଲା, ବୁଢ଼ାକୁ ପୁରାଣ ଶୁଣିବାକୁ ଭଲଲାଗେ । ପାଟପୁରରେ ତା ସମୁଦି ପ୍ରତିବର୍ଷ ବଡ଼ ଆଡ଼ମ୍ବରରେ ପୁରାଣ ବସାଏ । ପଇସା ମଧ୍ୟ ଖୁବ୍ ଖର୍ଚ୍ଚ କରେ । ପଧାନବୁଢ଼ାର ମନ ଖଲଖଲ ହୁଏ ପୁରାଣ ବସେଇବାକୁ । ଶେଷକୁ ଆଉ ସମ୍ଭାଳି ପାରିଲାନାହିଁ । ଆଜକୁ ସାତ ବର୍ଷ ହୋଇଗଲା ସେ ପୁରାଣ ବସଉଛି । ଗାଁଲୋକ ଶୁଣିବେ ବୋଲି ଆସି ସନ୍ଧ୍ୟାବେଳୁ ତା ପିଣ୍ଡାରେ ବସନ୍ତି, ତାକୁ ସମ୍ମାନ ଦେଖାନ୍ତି । ବୁଢ଼ାକୁ ବଡ଼ ଖୁସିଲାଗେ ।

ଖୁବ୍ ସରଳବିଶ୍ୱାସୀ ପଧାନବୁଢ଼ା । ଏବେ ଗାଁରେ ଗୋଟେ ପୋଖରୀ ଖୋଳେଇଛି । ଏବେ ପ୍ରତିବର୍ଷ ତା' ଜମି ଆମ୍ବ ପାଖଆଖ ପାଞ୍ଚ ଖଣ୍ଡ ଗାଁଲୋକ ମିଶି ଖାଉଛନ୍ତି । ପ୍ରତି ବୈଶାଖ ମାସରେ ବାସେ ଝଣ୍ଡେ ଲେଖାଁ ଛତା ପାଇ ପାଇ ଏବେ ତାଙ୍କ ଘରର ସମସ୍ତଙ୍କ ପାଇଁ ଛତା ହୋଇଗଲାଣି । ନୀଳକଣ୍ଠ ପଣ୍ଡିତ ଏବେ କିଛିଏ ପଇସାବାଲା ହୋଇଗଲେ ସିନା, ନହେଲେ ସଙ୍କାନ୍ତି ଭୋଜନକୁ ପଧାନବୁଢ଼ା ତାଙ୍କୁ ଆଗ ଡାକଆଣୁଥାଏ । ବାସେ ମଧ୍ୟ ଆସନ୍ତି ତାଙ୍କ ବ'ପୁଅଙ୍କୁ ନେଇ । ସେ ଦୁଇଟାଯାକ ପିଲାଙ୍କୁ ସେ ପଧାନବୁଢ଼ା ପଇସାରେ ତ ପ୍ରିତ କରିଛନ୍ତି ! ପଣ୍ଡିତଙ୍କ ପୁଅ ଇନ୍ଦ୍ରମଣି ବି ଆସୁଥିଲା । ଏବକୁ କୁଆଡ଼େ କୁଆଡ଼େ ସବୁ ପଢ଼ି ଆସିଲାଣି, କିଛିଏ ଗୁଡ଼ ଗୁଡ଼ ହୋଇଯିବା କଥା । ଇନ୍ଦ୍ରମଣି ବିପାଠୀ ଇଞ୍ଜିନିଅର—କେତେ ବଡ଼ଲୋକ ହେବାକୁ ଯାଉଛି । ସେ କି ଆଉ ପଧାନ ଘରକୁ ସଙ୍କାନ୍ତି ଭୋଜନ ଖାଇ ଆସିବ ? ଗାଁରେ ଏବେ ସମସ୍ତେ ପଧାନବୁଢ଼ାକୁ ଖାତିର କରନ୍ତି, ଭକ୍ତି କରନ୍ତି, ପ୍ରଶଂସା କରନ୍ତି । ନୀଳକଣ୍ଠ ପଣ୍ଡିତ ମଧ୍ୟ ମନପାଇଥିଲେ ପଣ୍ଡିତବାଗେ ସ୍ୱର ଟେକି କହନ୍ତି, "ଏତେ ପଇସା ଆଉ କ'ଣ ହୁଅନ୍ତା ପଧାନଙ୍କର ! କହିଲ ପରା, 'ଧନ ଅର୍ଜିଲେ ଧର୍ମ କର, ଧର୍ମେ ପ୍ରାପତ ନରହର !'' କିନ୍ତୁ ଏ ବର୍ଷ ଖରାଛୁଟିରେ ଆସିଛି ଇନ୍ଦ୍ରମଣି । ସେ କହେ, ପଧାନବୁଢ଼ାଟା ଓଲୁ ।

ବୈଶାଖ ମାସରେ ବଣରେ ନିଆଁ ଲାଗେ । ଗାଁଟାରେ ଅଧରାତି ପର୍ଯ୍ୟନ୍ତ ଆଉ ନିଦ ହୁଏନାହିଁ । ଇସ୍, କାକନାଡ଼ାଟା ସତେ କେତେ ଭଲଜାଗା ! ଇନ୍ଦ୍ରମଣିକୁ ସେଇ ସ୍ୱପ୍ନ ସବୁବେଳେ ଲାଗିଥାଏ । ସେ ଲଣ୍ଠନ ଆଲୁଅରେ ଆଉ ଚଢା ପତ୍ରିକା ବେଶି ବେଳ ପଢ଼ିପାରେ ନାହିଁ । ବାହାରେ ଗ୍ଲାଲି ଗ୍ଲାଲି ହେଉ ହେଉ କାନରେ ମହାଭାରତର ନିର୍ମଳ ପଦ ଆସି ବାଜେ । ବାସେ ବୋଲୁଛନ୍ତି—

"ତ୍ରୈଲୋକ୍ୟ ଜିଣିବାକୁ ତୁ ସମର୍ଥରେ ଭାଇ ।
କାହାର ନିମନ୍ତେ ଏବେ ଏତେ କଷ୍ଟ ପାଇ ॥
ବଚନେ ବନ୍ଧିଣ ମୁଁ ଯେ କାର୍ଯ୍ୟନାଶ କଲି ।
କୌରବ ମାରିବା ପାଇଁ ଅନୁଜ୍ଞା ନ ଦେଲି ॥"

ସେ ନିଜ ଅଜାଣତରେ ସେଇ ଆଡ଼େ ଆକୃଷ୍ଟ ହୋଇଯାଏ । ଜହ୍ନ ଆଲୁଅ ବେଶ୍ ଥଣ୍ଡାଥଣ୍ଡା ଲାଗେ । ଯାଇ ପହଞ୍ଚିଯାଏ ପଧାନବୁଢ଼ା ମଣ୍ଡପ ପାଖରେ । ଆଃ, କି ପଦ ! ଶ୍ରୋତାମଣ୍ଡଳୀ ଆଉ ହଲି ପାରୁନାହାନ୍ତି । କଥାରେ ମନ ଗଳିଯାଇଛି; ସବୁ ପ୍ରତିମା ଲାଗି ବସିଛନ୍ତି !

"ଯୁଧିଷ୍ଠିରଙ୍କ ଅନୁଜ ନାମ ଭୀମସେନ ।
ତାଙ୍କର କଥା କି ତୁମ୍ଭେ ନ ଶୁଣିଛ କର୍ଣ୍ଣେ ॥
ଧନଷଠୀ ପୌଟି ଅନ୍ନେ ତାଙ୍କର ତୃପତ ।
ମୁହିଁ ତାଙ୍କ ସୂପକାର ଶୁଣ ମତ୍ସ୍ୟପତି ॥"

ଫୋକାଟା ତ ଘରେ ସବୁ ପଡ଼ିଛି । ଦାସଙ୍କ ପୁରାଣ ଶୁଣି ଶୁଣି ସେ ଏଡ଼େଟିରୁ ଏଡ଼େଟିଏ ହୋଇଛି । ଦେହ ତାର ଶୀତେଇ ଯାଏ । ସେ ବଡ଼ ଜୋର୍‌ରେ ଦାସଙ୍କ ସ୍ୱରକୁ ଆଗରୁ ନିଜକୁ ଟାଣି ଆଣେ । ଦୂରରୁ ଟିକିଏ ବସ୍ଥିର କରିନେଇ ମନକୁ ମନ କହେ—'ଆଃ ! ଶହେ ସିଂହ, ପୁଣି ସହସ୍ରେ ସିଂହର ବଳ ! ଖାଲି ଗୁଲିଖଟି ଗପ ଏଗୁଡ଼ାକ । ଏ ବୁର୍ଜୁଆ ଅଧମ ଲୋକଙ୍କୁ ଠକିବାର ଉପାୟ । କୌଣସି କଥାଟା ଭଲା ଏଥିରୁ ବିଜ୍ଞାନସମ୍ମତ ? ଏଗୁଡ଼ାକ ନିର୍ବୋଧ, ଏଠି ହଲି ଝୁଲି ଶୁଣି ଲାଗିଛନ୍ତି । ସେ ପ୍ୟାଣ୍ଟ ମୁଣାରେ ହାତ ପୂରାଇ ପଧାନବୁଢ଼ାକୁ ଚାହେଁ । ବୁଢ଼ା ଆଖିବୁଜି ବସି ଖାଲି ବଙ୍କେଇ ହୋଇ ଗୀତ ପିଇଯାଉଛି । ମୁହଁଟା କେମିତି ଗୋଟାଏ ମହାସନ୍ତୋଷର ଚିହ୍ନ । ମୂର୍ଖ ତ ! ଏତେଗୁଡ଼ାଏ ସମ୍ପତ୍ତି ଠିକ୍ ବିନିଯୋଗ କଲେ ଲୋକଟା କାହିଁରେ କ'ଣ କରିପକାନ୍ତା । ପୋଖରୀଟାରେ ମାଛ–ଚାଷ କଲେ ହଜାର ହଜାର ଟଙ୍କା ମିଳନ୍ତା । କ'ଣ ବୁଢ଼ା ଶୁଣିଲା ? ପୁଣି ସେଥିରେ ପାପ ହେବ ! ଶୁଣ ! ଆଚ୍ଛା, ଟ୍ରାକ୍ଟର ଆଣି ଜମିଯାକ ଚଷି ଦେ । ଏତେ ଜମି—ବୁଢ଼ା ହଡ଼ାଙ୍କୁ କାହିଁକି ଟଙ୍କେଇ ଟଙ୍କେଇ ପ୍ରାଣ ନେବୁ ! ସେ ହେଲା କୁଆଡ଼େ ଲକ୍ଷ୍ମୀଛଡ଼ା କଥା । ତା ଏବେ ନହେଲା, ପୁଅଗୁଡ଼ାଙ୍କୁ ତ ପଢ଼େଇଥିଲେ, ଯେମିତି ପଇସା ଅଛି, କାହିଁ ବଳାତରୁ ଯାଇ ଫେରି-ଆସିଥାନ୍ତେ । ସେଇଟା ଅବଶ୍ୟ ଖାଲି ପଇସା କଥା ତ ନୁହେଁ—ଟିକିଏ ବୁଦ୍ଧି ବୃତ୍ତି ଥିଲେ ହେବ ନା ! ହାତୀଆଠଉଁ ଭାଲୁଆ ଯାଏଁ କ'ଣ କେହି ଭଲ କରି ଖଡ଼ି ଧରିଛନ୍ତି ? ଚଷା ତ ! ଲଙ୍ଗଳ କଣ୍ଢି ପାଇଁ ହାତ—କଲମ ଧରିବେ କୁଆଡ଼ୁ ? ଛିଃ ! ଏମିତି ଅନ୍ଧବିଶ୍ୱାସୀ ଲୋକଙ୍କୁ ନେଇ ତ ଏ ଅବସ୍ଥା ।"

ଆସ୍ତେ ଆସ୍ତେ ଇନ୍ଦ୍ରମଣି ଅତି ଉଚ୍ଚରୁ ଏ ଦସ୍ୟୁମାନଙ୍କ ଜୀବଗୁଡ଼ାକୁ ଦେଖୁଛି ବୋଲି ମନେକରେ । ମୂର୍ଖତାର ଅନ୍ଧକୂପରେ ଏ ମୂଢ଼ଗୁଡ଼ାକ ପୁରୁଷାନୁକ୍ରମେ ସଢ଼ି ଆସୁଛନ୍ତି । ତା'ର ସ୍ଥାନ କିନ୍ତୁ ଏଠି ନୁହେଁ । ସେ ବିରକ୍ତିରେ ମୁହଁ ବୁଲାଇନେଇଛି ।

ଏତିକିବେଳେ ଦାସଙ୍କ ପାଟିରୁ ପାନ ସରିଛି—ଗୀତ ଶେଷହୋଇଛି । ସେ ବାଁହାତରେ ବଟଣ୍ଡି ପାନ ଥାଳିଆରୁ ପାନ ଖଣ୍ଡେ ନେଉଛନ୍ତି । ଶ୍ରୋତାମଣ୍ଡଳୀ ଟିକିଏ ହଳଚଳ ହୋଇ ଅଣ୍ଟା ସଳଖୁଛନ୍ତି । ସମସ୍ତଙ୍କ ପଛରେ ବସିଥିଲେ ବୃନ୍ଦା ନାହାକ ବଡ଼ଲ ଗଛ ମୂଳେ । ଚାହିଁଦେଇଛନ୍ତି—ଇନ୍ଦ୍ରମଣି ତ୍ରିପାଠୀ ପୁରପେଣ୍ଟ ମୁଣ୍ଡରେ ହାତ ଭଉଁକରି ତାଙ୍କୁ ଚାହିଁ ଚାହିଁ ଧୀର ଭଙ୍ଗୀରେ ସେଇଠୁ ଚାଲିଯାଉଛି । ଆଉ ଅଧେ ଲୋକ ମଧ୍ୟ ସେଇଆଡ଼କୁ ଚାହିଁଛନ୍ତି, ସ୍ୱପ୍ନବୋଲା ଆଖିରେ ସେଇ ସୁଦୂର ବିରାଟ ରାଜ୍ୟରୁ । ପେଣ୍ଟପିନ୍ଧା ଗାଁରେ ନୂଆ, ପୁରାଣ ଗାଦି ପାଖରୁ ସେମିତି ଗରଜ ନପଡ଼ିଲେ ଉଠି ଚାଲିଯିବା ମଧ୍ୟ ନୂଆ । ଆସ୍ତେ ଆସ୍ତେ ସବୁ ବର୍ତ୍ତମାନକୁ ଫେରିଆସନ୍ତି । ଦାସେ ମଧ୍ୟ ଚଷମା ଡାଳକୁ ଖସାଇ ତା ଉପର ଦେଇ ଟିକିଏ ଚାହାଁନ୍ତି । ପାଖରେ ପଧାନବୁଢ଼ା ବୁଝିଲି ପରି ତାଙ୍କୁ କହେ—'ପଣ୍ଡିତଙ୍କ ପୁଅ ଇନ୍ଦ୍ରମଣି !' ଦାସେ ଚଷମା ଆଖି ଉପରକୁ ଟେକୁ ଟେକୁ କହନ୍ତି—'ଓ !!' ମନେ ମନେ କିନ୍ତୁ କହନ୍ତି 'ପଣ୍ଡିତ ପୁଅଟା ନା ! ତାକୁ ଏଗୁଡ଼ାକ ପିତା ଲାଗିବା କଥା ! ଯ୍ୱାପ, ଯୁଗ ତ ସେମିତି ହେଲା ହୋ ! କାହାକୁ କହିବା ? ଶ୍ରୀ ହରି···ଇ···ଇ'

ପୁରାଣ ପୁଣି ଆରମ୍ଭହୋଇଯାଏ । ମୟୂରପକ୍ଷୀ ଚାମ୍ଭଟି କାଢ଼ି ଦାସେ ତାକୁ ଧୀରେ ବାଁ ଜଙ୍ଘ ଉପରେ ଥାନ୍ତି । ଶ୍ରୋତା ସବୁଆଡ଼ୁ ମନ ଓଟାରେଇ ଆଣି ତାଙ୍କୁ ଚାହିଁ ରହନ୍ତି । ଦାସେ ସେଇ ମନଯାନରେ ତାଙ୍କୁ ପୁଣି ନେଇଯାଆନ୍ତି ବିରାଟଙ୍କୁ କୌନ୍ତେୟ, ବଲ୍ଲଭ ପଣ୍ଡା, ବୃହନ୍ନଳା ରାଜ୍ୟକୁ । ସମସ୍ତେ ଗୀତରେ ହଜିଯାଆନ୍ତି, ଫେରିଯାଆନ୍ତି ତାଙ୍କ ଅତି ପରିଚିତ ବିରାଟପୁରୀକୁ । କିନ୍ତୁ ବୃନ୍ଦା ନାହାକ ଫେରିପାରେ ନାହିଁ ।

ସେ ଚାହିଁରହେ ଦୂରେଇ ଯାଉଥିବା ଇନ୍ଦ୍ରମଣି ତ୍ରିପାଠୀକୁ । "ହୁଁ ! ଇଏ କୋଉଠି ପାଠ ପଢ଼ିଥାନ୍ତା ବା ? ବ୍ରାହ୍ମଣ ପିଲା ଦି' ଅକ୍ଷର ପଢ଼ିଯାଉବୋଲି ମୁଁ ଯଦି ଚେଷ୍ଟା ନକରିଥାନ୍ତି ? ଚାଟଶାଳୀ ଯାଉଁଦେଇ ତ ସେ ଘରେ ବସିଥାନ୍ତା ! ବାପଟା ସିନା ଟଙ୍କଟଙ୍କ ହେଉଥାଏ ପୁଅକୁ ଗୁଡ଼େ ପଢ଼େଇ ପକେଇବ ବୋଲି, ତା ହାତରେ କ'ଣ ଗାଗ ସିଝିବ ? ହଉ, ବୃନ୍ଦା ନାହାକ ଯାଇ ଜମିଦାର ପୁଅକୁ ନକହିଥିଲେ, ସେ ଲୋକେ ଆଗ କ'ଣ କାଣୀ ଯାଇଥାନ୍ତା ନା ? କାଆଣୀ ନା ଫାଆଣୀ !···ଗୁଡ଼ ଗୁଡ଼ । ଏମାନେ କ'ଣ ସେସବୁ ବୁଝିବେ ନା ମନେରଖିବେ ! ମାତ୍ର ଏ କଥାକୁ ଧରିବସିଲେ କ'ଣ ଚଳିବ ? ଏବେ ସେଦିନ ନୀଳକଣ୍ଠ ପଣ୍ଡିତ ବିଗ୍ରହ ବଡ଼ ହରବର ହୋଇ ଆସି ତା' ପୁଅ ସକାଶେ କହିଲା, "ନାହାକେ, ତୁମର ଏତେଠି ଏତେ ପରିଚୟ ଅଛି, କାହାକୁ କହି ଏ ପିଲାଟା କଥା ଟିକିଏ ବୁଝିନ୍ତ ନାହିଁ ?" ମଲା, ଏ କି ଗୁରୁ କଥା ! ବୃନ୍ଦା ନାହାକ, ଆଜି ନୁହେଁ, କୋଡ଼ିଏ ବର୍ଷ ହେଲା ଟିକସ ନେଉଛି । କଲକ୍ଟରଠୁ କିରାଣୀ ପର୍ଯ୍ୟନ୍ତ ତା ହାତମୁଠାରେ । ଗଲା ଶେଷକୁ ହେଡ଼୍ ପୋଷ୍ଟାଫିସ, ସେଇଠୁ ସେ କିରାଣୀକୁ ଧରି ଯାଇ କାହିଁ ହାଇସ୍କୁଲ ହେଡ଼୍ ମାଷ୍ଟର ! କେତେ କାଗଜ ଲେଖାପଢ଼ି । ଯାତ ସେଣ୍ଡାରେ ପାଣି ଉଠିଲା । ପଇସାପତ୍ର କଥା ସବୁ ବୁଝାସୁଝା କରିବାରୁ ଇନ୍ଦ୍ରମଣି ଯାଇ ମଦନପୁରରେ ପାଠପଢ଼ିଲା । ଏସବୁ କ'ଣ ସାମାନ୍ୟ କଥା, ନା ଏମିତି ସେମିତି ଲୋକ ହାତରେ ଏ କାମ ହୋଇଯିବ ? ଭଲ ମାତ୍ର

ପଢ଼ିଲ ଟୋକାଟା । ହେଲେ ମୁଁ କ'ଣ ଯାଇ ମଟିରେ ମଟିରେ ମାଷ୍ଟ୍ରଙ୍କୁ କହି ଆସି ନାହିଁ କି—'ଦେଖ୍ ଥିବ ଟିକିଏ ଯାକୁ !' ମୋ କଥାଟା କ'ଣ ସେମାନେ ତଳେ ପକେଇ ଦଅନ୍ତେ ? ତାଙ୍କ ହାତ କଥା, ତାକୁ ପ୍ରଥମରେ ପାଶ୍ କରେଇଦେଲେ । ହେଡ୍ ମାଷ୍ଟର ସେଇଠୁ କହିଲ ସେ ଗଭର୍ଣ୍ଣମେଣ୍ଟ ବୃତ୍ତିରେ ଇନ୍ଦ୍ରମଣିକୁ ଇଂଜିନିଅରିଂ ପଢ଼ି ପଠେଇବ । ମୁଁ କହିଦେଲି, 'ହଉ, ପଠେଇ ଦିଅ ।' ନ ହେଲେ, ଇଏ କ'ଣ ପାଠ ପଢ଼ିଥାନ୍ତା ମ ? ଗ୍ରୁଡ୍ ।" ଇନ୍ଦ୍ରମଣି ଆଉ ଦିଶୁନାହିଁ ।

ନାହାକେ ଚାହିଁଲେ ଶ୍ରୋତାଙ୍କଆଡ଼କୁ । ବୃନ୍ଦା ନାହାକ ଚାହିଁଛନ୍ତି—କିଛି କମ୍ ଲୋକ ନୁହେଁ !...ପଧାନ ବୁଢ଼ା ? ଟିକିଏ ହସିଲେ ନାହାକେ । "ଯାଇଥିଲି ତ ବୁଢ଼ା, ଆଉ ଥିଲି କି ? ମାଜିଷ୍ଟ୍ରେଟ୍ ଆସିଥିଲେ—ତମ୍ବୁ ପକେଇ ଏ ଖଣ୍ଡକଯାକ ଦେଖିବ । ଅନେଇଲି ଘଡ଼ିଏ କାଳ ଜମିଗୁଡ଼ାକୁ । ପଚାରି ତ ଦେଲି, "ଏ ଜମି କାହାର ?"—ପଧାନର ପିଳେହି ପାଣି । ହାତଯୋଡ଼ି କହିଲା, "ହଜୁର୍, ଏସବୁ ମୋର ।" ସାହାବ ଚାଲିପଡ଼ିଲା । ଖାଲି ଗିରିଏ କଲମ କାଟିଦେଲେ ସରିଲା । ମୁଁ ପଧାନକୁ ଆଖି ମାରିଦେଲି । ସାହାବ ପଛରେ ଯାଇ ତା'ର କୁକୁଡ଼ା, ସରୁ ଚାଉଳ, ଗୁଆଘିଅ କଥା ବୁଝିଦେଲି । ପଧାନ ଲଗିପଡ଼ି ଭଲ ଜିନିଷ ଯୋଗେଇଲା । ମାତ୍ର କେତେ ମୁହୂର୍ତ୍ତରେ ଖସିଗଲା ।" ନାହାକେ ଚାହିଁଗଲେ । କାହାର ପୁଅ ପାଇଁ ତା ବାସନ ବନ୍ଧା ଦେଇ କବିରାଜଠୁ ଔଷଧ ଆଣିଦେଇଛନ୍ତି । କାହାର ଝିଅ ପାଇଁ ବରପାତ୍ର ମିଳୁ ନଥିଲା, ରଙ୍ଗାପୁଅ ଖୋଜି ଦେଇଛନ୍ତି । କାହାର ଘର କୋରକ ହେବାର ଥିଲା, ତାକୁ କୌଶଳରେ ଅଳ୍ପ ପାନଟିଆ ଦେଇ ବନ୍ଦ କରିଛନ୍ତି । କିଏ ପଇସା ଧାର ପାଇଁ କହୁଛି ତ, କିଏ ଆଉ କୋଉଥିପାଇଁ । ଏମିତି ସବୁଗୁଡ଼ିକ ତାଙ୍କ ଦୟା ଉପରେ କେବଳ ବଞ୍ଚିରହିଛନ୍ତି । ଆଉ ପୁରୁଣା ପନ୍ଥୋ ସନାତନ ଦାସ ? ସିଏ ତ ନାହାକଙ୍କୁ ଦେଖିଲେ ଖାଲି ଥରେ । ସେଇଟା ପାଖରେ କେବେ କେହିଲେ ପଇସା ଥାଆନ୍ତା ! ମୁଁ ବୋଲି ତାକୁ ସମ୍ଭାଳି ନେଇଛି । ନହେଲେ ଦାସ ଗାଁ ଛାଡ଼ି ଯାଇ ସାରନ୍ତାଣି ।"

ନାହାକଙ୍କର ପୁରୁଣାରେ ଆଉ ମନ ନାହିଁ । ଜହ୍ନ ଆସି ସେତେବେଳକୁ ମୁଣ୍ଡ ଉପରେ ହେଲଣି । ସେ ଏପାଖ ସେପାଖ ଟିକିଏ ଅଣ୍ଟାରେ ହାତଦେଇ ବୁଲିଲେ । ଗୀତ ଚାଲିଛି—

"ସୁକୁମାର ସୁନ୍ଦର ତୁ ଅଟୁ ବାଳବନ୍ତା ।
କେଉଁ ଦୋଷେ ଶାସ୍ତି ତୋତେ ବହିଲା ବିଧାତା ॥
ରୂପରେ ଜନମନ୍ତେ ହେଲ ଛଦ୍ମବେଶୀ କାହ୍ନୁ ।
ପୃଥିବୀକି ଦଶୁଅଛ ଅନଙ୍ଗ ପରାୟୁ ॥
ଅତ୍ୟନ୍ତ ସୁନ୍ଦର ତୋର ସୁଲକ୍ଷଣ ତନୁ ।
ସ୍ନେହ ବନ୍ଧି ବସିଛ ଯେସନେ ନକ୍ଷତ୍ରେ ନ ଚନ୍ଦ୍ର ॥"

ସେ ମାଲିକପଣିଆ ଗଳାରେ କହିଲେ, "ଦାସେ ! ଓ ଦାସେ, ଆଜି ଏଠାରେ ଥାଉ ।"

ଦାସେ ପଦ ଉପରେ ବୁଢ଼ା ଆଙ୍ଗୁଳି ଟିପ ରଖି ଗୁହିଁଲେ ଚଶମା ଉପରୁ । ବାକି ସବୁ ମଧ୍ୟ ଗୁହିଁଲେ । ନାହାକେ ଏଥର ଟିକିଏ ଦବା ଗଳାରେ କହିଲେ, "ବେଳ ଅନେକ ହେଲାଣି, ଆଜି ଏତିକିରେ ଥାଉ—ନା କ'ଣ ?" ଦାସେ ପୋଥିକି ଗୁହିଁଲେ ଭଣ୍ଡ ପାଖେଇ ଆସିଲାଣି । କହିଲେ—

"ହଉ, ଏଇ ଆଉ ଦୁଇ ପଦ ।" ସବୁ ଖୁସ୍ ଖାସ୍ ହେଲେ । କେତେ ଜଣ ଉଠି ମୋଡ଼ାଭଙ୍ଗ ହେଲେ । ନାହାକେ ଆଉ ଅପେକ୍ଷା ନ କରି ଜଠଉ ଠକ୍ ଠକ୍ କରି ଗୁଲିଗଲେ ।

'ହରିବୋଲ' ଶବ୍ଦରେ ପୁରାଣ ବୋଲା ସରିଲା । ପୂଜା ଉଖୁଡ଼ା ପିଲାଙ୍କୁ ଉଠାଇ ବାଣ୍ଟିଲେ ପଧାନବୁଢ଼ା । ଦାସେ ମୟୂରପୁଚ୍ଛ ଦାଗ ଦେଇ ପୁରାଣ ମୁଣ୍ଡରେ ଲଗାଇ ଗାମ୍ଫରେ ଥୋଇଲେ ଏବଂ ସ୍ୱତଃ ବୃନ୍ଦା ନାହାକ ଆଡ଼େ ଗୁହିଁଲେ । ସେ ଗୁଲିଗଲାଣି ଦେଖି ତାଙ୍କୁ ଆଶ୍ଚର୍ଯ୍ୟ ଲାଗିଲା । ତାକୁ ସେ ଟିକିଏ ଡରନ୍ତି । ସେ କେତେବେଳେ ହେଲେ ଟିକସ ପାଇଁ ଆସିଲେ ଦାସଙ୍କ ପାଖରେ ପଇସା ନ ଥାଏ । ସବୁବେଳେ ଦାସେ ତା' ପାଖରେ ଋଣକରଜ ନେଇ ଖାଇଲାପରି ନଜସ୍ତକ ହୁଅନ୍ତି ।

ଦାସେ ସେଇଠୁ ଉଠିଲେ । ବସି ବସି ଅଣ୍ଟାପିଠି ଲାଗି ଯାଇଥାଏ । ଗୋଟି ଗୋଟି ହୋଇ ଗାଁଲୋକ ସବୁ ସେଇଠୁ ଉଠିଗଲେଣି । ହଣୁଆ ପଧାନ ଦାସଙ୍କ ପାଇଁ ଚୁଡ଼ା ଉଖୁଡ଼ା ବନ୍ଧାବନ୍ଧି କଲାବେଳକୁ ଦାସେ ବଉଳଗଛ ମୂଳକୁ ଗୁଲିଗୁଲି ହୋଇ ଯାଇ ଦୋକତା ଟିକିଏ ଲେଉଁକୁ ଝାଡ଼ୁଥାନ୍ତି ।

ରଘୁ ଦଳେଇ ମା ଧୀର୍ ଧାର୍ ଯାଉଥାଏ । ବପୁଣିଆ ମଣିଷ, କେତେବେଳେ ଯାଇ ଘରେ ପହଞ୍ଚିବ । ତା କଥା ଦାସେ ଜାଣନ୍ତି । ସେ ବରୁଷାର ଆଜି ଘରେ ତା' ବୋହୂ ସାଙ୍ଗରେ କଳି ଲାଗିଛି, ନଖାଇ ଗୁଲିଆସିଛି । କଳିକଥା ତାଙ୍କ ଝିଲୁମା' ତାଙ୍କୁ କହୁଥିଲା । ବୁଢ଼ୀ ଘରେ ରହିଲେ କଜିଆ ହେବ, ଏଇ ଡରରେ ଏଠିକି ଗୁଲିଆସେ । ହେଲେ ବଡ଼ ବୁଝିଲା ମଣିଷ, ନିଜ ଇଚ୍ଛାକୁ ଜଗିଥିବ । ଦୁର୍ଭାଗ୍ୟ ତା'ର, ଯାଇ ହେନ୍ତୁରରେ ବୋହୂ କଲା । ପଢ଼ା ଅଳ୍ପ ତ, ବୁଢ଼ୀ ସବୁ ପୁରାଣ ବୁଝି ନଥିବ । ହେଲେ, ଏ ଯେତେକ ଆସିଥିଲେ କଏ ବୁଝିଯାଇଛି ନା ଏବେ ସବୁ ବୁଝିବାକୁ ଆସିଛି ? ସମସ୍ତେ ନିଜ ନିଜ ଉଦ୍ଦେଶ୍ୟ ରଖି ଆସିଛନ୍ତି । ପଧାନବୁଢ଼ାର ପଇସା ଅଛି । ତା' ଦୁଆରେ ବ୍ରାହ୍ମଣ ଆସି ପୁରାଣ ବୋଲୁ, ଗାଁଟାଯାକ ଲୋକ ଆସି ବସନ୍ତୁ । ··· ତା ଦେଖାଦେଖି ପଧାନବୁଢ଼ୀ ମଧ୍ୟ ଆସି ବସିଥାଏ । ବୁଢ଼ୀର ଟିକିଏ-ହେଲେ ଏ ଆଡ଼କୁ ମନ ଗଲେନାହିଁ । ସେ ଜମା କିଛି ବୁଝେନାହିଁ । ବୁଝି ତ ପାରେ-ନାହିଁ, କ'ଣ କରିବ ? ହେଲେ ଲୋକହସାକୁ ଡରି ଘୁମରେ ଲେଟଥାଏ ପଛେ ପୁରାଣ ସରିଲା ପର୍ଯ୍ୟନ୍ତ ସେମିତି ଗୋଡ଼ ଲମ୍ବେଇ ବସିଥାଏ । ତା ଦେଖାଦେଖି ତା' ବୋହୂ ଓ ପୁଅ ମଧ୍ୟ ଆସନ୍ତି । ହଣୁଆ ଭାବେ, ତା ବାହାଘର ପରି ଏ ଗୋଟାଏ କ'ଣ ପୁଣ୍ୟ କର୍ମ । ସେ ମନଦେଇ ସେବାରେ ଲାଗିଥାଏ । ଠାଏ ଠାଏ ଏବେ ବୁଝିଲାଣି ।

ବାଞ୍ଛା କେଉଟ ଘର ବୁଢ଼ୀ ଆସେ ତା' ପୁଅ ତାକୁ ପେଲି ପଠାଏ ବୋଲି । ସେ

ଟୋକା ପିଅନ୍ କାମ କରି ଦ'ପଇସା ଆଣେ । ସେ ବସିଲାଣି ସମର୍ଥଙ୍କ ସାଙ୍ଗେ ମିଶି ଜଣେ ହେବାକୁ । "ସବୁ ଥିଲାଘରର ମାଇକିନିଆ ଆସୁଛନ୍ତି । ତୁ ମଧ୍ୟ ଯା । ସଫାସୁତୁରା ହେଇ ଯିବୁ ! ଧର୍ମକଥାରେ ଆଉ ମାନ ବଡ଼ କ'ଣ ଅଛି ?" ବୁଢ଼ୀ ବରାବର ଆସେ । ବଡ଼ ସାଧାସିଧା ମଣିଷ । କିଛି ବୁଝୁ ନ ବୁଝୁ, କଦଳୀ ପତ୍ରରେ ଚମ୍ପାଫୁଲ ଗଣ୍ଡେ ଧରି ଆସେ । ଅଧେ ବେଳ ଶୁଣେ, ଆଉ ଅଧେ ବେଳ ଢୁଳାଏ ।

ରାଜା ଟୋକାପଣ୍ଡା କାକର ଖାଇ ବୁଲୁ ବୁଲୁ ଆସି ଘଡ଼ିଏ ଠିଆ ହୋଇଯାନ୍ତି । କେତେ ଶ୍ରୀମସେନ ମାଳ ବଖାଣ ଶୁଣିଦେଲେ ସେଇଠୁ ପଳାନ୍ତି । ତାଙ୍କ ଭିତରୁ ଗୋଟେ କାନକା ଗଡ଼ଉଡ଼ ଝିଅକୁ ଅନେଇରହିଥାଏ । ତାଳଗଛ ମୂଳ ଛକ ପାଖରେ ଏଇ ଟୋକାପଣ୍ଡା ସେ ଟୋକୀଟାକୁ ଛକି ବସିବାର ଦାପେ ଜାଣନ୍ତି । ସେ ଟୋକୀଟା ମଧ୍ୟ ଦଣ୍ଡ ଚତରେଇ ହୁଏ ସ୍ୱାଙ୍ଗ ଦେଖି । ମା ପାଖରେ ସେ ପିଲାଟି ବଢ଼ୁ ଅଛି । ବାପ ଦେଶାନ୍ତର ହୋଇଯାଇଛି କୋଉକାଳୁ । ଜମି ମାଣେ ଅଛି—ସେଥିରୁ ଦୁଇଜଣ ଚଳିଯାନ୍ତି । ଝିଅକୁ ନେଇ ବରାବର ଆସେ ପୁରାଣ ଶୁଣିବାକୁ । ଆଶା, କାଳେ ପଧାନ ବୁଢ଼ା ଦୟାକରି ଝିଅଟାକୁ କୋଉଠି କୂଳରେ ଲଗେଇ ଦିଅନ୍ତେ !

ବୃନ୍ଦା ନାହାକ ଆସେ ଭୟରେ । ତାର ହାତ ଦେଖି ଜଉତଷ କହିଛି, ଆଉ ଛମା ଦ ବର୍ଷ ସେ ବଞ୍ଚିବ । ହାତରୁ ପଇସାଟିଏ ସାରି ତ ସେ କେବେ ପୁଣ୍ୟ କରିବ ନାହିଁ ! ମହା କାର୍ତ୍ତିକରେ ପିଠଳ ଦୋ'ଣି ଦାନ ଦଏ ସେଇଟା । ଷୋଳ ପଇସାର କାମ କଲେ ଛଅ ପଇସାର ଲାଭ ରଖିଥାଏ । ମାହାଲିଆ ପୁରାଣ ଶୁଣିବାକୁ ଧାଇଁ ଆସୁଛି, ଗୁଡ଼େ ପୁଣ୍ୟ ଗୋଟେଇପକେଇବ । ନ ହେଲେ ସିଏ କ'ଣ ଭୃଗୁରୁଢ଼ ନଦେଖେଇ ଆସିଥାନ୍ତା ! କର-କପାଳ-କୋଷ୍ଠୀ ସ୍ୱାକୁ କାଟିବ କିଏ ? ···ଆଚ୍ଛା, ନୀଳକଣ୍ଠ ପଣ୍ଡିତ ଆସେ ନାହିଁ କାହିଁକି ? ବୁଢ଼ୀ ତ କେବେ କେମିତି ଆସେ । ସେ ବରାବର ଭାରି ଭଲମଣିଷ । ଏଇଟା ସିନା ଶିଙ୍ଗ-ଟାଳିଆ । କରେ, ତୁ ପଣ୍ଡିତ ହେଇଗଲୁ ବୋଲି କ'ଣ ପୁରାଣ ମାନିବୁ ନାହିଁ ! ହଁ, ଅସଲ କଥା ହେଲା—ସେ ଆସନ୍ତା ସଭ ଦାପେ ବୋଲୁ ନଥାନ୍ତେ । ସେ ତାଙ୍କ ତ ଟିକିଏ ବେଖାତିର କରେ, ସେଇଥିପାଇଁ । ତାଙ୍କ ଏମିତି ମଝିରେ ବସେଇ ଗାଁଯାକ ଲୋକ ସମ୍ମାନ ଦେଖାଇବେ, ସେ ସହି ପାରିବ ନାହିଁ । କରେ ! ତୁ ଏମିତି କ'ଣ ବଡ଼ ବୈଦିକ ବ୍ରାହ୍ମଣଟାଏ ଆସିଲୁ—ଆମେ କ'ଣ ଖାଲି ଦାନୁଆ, ହାଣ୍ଡିପିଟା !—ତୁ ତ ହେଲୁ ଜାତରେ ଡିଆଡ଼ୀ—କ'ଣ ନା ନନ୍ଦ, ଡିଆଡ଼ୀ, ଓଡ଼ା—ସ୍ୱାପ ସାମ୍‌ବେଦିଆ ! ହଉ ଗୁଡ଼, ତୁ ନଆସ ! ନଆସିଲେ ଏବେ କ'ଣଟା ହେଇଯିବ ! ଗାଁଯାକ ଲୋକ ତ ଆସୁଛନ୍ତି ! ହେଲେ, ତୁ ଏତେ ପାଠ ପଢ଼ିଛୁ, ସବୁ ଜାଣିଛୁ—ଏମିତି ଶ୍ରେଷ୍ଠ କଥାଟା ପାଇଁ ଗୁମାନ କରି ଘରେ ରହିଯାଉଛୁ ? ଆରେ ଅମୃତଂ ଭାରତଂ କଥା—ଯାହା ତୁଣ୍ଡରେ ହେଲେ କ'ଣ ଭାରତ ଭଣ୍ଡା ପଡ଼ିଯିବ ? ମିଛରେ ଟାଣ କରି ହେକେ ରହିଛୁ ସିନା !

ହରିଆ ଚାଉଳିଆ ବନ୍ଧାବନ୍ଧ କରି ଡାକିଲା, "ଆଜ୍ଞା ହେଇଗଲା !"

ଭାରି ଭଲ ପିଲା ହରିଆ । ବାପ କହିଛି, ତା'ର ସ୍ୱଅ ହେବ ବୋଲି ଏତେ ସବୁ

ଅପ୍ରୟୋଜନ ! ସେ ବି ସେଥିରେ ବିଶ୍ୱାସ କରି ଲାଗିପଡ଼ିଛି । ବିପ୍ରବର ଭାରି ଭଲପାଇଲା । "ଶୁଣ ହରିହର, ବସ୍ତ୍ରା-ହରଣ ବେଳକୁ ଭଲ ଦୁହାଁଳ ଗାଈ ଯୋଗାଡ଼ କରି ରଖିଥାଅ ! ବୁଝିଲ ? ଗାଈ ବାଛୁରି ଦାନ କରିବାକୁ ହେବ ! ସେଇଥିରେ ତ ଫଳ ପାଇବ ! ଶୁଣ, ମୋ ପାଖକୁ ଆସ କହୁଛି । ·· ତୁମର ସେ ରଙ୍ଗି ଗାଈଟା ହବ ନାହିଁ । ଦେଖ, ଏଥିରେ ଆଉ କୁନ୍ତୁ-ମୁନ୍ତୁ ହେବା କଥା ନୁହେଁ । ବାପାକୁ କହ ସେ ଗାଈଟି କରେଇଦେଲେ ବ୍ରାହ୍ମଣ ସନ୍ତୋଷ ! ତୁମକୁ ପୁତ୍ର ରତ୍ନ ଲାଭ ହବ କହୁଛି !"

ମୁଣ୍ଡରେ ହାତ ବୁଲେଇ ତାକୁ ଆଶୀର୍ବାଦ କରିବାକୁ ଯାଉଛନ୍ତି, ପଧାନବୁଢ଼ା ପାଟି ଶୁଭିଲା, "କ'ଣ ଦାସେଆପଣ ! ଆଜି ବଡ଼ ବିଳମ୍ବ କରିଦେଲେ ଯେ !"

"ଆହେ ସତେ ତ ! ଏଇ ଉଠିଲି ।" କହି ଯାଉଁଳି କାନ୍ଧକୁ ଟେକିଲେ । କହିଲେ, "ଜାଣିଲ ପଧାନେ, ଏମିତି ପୁଣ୍ୟବନ୍ତ ପୁଅ ଭାଗ୍ୟ ଥିଲେ ପାଇ । ଆଉ ବର୍ଷକୁ ଈଶ୍ୱର କଲେ ନାତିକୁ ଧରି ଗେଲ କରୁଥିବ ରହିଥ ।"

ଦାସେ ବାଟରେ ଭାବୁଥାନ୍ତି—ଏଥର ପୁରାଣ ବସିଲା ଯେ ତିନି ମାସ ପାଇଁ ପିଲେ ଉଖୁଡ଼ା ଗଣ୍ଡେ ଖାଇବେ । ଗାଈଟିଏ ମିଳିଲେ ସେ ଟୁକୁଆଟା ଖୀର ଟିକିଏ ପିଅନ୍ତା । ପ୍ରଭୁ ! ତୁମରି ଇଚ୍ଛା ।

"......ଆରେ ନାହିଁ ମ, ଏ ଗୋଟେ କି ଲାଭ, ନା ଏଇ ଆଶାରେ ମଣିଷ ଆସି ପୁରାଣ ପଢ଼ୁଛି ! ସେ କଥା ନୁହେଁ ଯେ, ଗୁଣ ଥିଲେ ସବୁଠି ପୂଜା । ପଧାନର ଗରଜ ପଡ଼ିଛି, ସେ ପୁରାଣ ବସେଇଲା । ଆଉ ଦକ୍ଷିଣା କ'ଣ ମିଳନ୍ତା ନାହିଁ ନା ଦୈନିକ ଏ ଚୂଡ଼ା ଉଖୁଡ଼ା ଗଣ୍ଡାକ ଆଉ କିଏ ନେଇଯାଆନ୍ତା ? ··· ହେଲେ ମନ ଭିତରେ କଥାଟିଏ ରଖି ଆମେ ମଧ୍ୟ ଆସି ପୁରାଣ ପଢ଼ୁଛୁ ନା—ଏକଥା କିଏ କ'ଣ ନାହିଁ କରୁଛି କି ? ସେମିତି ହେଲେ ତ ସମସ୍ତେ କପଟ ରଖୁଛନ୍ତି । ମଣିଷ ଜାତଟା ତ ମାୟାବୀ । କିଏ କେତେ ଫନ୍ଦିଫିକରରେ ଲାଗିଛି । କେହି କାହା କଥା ବୁଝିବାକୁ ଆଉ ଉପାୟ ନାହିଁ । କୁରୁ ପାଣ୍ଡବଙ୍କ ପଶାଖେଳ କ'ଣ କପଟ ! ସେ ପଶା ତ ଆମେ ନିତି ଦିନ ଖେଳୁଚେ । ସିଧାସଳଖ କଥା ତ ମଣିଷର ନାହିଁ ବୋଇଲେ ଗଲା । ମୁଖାପିନ୍ଧା ଠକସବୁ । ଉପରେ କହିଁ ଫୁଟାଇଦେବେ, ମାତ୍ର ମୂଳରେ ଖାଲି ପୋଗ୍ର ଫଙ୍କ । ଆଚ୍ଛା ଜୀବ ଖଣ୍ଡେ ଏ ମଣିଷ ସ୍ୱାପ ! ତିନି ହାତ ଗୁଖଣ୍ଡେ ଭୂଇଁକି ନିଅଣ୍ଟ । ପୁଷମାସିଆ ପବନରେ ପାଚିଲା ପତ୍ର ପରି କେବେ ଝଡ଼ିଯିବ ଠିକଣା ନାହିଁ—କେତେ ବାହାପ ସ୍ୱାପ, କେତେ ମାୟା, ଛି ! ଯାଙ୍କୁ ବୁଝିବ ଏମିତି ଦେବତା କାହିଁ ? ଏ ମାୟା ପରା ନାରାୟଣଙ୍କ ଅଗୋଚର ହୋ !"

ନବ୍ରଜଟିଆ ରାତ୍ରି । ଜହ୍ନ ମୁଣ୍ଡଉପରୁ ଢଳିଲେଣି । ଦାସଙ୍କୁ ମନେହେଲା ସେଇ ପରିବେଶରେ ସେ ହଠାତ୍ ଗୁଡ଼ାଏ ନଜାଣିବା କଥା ଜାଣିଯାଉଛନ୍ତି ।

ସେ ଅଟକି ଠିଆହେଲେ । ଗଲା ଖଙ୍କାରି ଅଣ୍ଟାରୁ ଦୋକତା ଡବା କାଢ଼ିଲେ ।

ଭଲ କରି ଟିପେ ଜାଭ ମଝିରେ ଥୋଇଦେଇ ଶୁଙ୍ଘେଇ କରି କହିଲେ—"ଆରେ ଯା'ମ, ଯିଏ ଏସବୁ ଭିଆଣ କରିଛି ସେ କ'ଣ ଜାଣ୍ଡି ନାହିଁ କି ? ତା ମନକୁ ନ ପାଇଲେ ଗଡ଼ିଲଣ୍ଠାକୁ ସ୍ପର୍ଶି ଦେବାକୁ କେତେ ମାନ । ଆମ ମୁଣ୍ଡ କାହିଁକି ଏଥିରେ ରୁଚ୍ଛାଟାକୁ ବଥଉଛୁ ?"...

"ହରି ନାରାୟଣ !"

ତାପେ ସିଧା ଘରମୁହାଁ ଦାଣ୍ଡି ଧରିଲେ ।

# ସ୍ୱଜାତ

"ବ୍ୟାଘ୍ରସ୍ୟ ଗୋତ୍ରସ୍ୟ···· ଶାଙ୍କୃତନ ପ୍ରବରସ୍ୟ······ଅପୁତ୍ରିକାସ୍ୟ ଭୀଷ୍ମ ବର୍ମଣେ···।"

କୁଶପାଦ ଧରି ଦାସେ ପୋଖରୀକୂଳରୁ ଫେରୁଛନ୍ତି । ସକାଳ ପହରୁ ଜଳତର୍ପଣ କଲବେଳଠୁ ବାରମ୍ବାର ଗୁଣୁଗୁଣୁ ହୋଇ ଆବୃତ୍ତି—"ଅପୁତ୍ରିକାସ୍ୟ···ଭୀଷ୍ମ ବର୍ମଣେ···।" ଆହା କି ମହାପୁରୁଷ ! ଟିକିଏ ପାଣି ଦେବା ପାଇଁ ସନ୍ତେ କେହି ରହିଲେନାହିଁ ? ସତ୍ୟ ପାଇଁ ସିନା ! ତାଙ୍କର କଣ୍ଠ ରୋଧ ହୋଇଗଲା । ଆଖିରେ ଆଖିଏ ଲୋତକ ଲୁହ ଦାସେ ଓଦା ଗାମୁଛାରେ ପୋଛି ପକେଇଲେ ସିନା, ତାଙ୍କର ମନହେଉଥାଏ ଖାଲି ବାପଛେଉଣ୍ଡ ପରି କହି କହି କାନ୍ଦନ୍ତେ ।

ନାକ ସୁଁ ସାଁ କରି ଯାଇ ଦୁଆରେ ପହଞ୍ଚିଲେ । ଗଳା ଖଙ୍କାରି ମୁହଁ କାନ ପୋଛି ପ୍ରକୃତିସ୍ଥ ହେଲବେଳେ ଭାବୁଥାନ୍ତି, "ଇମିତି ପୁଅ ପୁଣି ପୃଥିବୀରେ ଜନ୍ମ ହବ ! ଅହଃ ! ସେ ମହାପୁରୁଷ ! ପ୍ରତିଜ୍ଞାରେ ଦେବତାଙ୍କୁ ଜିଣିଗଲା । ତାର ପୁଅ ପୁଣି କ'ଣ ହେବ ? ତାର ତ କୋଟିଏ ସନ୍ତାନ ଯୁଗ ଯୁଗକୁ ଅଛନ୍ତି ।" ଘର ଭିତରକୁ ପଶିଲେ ଦାସେ । ତାଙ୍କ ମନ ଆଜି ବଡ଼ ଆର୍ଦ୍ର ଏବଂ କରୁଣାସିକ୍ତ ହୋଇଉଠିଛି । ସେ ଟିକିଏ ଅଧିକ ଭାବପ୍ରବଣ ହୋଇଯାଇଛନ୍ତି । କେମିତିକା ଅନ୍ୟମନସ୍କ ଭାବରେ ସେ ସବୁ କରିଯାଉଥାନ୍ତି । ଘରେ ହାର୍ଥ ବସିଲେ । ପୁଅ ସ୍କୁଲଶାଳୀ ଗଲା । ଝିକୁଅକୁ ଗୋଡ଼ରେ ବସେଇ ସେ ଗଣ୍ଡେ ଖଇ ଖାଇଲେ । ସବୁ ହେଲା, ମନଟା କାଳୁ ବଡ଼ ଉଦାସିଆ ଲାଗୁଥାଏ ।

ସଅପ ଝିଙ୍କି ପକାଇ ଏକୁଟିଆ ଦାଣ୍ଡପିଣ୍ଡାରେ ଆଣ୍ଠୁମୁଣ୍ଡି ହୋଇ ଭୂମି ହୋଇ ବସିଲେ ଦାସେ । ମନେପଡ଼ିଲା ସେଇ ଜଳତର୍ପଣ, ଆଉ ମନେପଡ଼ିଲେ ନୀଳକଣ୍ଠ ପଣ୍ଡିତେ । ଭୂଠ ଡାହାଣ କଡ଼ ଚକା ପଥରରେ ପଣ୍ଡିତେ ବସି ତର୍ପଣ କରୁଥାନ୍ତି । ମୁହଁଯାକ ଭର୍ତ୍ତି-ହୋଇଥାଏ କଳା ମଚମଚ ଦାଢ଼ି । ତମ୍ବାକାଠି ପରି ଦେହରେ ଅପସବ୍ୟ ହୋଇ ପଇତା ପଡ଼ିଥାଏ । କେଡ଼େ ସୁନ୍ଦର ମାନୁଥାଏ ତାଙ୍କୁ !······ଶ୍ଳୋକ ସଂସ୍କୃତ ତା ତୁଣ୍ଡରେ ସନ୍ତେ ଏତେ ସୁନ୍ଦର ଶୁଭେ ? ଆହା ! ନୀଳକଣ୍ଠ ପଣ୍ଡିତ ମଧ୍ୟ କାନ୍ଦ କାନ୍ଦ ହୋଇ ଭୀଷ୍ମଙ୍କୁ ଜଳଞ୍ଜଳି ଟେକି ଦେଉଥାଏ ।

"ମୋ ଛେଉଣ୍ଡ ଭାଇଟାରେ !" କହି ଦାସେ ମନେ ମନେ ଆଣ୍ଠୁଏ ପାଣିରେ ତାଙ୍କୁ ବୁଡ଼େଇ ପକେଇଲେ । କିଛି ସମୟ ଆଖି ବୁଜି ବସିଥାନ୍ତି ଦାସେ । ଆଖି ଫିଟେଇଲେ

ଯେମିତି ଉଷ୍ମ ଦୁଇଧାର ଲୁହ ବୋହିଗଲା । ତାକୁ ଥରଥର ହୋଇ ସେ ପୋଛି-ପକାଇଲେ । ଧୁଏଁ ଧୁଏଁ ତାଙ୍କର ମନେପଡ଼ିଗଲା, ତାଙ୍କ ନନାଙ୍କ ଯେଉଁ ଦିନ କାଳ ହେଲା ସେଇଦିନ କଥା ।...ସେଦିନ ସଞ୍ଜବେଳୁ ନନାଙ୍କ ମୁଣ୍ଡ ପାଖେ ବସି ଦାସେ ଏକାଦଶସ୍କନ୍ଧ ପଢ଼ୁଥାନ୍ତି । ଅଧରାତି ହେଲା । ଆଖିରୁ ଲୁହ ଟୋପା ଟୋପା ପଡ଼ି ପୋଥି ଓଦାହୋଇ ଯାଉଥାଏ । ସେ ପଢ଼ି ଲାଗିଥାନ୍ତି । ମଝିରେ ତାଙ୍କ ବଡ଼ପୁଅ କାନ୍ଦିକି, ଫେର୍ ଶୋଇଗଲା । ସଞ୍ଜବେଳୁ ହାତଠାରି ସମସ୍ତଙ୍କଠାରୁ ଟିକିଏ ଲେଖାଁ ଗଙ୍ଗାପାଣି ନନା ପିଇସାରିଥାନ୍ତି । ଆଉ କିଛି ନାହିଁ ; କେବଳ ଶେଷ ଡାକରାକୁ ଅପେକ୍ଷା କରିବା କଥା ! ଅଧ୍ୟାୟ ଶେଷଠି ଟିକିଏ ରହିଗଲେ ଦାସଙ୍କ ମାଡ଼ି ପଡ଼ିଲା ପରି ଲାଗେ । ନିଶା ଗଢ଼ୁଥାଏ । ବଡ଼ ନିଗୁଟିଆ, ଛୁନିଆ ଛୁନିଆ ଲାଗୁଥାଏ ତାଙ୍କୁ । ନନାଙ୍କୁ ଟିକିଏ ଦେଖିଲେ । ସେ ଯେମିତି ଆଖିବୁଜି ପଡ଼ିଥାନ୍ତି । ପୁଣି ପୋଥିକୁ ମୁହଁ ଫେରାଇ ଦାସେ ପଢ଼ି ଯାନ୍ତି ।

ଗଙ୍ଗାଜଳ ଦେଲାବେଳେ ଯେଉଁ କୋହ ଉଠିଥିଲା ଟିକିଏ କମି ଆସିଥାଏ । ସେ ବାହାରକୁ ଆସିଲେ ଅଣ୍ଟା ସଳଖିବାକୁ । ଦେଖିଲେ ରାତି ସେତେବେଳକୁ ଆହ ଦୁଇଘଡ଼ି ପରିକାଥିବ । ପାଖ ଘରଟାରେ ତାଙ୍କ ସ୍ତ୍ରୀ ପୁଅ ଶୋଇଥାନ୍ତି । ଚାରିଆଡ଼ ଛୁଇ ମାଡ଼ିଗଲା ପରି ଲାଗିଲା ତାଙ୍କୁ । ନନାଙ୍କ ଘରୁ ଟିକିଏ କ'ଣ ଶବ୍ଦ ଶୁଣି ସେ ଥରବର ଯାଇ ଘରେ ପଶିଗଲେ । ଦେଖିଲେ, ନନା ଚାରିଆଡ଼କୁ ବଲବଲ କରି ଚାହିଁରହିଛନ୍ତି । ତାଙ୍କୁ ଖୋଜୁଛନ୍ତି ପରି ଲାଗିଲା । ଦାସେ ପାଖରେ ଯାଇ ଠିଆହେଲେ । ତାଙ୍କୁ ଚାହିଁ ନନା ଅଳପ ହସିଲା ପରି ଦେଖାଗଲେ ।

'ଟିକିଏ ପତର ଦବୁ ସନେଇ !' ଚମକିପଡ଼ିଲେ ଦାସେ । ଛଅଦିନ ପରେ ନନାଙ୍କ ପାଟି ଫିଟିଛି । ନିର୍ମଳ ସଫା ସ୍ୱର । କିଏ କହିବ ନାହିଁ ଯେ ତାଙ୍କ ପେଟରେ ମାସେ ହେଲା ପାଣି ଚଢ଼ିନାହିଁ । କେଡ଼େ ବଡ଼ ଆଶାଟାଏ ଆସିଲା ଦାସଙ୍କ ମନରେ ଯେ ତାହା ଆଉ କହିବାର ନୁହେଁ । ସେ ଧୂଆଁପତ୍ର ଟିକିଏ, ଚୂନ ଟିକିଏ ମିଶାଇ ଲେଡ଼ିରେ ମଳୁଥାନ୍ତି । ଦେଖୁ ଦେଖୁ ନନାଙ୍କ ମୁହଁ ଝାଉଁଳି ପଡ଼ିଲା । ଦାସେ ଦେଖି ନଦେଖିଲା ପରି ଚୂନପତ୍ର ପାଟି ପାଖରେ ଧରିଲେ । ନନାଙ୍କ ଚେତା ଥାଏ । ସେ ପାଟି ମେଲାକରି ଚୂନପତ୍ର ନେଲେ, କିନ୍ତୁ କିଛି ଆଉ କହିଲେନାହିଁ କି ଆଖି ଫିଟେଇ ଚାହିଁଲେ ବି ନାହିଁ ।

ନାଃ—ସମସ୍ତ ହୋଇଗଲା । ଦାସେ ବିକଳରେ ନନାଙ୍କ ହାତ ଧରିପକାଇ କହିଲେ, "ନନା, ମୁଁ ଏକୁଟିଆ କ'ଣ କରିବ ? ମୋର ହୋଇ ଆଉ କିଏ ରହିଲା ?" ସେତେବେଳକୁ ତାଙ୍କର ଜିଭ ଭିଡ଼ି ନେଇସାରିଥାଏ । ସେ ହୁହିଁହେଲା ପରି କହିଲେ, "ଜ...ଗ...ନ୍ନା...ଥ ।" ସେଇକିବେଳୁ ଏକୋଇସ୍ୱରେ ଯେମିତି ଭୁଙ୍କା ପବନରେ ଡାକୁଥାନ୍ତି—'ଜ...ଗ...ନ୍ନା...ଥ' 'ଜ...ଗ...ନ୍ନା...ଥ ।'

ଥରବର ହୋଇ ଦାସେ ସ୍ତ୍ରୀଙ୍କୁ ଡାକପକାଇଲେ । ମୁଣ୍ଡ ପାଖ ଜଣେ ଗୋଡ଼ପାଖ ଜଣେ କରି ତାଙ୍କୁ ବାଲିଶେଯକୁ ଟେକି ନେଇଗଲେ । ଟିକିଏ ଯାଇଛି କି ନାହିଁ ତୋଫା ହେଲା ପରି ଯେଉଁ ପବନ ଯାଉଥିଲା ଏକାଥରକେ ରହିଗଲା । ଚାରିଆଡ଼ ନିସ୍ତବ୍ଧ ହୋଇ

ଝାଁଇଝାଁଇ କରିବାକୁ ଲାଗିଲା । ଦାସେ ସ୍ତବ୍ଧ ହୋଇ ଘଡ଼ିଏ ଠିଆ ହୋଇ ରହିଲେ । ତା ପରେ ଦୁଇ ହାତରେ ମୁହଁ ଘୋଡ଼ାଇ ପିଲାଙ୍କ ପରି କଇଁକଇଁ ଚିତ୍କାର କାନ୍ଦିଲେ । ପାଠକନାରେ ପୋଛିଲା ପରି ନନା ତାଙ୍କ କେତେ ଖେଳବଥରେ ବଡ଼େଇ ଆସିଥିଲେ । ଏଣିକି ଯେତେ ଅବସ୍ଥା ହେଲେ ପୁଣି ଆଉ 'ଅନ୍ଧା' ବୋଲି ଦେବାକୁ କେହି ନାହିଁ । ଦରମିଗି ଛୋଟପିଲାଙ୍କୁ କାନ୍ଦୁଥିଲେ ବୋଧେଇବ ବା କିଏ ? ଦାସେ ଆଖି ଫିଟେଇ ଗୁହାଁରିଲେ । ଗୁହାରି ଭିତର କୋଣ ହୋଇଯାଉଥ ଏ । ଆଖିରୁ ଅବିରାମ ଧାର ଗଡ଼ି ଚାଲିଥାଏ । ହେଲେ ଆଉ ବେଳ ନାହିଁ, ବେଳ ପାହିଗଲେ ବାସି ମଡ଼ା ହୋଇଯିବ । ସେ ଥାଉ ଥାଉ ନନା ତାଙ୍କର ବାସିରେ ଯିବେ ?

ନା ।......ସେ ହାତ ପିଠିରେ ଲୁହ ପୋଛି ଗାମୁଛା ଖଣ୍ଡେ କାନ୍ଧରେ ପକେଇ ବାହାରିପଡ଼ିଲେ । "ଜୟ ବିପତ୍ତି-ଜଗନ୍ନାଥ ! ଏଥିରୁ ପାରିକର ପ୍ରଭୁ ! ତୁମ୍ଭେ ସକଳ ଆଶା, କାଳ ହରି ଭରସା ।"

ତାଙ୍କ ଗାଁକୁ ପାଟପୁର ନିକଟ । ସେଇଠି ତାଙ୍କର ସବୁ ସାଥି ବନ୍ଧୁ ଅଛନ୍ତି । ଘରେ ଶ୍ରାଦ୍ଧଟିଏ ହେଲେ ନନା ସେମାନଙ୍କୁ ଡାକୁଥିଲେ । ବୋଉ କିନ୍ତୁ ସବୁବେଳେ କହୁଥିଲା, "ଏ ଶବଙ୍କୁ ଅଣି କାହିଁକି ଗିଳଉଛ ? ଆମର ଜମି ଉହ ସବୁ ତ ସେମାନେ ନେଲେ । ଗାଁ ତୁମ୍ଭ ଆସି ଏଠି ରହିବାକୁ ପଡ଼ିଲା । ପୁଣି କାହିଁକି ପୁଅଗ ବୋହି ପଡ଼ୁଛ ?......ନାନା କହୁଥିଲେ, "ଆରେ ଯା, ରକ୍ତରେ କେବେ ବାଡ଼ ପଡ଼ିବ ନା ପାଣିରେ ଗାର ପଡ଼ିବ ? —ମୋର କ'ଣ ଏବେ ବିପୁଳ ସମ୍ପତ୍ତି ଥିଲା ଯେ ସେ ଲୁଟି ନେଇଗଲେ ? ଭାଗ ହେଇ ହେଇ ମୋରେ ତ ଇମି ! ମୁଁ ଖାଇଥାନ୍ତି, ନହେଲା ଏବେ ସେ ଖାଇଲେ—କ'ଣ ହେଇଗଲା ସେଇଠୁ ? ତା ବୋଲି ତାଙ୍କୁ ସମ୍ପର୍କ ଲିଭ ନାହିଁ ?" ଦାସଙ୍କ ମନକୁ ନନାଙ୍କର ଏ କଥାଟା ଖୁବ୍ ପାଏ ।

ଅଧା ଧାଇଁ ଅଧା ଚାଲି ପାଟପୁରରେ ଯାଇ ଦେଖିଲାବେଳକୁ ସମସ୍ତଙ୍କ ଘାଟି କବାଟ ପଡ଼ିଛି । ଦୁଆର ଦୁଆର ଯାଇ ଡାକିଲେ । ଶେଷକୁ ଯେ କବାଟ ଫିଟାଇଲେ ସେ ତାଙ୍କ କକେଇ ଲେଖା ହୁଅନ୍ତି । ଦାସେ ଓଲଗି ହୋଇ ବଡ଼ କଷ୍ଟରେ କହିଲେ, "ନନାଙ୍କର କାଳ ହୋଇଗଲା ।"

"ଓହୋ ! ହେଲେ ବାପା, ଏ ବୁଢ଼ାଟାକୁ ଡାକିଲେ ତା ହାତରେ କ'ଣ ହେବ ? ତୁ ରାତିରେ ଏତେ ବାଟ କାହିଁକି ଆସିଲୁ ? ସକାଳୁ ଆସିଥିଲେ ହେଇନଥାନ୍ତା ? ଗାଁଯାକ ସବୁ କାମଘରକୁ ବାହାରି ଯାଇଛନ୍ତି ।"

'କ'ଣ ହେଲା ?' ଭାବିଲେ ଦାସେ, 'ତାଙ୍କୁ ଏତେଥର କରି ସେ କହୁଛନ୍ତି ଏଇ ଟିକି ଧନ ଟିକିଏ ସମ୍ଭାର କର । ସେ କ'ଣ ନା କାମଘରକୁ ବାହାରିଗଲେ !'

ଖାଲି କହିଲେ, "ରାତି ପାହିଲେ ନନା କ'ଣ ବାସି ମଡ଼ାରେ ଯିବେ ?"

"ସେଥିରେ କ'ଣ ହେଲା ବାପା ! ତୁ ଏକୁଟିଆ ପିଲା, ଏବେ ଟିକିଏ ବଳମୂ ହେଇଗଲା । ମୋ ନନା ତ ଫେର୍ ବାସିରେ ଯାଇଥିଲେ ନା ନାହିଁ ?...ଏଠି ଆଉ କିଛି

କରିବାର୍ ନାହିଁ ।"

ଦାସେ ବୁଲିପଡ଼ି ଭୁସ୍‌ଭୁସ୍ ବାହାରିଗଲେ । ହେଲେ ଯିବା ପାରେ କ'ଣ ଉପାୟ ?··· ମନେପଡ଼ିଗଲେ ଭାଇଗଭାଇନା । ସେ ନନାଙ୍କ ନିଜ ଭଣଜା—ରତ୍ନପୁର ନାମୀଙ୍କ ପୁଅ । ସେ କିଛି ନମାନି ବାଲି ମାଳ ମାଡ଼ି ଚାଲିଲେ । ପଛୁଣି ଥର ପୂର୍ବକୁ ଚାହୁଁଥାନ୍ତି ଏବଂ ଧାଉଁଥାନ୍ତି ।

ତାଙ୍କୁ ଆଉ କିଛି ଦିଶୁନାହିଁ । ଗାଁ ପାଖ ହୋଇଗଲା । ଦାସେ ତଳକୁ ମୁହଁ ପୋତି ଚାଲିଛନ୍ତି । ତାଙ୍କୁ ଶୁଭିଲା—"କିଏ ? ସନେଇ କରେ ?" ଚମକିପଡ଼ି ଦାସେ ଚାହିଁଲେ, ଭାଇଗଭାଇନା ଠିଆହୋଇଛନ୍ତି—ହାତରେ ଖଣ୍ଡେ ଦଉଡ଼ି—ଆର ହାତରେ କଟୁରି । ମୁଣ୍ଡିଆରୁ ବେତ କାଟିବାକୁ ବୋଧହୁଏ ବାହାରିଥିଲେ । ତାଙ୍କୁ ଯେମିତି ସେ ଦେଖିଛନ୍ତି ତାଙ୍କ ଉପରେ ପଡ଼ି ଖାଲି ରଡ଼ି ଛାଡ଼ିଲେ । ଭାଇଗଭାଇନା ସବୁ ବୁଝିଗଲେ । ପଚାରିଲେ, "ପାଟପୁରିଆ କେହି ଆସିଲେ ?" କଥା ନ କହି ଦାସେ କେବଳ ମୁଣ୍ଡ ହଲାଇ ନାହିଁ କଲେ । ସେ ଆଗରୁ ଏଇଆ ହେବ ବୋଲି ଜାଣିଥିଲେ । କଟୁରୀ ଦଉଡ଼ି ସେଇ ବୁଦାମୂଳେ ପଡ଼ିଲା । କହିଲେ, "ନ ଆସନ୍ତୁ ଶଳେ ! ଚାଲ ମୁଁ ଯିବି ।' ଦାସଙ୍କୁ ବଡ଼ ଉଶ୍ୱାସ ବୋଧହେଲା । ଚାଲିଲେ ଦୁଇ ଭାଇ ।

ଘରେ ଆସି ପହଞ୍ଚିଲା ବେଳକୁ ସିନ୍ଦୂରା ଫାଟିଗଲାଣି । ଦୂରରୁ ଦେଖିଲେ କେତେ ଜଣ ଲୋକ ତାଙ୍କ ଦୁଆରେ ଠିଆହୋଇଛନ୍ତି । ପାଖରେ ଆସି ଦେଖିଲେ ରତନା ଗଉଡ଼—ଜାନକୀର ବାପ କୋକେଇରେ ଲଇ ଭିଡ଼ୁଛି । ଅନନ୍ତ ପଧାନ ନିଜେ ଦୁଇ ଜଣ ଲୋକ ଧରି ଠିଆହୋଇଛି । ବୁଢ଼ା ଶିବରାମ ଦଳେଇ ଦାସଙ୍କ ମୁଣ୍ଡରେ ପିଠିରେ ହାତ ମାରି କହିଲା, "ତୁମେ ମୋ ପୁଅ ସମାନ, ବାପ, ଅଧୀର ହୁଅନାହିଁ । ଆମେ ଗାଁବାଲା ଥାଉ ଥାଉ ଦାସେ ବାସି ହେବେନାହିଁ ।" କେଡ଼େ ଉଦାର ଏମାନେ ! ଦାସଙ୍କ ମନ ହେଲା ସବୁ ଭୁଲି ବୁଢ଼ା ଚୋଡ଼ତଳେ ଲୋଟିଯିବାକୁ ।

ଭାଇଗଭାଇନା ଆଉ କିଛି ନଶୁଣି କାମ ଆରମ୍ଭ କରିଦେଲେ । ସବୁ ସାରି ଗାଁ ମୁଣ୍ଡ ମଶାଣିରେ ପହଞ୍ଚିଲା ବେଳକୁ ବେଶ୍ ଆଲୁଅ ହୋଇଗଲାଣି । କିନ୍ତୁ ସୂର୍ଯ୍ୟ ଉଦି ନାହାନ୍ତି । ଶୁଖିଲା କାଠ ଆଗରୁ ସଜାଡ଼ି ରଖିଦେଇଛନ୍ତି ପଧାନବୁଢ଼ା । ମଡ଼ା ନଛୁଇଁ ଯାହା ହୋଇ-ପାରେ ସବୁ କରିଦେଇଛନ୍ତି ।···ଥର ଥର ହାତରେ ଦାସେ ମୁଖାଗ୍ନି ଦେଲେ । ଆଖି ବୁଜି ଯାହା ଦେଇଛନ୍ତି, ସେମିତି ଆଖି ବୁଜି ଉଠି ଚାଲିଆସିଲେ ସେଇଠୁ । ଦୁଇ ତିଣି ଗୁଆ ଘିଅ ଆଣି ରଖିଥାନ୍ତି ପଧାନେ । ତେଣିକି ଆଉ ଅସୁବିଧା କିଛିନାହିଁ । ଭାଇଗଭାଇନା ଦେହରେ ଭୀମର ବଳ । ସେ ଏକା ଟେକିଲା ପରି ମାମୁଙ୍କୁ ଆଣିଛନ୍ତି, ଦାସେ ସାହାଯ୍ୟ ମାତ୍ର ଦେଇଛନ୍ତି । ଭାଇନା କହିଲେ, "ତୁ ସନେଇ, ଘରକୁ ଏଥର ବାହାରିଯା । ଏଠି ଆଉ ରହିବା ଦରକାର ନାହିଁ ।"

ଏତିକିବେଳେ କାଠରେ ନିଆଁ ଧରିଆସିଥାଏ । ପାଟପୁରିଆ ପାଞ୍ଚଜଣ ଆସି ପହଞ୍ଚିଲେ । ଭାଇନା ମାଡ଼ିଗଲେ ସେମାନଙ୍କ ଆଡ଼କୁ । ତାଙ୍କୁ ମୋଡ଼ି ନିଆଁରେ ପକେଇଦେବେ କି ଆଉ !! ଏଡ଼େ ପାଟିକରି କହିଲେ, "ବାହାରି ଯା ଶଳେ ଏଇଠୁ—ନଇଲେ ଏ ଖୁଣ୍ଟଣା ତାଙ୍କରେ ଚିମ

ମୁଣ୍ଡ ଫଟେଇଦେବ । ଖାଇଲାବେଳେ ସ୍ୱାପେ ପଧିଆ ପଡ଼ ମାମୁଘରେ ମୋର ଖାଇବ । ଗରଜବେଳେ ମୁହିଁ ଦେଖେଇବ ନାହିଁ ? କ'ଣ ନା ମୋ ମାମୁ ବାସି ମଡ଼ା ହୋଇଗଲା— କ'ଣ ହୋଇଗଲା ?···ଯାଅ ଏଠୁ !"

ଦୋଷୀ ପରି ସେମାନେ ବିଚରା ଅଡ଼େଇହୋଇ ଠିଆ ହୋଇଥାନ୍ତି । ଦାସଙ୍କୁ କେଜାଣି କାହିଁକି ବଡ଼ ବିକଳ ଲାଗିଲା । ସେମାନେ ତ ଆଉ ସାଧବ ନୁହନ୍ତି । ଓଳିଏ କମାଣି କରି ନଆଣିଲେ ତାଙ୍କ ଘରେ ଆରଓଳି ଚୁଲି ଲାଗିବ ନାହିଁ । ଆହା ବିଚରା ! ସ୍ତ୍ରୀସାର ଗତାଗତ ତ ଧାଇଁଆସିଛନ୍ତି, କ'ଣ ହେଲେ କରିବେ ? କିନ୍ତୁ ଖଇନାଙ୍କର ସେ ରାଗବେଳେ ପାଟି ଫିଟେଇବାକୁ ସାହସ ହେଲାନାହିଁ ।

ଦାସେ ପଛେ ଶୁଣିଲେ ଯେ ଖଇଗଛିଇନା ମୂକ ହୋଇ ଘଡ଼ିଏ କାଳ ଚଡାକୁ କେବଳ ଚାହିଁଲେ । ଆଖିରୁ ଲୁହ ବୋହିଯାଉଥାଏ । କ'ଣ ଭାବିଲେ କେଜାଣି ଖେଞ୍ଚଣା ଡାଙ୍ଗଟାକୁ ଆଣ୍ଠୁରେ ଲଗାଇ ମଡ଼୍ ମାଡ଼୍ ଭାଙ୍ଗି ଫୋପାଡ଼ିଦେଲେ । ହାତଯୋଡ଼ି କହିଲେ, "ମାମୁ ! ମୁଁ ତୁମ ଦେହରେ ଖେଞ୍ଚଣା ଡାଙ୍ଗ ମାରିବି ନାହିଁ । ସତ୍ୟପୁରୁଷ ତୁମେ । ଦେଖ, ମୁଁ ଏକୁଟିଆ ଲୋକ । ତୁମେ ସେମିତିଆ ଜଳିଯାଅ ।"···ସତକୁ ସତ ଧାପ ଜଳିଲା ପରି ସବୁ ଜଳିଗଲା । ଦାସଙ୍କ ବାଡ଼ିପଟ ପିଣ୍ଡାରୁ ସକାଳ ଆଲୁଅରେ ନିଆଁ ହୁତ୍ ହୁତ୍ ଜଳିବା ଦିଶୁଥାଏ ।

× × × ×

ଦାସେ ଆଣ୍ଠୁମୁଣ୍ଡ ହୋଇ ବସିଥାନ୍ତି । ତାଙ୍କୁ ମନେହେଲା, ତାଙ୍କ ପିଠିରେ ହାତ ମାରି ତାଙ୍କୁ କିଏ ଡାକୁଛି···'ନନା !' ସେ ମୁହଁ ଟେକି ଚାହିଁଲେ, ଟୁକୁଆ ପାନ ଖଣ୍ଡେ ଧରି ଠିଆହୋଇଛି । ମୁହୂର୍ତ୍ତିକରେ ମନ ଫେରିଆସିଲା । ସେ ଟୋକାଟାର ମୁହଁକୁ ଦେଖିଲେ ଦାସେ ସବୁ ଭୁଲିଯାଆନ୍ତି । ଅଷ୍ଟମ ଗର୍ଭରେ ପୁଅ ହୋଇଛି । ଜଉତଷ କହନ୍ତି ବଡ଼ ଭାଗ୍ୟବାନ୍ ହେବ । ଦାସେ ଚକା ଫିଟାଇ ତାକୁ କୋଡ଼ରେ ବସାଇଲେ । ପାନ ଖଣ୍ଡେ ପାଟିରେ ଦେଇ ନିଶ୍ୱାସଟିଏ ମାରି ଚାହିଁଲେ ଦାଣ୍ଡକୁ । କବାଟ ଫାଙ୍କରେ ତାଙ୍କ ସ୍ତ୍ରୀ ସବୁ ଲକ୍ଷ୍ୟକରୁଥାନ୍ତି । ଦେଖିଲେ ଔଷଧ କାଟିଛି । ଦାସଙ୍କ କେଉଁ ରୋଗକୁ କି ଉପଚାର ହେବ ତାଙ୍କୁ ଭଲରୂପେ ଜଣା । ସେ ଧୀରେ ହାଣ୍ଡିଶାଳକୁ ଚାଲିଗଲେ । ଦାସେ କିଛି ସମୟ ଅଗଦାଣ୍ଡରେ ଖଣ୍ଡି ଗୁଆଟିଏ ଚୋବାଇ ଚୋବାଇ ଖାଲି ଶୂନ୍ୟକୁ ଅନେଇଲାପରି ବସିଥାନ୍ତି । ଶେଷରେ କହିଲେ, "ନା ଯିବା ! ଟିକିଏ ଜଳକଣ୍ଠ ପଣ୍ଡିତ ଘରକୁ ଯିବା । କେତେ ଦିନୁ ଯାଇନାହିଁ । ଉଠିବୁଟି ବାପା !" କହି ପୁଅକୁ ଧରି ଠିଆହେଲେ ।

କାନ୍ଧରେ ଦୋପଟ୍ଟା, ହାତରେ ଛତା ଧରି ଗୋଟିଏ ଗୋଟିଏ ଚାଲିଲେ ଦାସେ ପଣ୍ଡିତଙ୍କ ଘରକୁ । ବାଟରେ ଦେଖାହେଲା ଶାମ ମଲିକ । ସେ ଦାସଙ୍କୁ ଦେଖି ନମସ୍କାର ପକେଇଲା । ଦାସେ ବଡ଼ ପ୍ରସନ୍ନ ହୋଇ ଆଶୀର୍ବାଦ କଲେ, "ଆୟୁଷ୍ମାନ ଭବ ! କ'ଣ ଚଟିପଦ ନେଇ ଚାଲିଲ ବାପା !"

"ନାହିଁ ଆଜ୍ଞା, ଏ ସକାଳଟାରୁ ଆଉ ଚିଠିପତ୍ର ନେଇ କେମିତି ବାହାରିବେ । ଦଶଟାରୁ ପରା ସବୁ କାମ ଆରମ୍ଭ ।"

"ଓ ! ସତେତ ! ମୁଁ ଆଉ ସେ କଥା ଜମା ହେବୁ ରଖିପାରୁ ନାହିଁ—ଦେଖିଲ !"

ଛକରେ ପିଲଙ୍କୁ କୋଠିକର କେଳାଟିଏ ସାପ ଦେଖାଉଥାଏ । ବାପେ ସେଇଠି ଟିକଏ ଠିଆହେଲେ । ଏଡ଼େ ବଡ଼ ବଡ଼ ଦୁଇଟା ଗୋଖର ଫଣା ତୋଳି ଖେଳୁଛନ୍ତି । ସାପୁଆ ପେଡ଼ିର ଡାଙ୍କୁଣିଟାଏ ଧରି ହଲଉଛି । ସ୍ୱର ଟେକି ପଦ୍ ତୋଳା ବୋଲୁଛି—

"ନନ୍ଦର ଘରେ ଯିବେ କୃଷ୍ଣ ଯେ ବାସୁଦେବ ··ହରି

ଅ—ନ୍ଧା—ରେ ନ ଦିଶଇ ପଥ ।

ମେଘ ଯେ ମାଳ ମାଳ ମଥୁରା ଭୁବନେ···ହରି

ବି-ଜୁ-ଳି କଢ଼ାଉଛି ପଥ

କି ଗୋବିନ୍ଦ ହରି···ଇ···ଇ ।"

ପିଲାଏ ଆଖି ପିଛୁଳା ନପକାଇ ଚାହିଁରହିଛନ୍ତି । ଗୋଟାଏ ଟୋକା ଯୋଡ଼ଗୁଡ଼ ଆସି ପହଞ୍ଚିଲା । ହାଲିଆରେ ସଁ ସଁ ହେଉଥାଏ—ମାତ୍ର କେଳାସ୍ୱରେ ସାପଙ୍କୁ ଚାହିଁରହିଥାଏ । ବାପେ ମଧ୍ୟ ପିଲାଙ୍କ ଗହଳରେ ଠିଆହୋଇ ବଡ଼ ଆଗ୍ରହରେ ଦେଖୁଥାନ୍ତି ।

'ସାପ ପରି ଜୀବ ! ଭଲ ସ୍ୱାପ ଶିଖେଇଛି କେଳା ପିଲା । ତା' ଭୟରେ ସିନା ଏ କାଳସର୍ପ ଏମିତି ପାଖରେ ପାଖରେ ଫଣା ତୋଳି ଖେଳୁଛନ୍ତି; ନ ହେଲେ ତ କୋଉ କାଳୁ କାମୁଡ଼ାକାମୁଡ଼ି ହୋଇ ମରିସାରନ୍ତେଣି । ନା, ଦୁଷ୍ଟ ଜନ୍ତୁ ହେଲେ ବୋଲି କ'ଣ ନିଜ ଭିତରେ ଶ୍ରେଷ୍ଠ ମଗ୍ନ ମର ହେବେ ? ···କେଜାଣି ?'

ବାପେ ସେଇଠୁ ଗୋଟିଏ ଗୋଟିଏ ଯାଇ ପଣ୍ଡିତଙ୍କ ଦୁଆରେ ପହଞ୍ଚିଲେ । ଘର ଆଗରେ ଦୁଇଟି କଷି ନଡ଼ିଆଗଛ ନୂଆ ପତ୍ର ପକେଇଥାନ୍ତି । ଦାଣ୍ଡର ସରୁପିଣ୍ଡା ରଙ୍ଗମାଟିରେ ଲିପାହୋଇ ବଡ଼ ନିର୍ମଳ ଦିଶୁଥାଏ । ପିଣ୍ଡାର ଗୋଟେ ପଟକୁ ନଡ଼ିଆ ଗୁଞ୍ଜ ଝଡ଼ି ପଡ଼ିଛି । ହେଠିକି ଶୀତଦିନେ ଖରା ପଡ଼ୁଥିବ ।

ବାପେ ପାହାଚରେ ପାଦଦେଇଛନ୍ତି, ଘରଭିତରୁ ବାହାରି ଆସିଲା ଇନ୍ଦୁମତୀ । ବାପଙ୍କୁ ଦେଖି ଦଣ୍ଡବତହେଲା । ବାପେ ହାତ ଅଞ୍ଜୁଳି କରି ଆଶୀର୍ବାଦ କଲେ, "ଆୟୁଷ୍ମାନ୍ ଭବ ! କିରେ ପୁଅ, ନନା ଘରେ ଅଛନ୍ତି ?"

"ହେଇ ତ କ'ଣ ବସି ଲେଖୁଥିଲେ ! ବସନ୍ତୁ ମୁଁ ଡାକଦେଉଛି ।"

"ହଉ, ଡାକଦେବୁ ଯେ, ଏଡ଼େ ବ୍ୟସ୍ତ କାହିଁକି ? ମୋର ସେମିତି କିଛି ଗରଜ କାମ ନାହିଁ । କେତେଦିନୁ ବାପା ତତେ ଦେଖି ନଥିଲି । କ'ଣ ତୋ ପଢ଼ା ସରିବ ନାହିଁ ?" ପିଣ୍ଡାକୁ ଉଠି ବାପେ ବସିଲେ ।

"ଏ ବର୍ଷଟା ତ ହେଲେ ହେଲା । ମୁଁ ପୂଜାଛୁଟିରେ ଘରକୁ ଆସିଛି । ନନା ଲେଖିଲେ ଯେ ସେ କେତେଦିନ ପୁରୀ ସମ୍ମେଳନକୁ ଯିବେ । ଘରେ ମୁଁ ରହିଲେ ଭଲହେବ । ଆଉ ବୋଉ ମଧ୍ୟ ମୋତେ ଦେଖିବାକୁ ଭାରି ମନକଲା । ହଉ, ମୁଁ ନନାଙ୍କୁ

ଡାକବବ ।”

ତା’ର ଅଲଗ ଅଲଗ ହୁଏ, ଗୋଟା ମୁହଁ, ବଳକା ଗନ୍ଧଣ ଦାସଙ୍କ ଅଖିକୁ ନାହିଁନଥିବା ସୁନ୍ଦର ବଣିଲା । ଏମିତ ଗୋଟିଏ ପୁଅ ଥିବ ଗଲା—ଆଉ ଶହେ ଥିଲେ କେତେ ନ ଥିଲେ କେତେ !

ନୀଳକଣ୍ଠ ପଣ୍ଡିତେ ଚାହାଁଲେ । ଖଣ୍ଡେ ମଠା ପିନ୍ଧିଥାନ୍ତି, ନାମାବଳୀ ଖଣ୍ଡେ ଦେହରେ ଘୋଡ଼ିହୋଇଥାନ୍ତି । ଦାସଙ୍କୁ ଦେଖି ହସି ପଚାରିଲେ, “ଦାସେକର୍ତ୍ତ ! କୁଆଡ଼େ ଏମିତ ବାହାରି ଆସିଲ ? ହଇରେ ଇନ୍ଦ୍ର, ପାନ ବଟାଟା ପଠେଇଦଉଛୁଟି ଏଠିକ ।”

ଦୁହେଁ ନଡ଼ିଆ ଗୁଣ୍ଡ ଉପରେ ବସିଥାନ୍ତି । ପାନ ସେଇଠି ଭଙ୍ଗା ହେଲା । ଅନେକ ଏମିତ ଦୁଃଖସୁଖ ହେଲା । ପିଲାଦିନ ପ୍ରସଙ୍ଗ ମଧ୍ୟ କିଛି ପଡ଼ିଲା । ଦାସେ ଶେଷକୁ ପଚାରିଲେ, “କ’ଣ ପୁଅ କହୁଥିଲା, ତମକୁ କାହିଁକି ପୁରୀ ଯିବାକୁ ପଡ଼ୁଛି ପରା ?”

“ହଁ, ମୁ କ୍ରମଣ୍ଡପରେ ଗୋଟେ ପଣ୍ଡିତ ସଭା ହେଉଛି । ଭାରତଯାକରୁ ପଣ୍ଡିତ ଆସି ଏକାଠିହେବେ । ଓଡ଼ିଶାରୁ ପାଞ୍ଚ ଜଣ ବଛାହୋଇଛନ୍ତି । ମୋତେ ସେଥିରୁ ଗୋଟେ ଭାର ଦେଇଛନ୍ତି କ’ଣ ଲେଖାଟାଏ ପଢ଼ି ଶୁଣାଇବାକୁ ।”

ଦାସେ ସୂଚନାଟା ବୁଝିଗଲେ । ହଉ, ଆମ ଗାଁ ଜାତ ପିଲାଟା ତ ! ବାଃ ! ପାଖବାଗ ପିଲା ଏକା ନୀଳକଣ୍ଠ । ସେ କ’ଣ ଗୁଣ୍ଡିବ ? ଏ ଦେଶଟାର ଟେକ ରଖିବ ନା ! କହିଲେ—“ଆରେ ବାଃ ! ବଡ଼ ଗୌରବର କଥା । ତମକୁ ଏମିତ ସନ୍ମାନ ମିଳିଲେ ଆମକୁ ମିଳିଲା ପରା । କେବେ ଅନୁକୂଳ କରୁଛ କହିବଟି ! ସଭା କଥା ପଛକୁ ଥାଉ, ଆଗ ଜଗନ୍ନାଥ ଦର୍ଶନ ତ ମିଳିବ । ଦିନ ବାର ଦେଖି ବାହାରିବା ବିଧି ।”

କାଖରେ ତାଙ୍କର ପାଞ୍ଜି ଅଭ୍ୟାସରେ ପଡ଼ିଗଲାଣି । ସେ ପିନ୍ଧାପିନ୍ଧି କରି ବାହାରିଲା-ବେଳେ କେତେବେଳେ ପାଞ୍ଜିଟା କାଖରେ ଜାକ ଧରିଥାନ୍ତି । କୁଶହେଣ୍ଡ ଫିଟାଇ ଦୂରେଇ ଧରି ପଢ଼ିଲେ, “ଆଜ ହେଲା ଶନିଶ୍ଚର । କାଲିକୁ ରବିବାର । ପଥଯାନ ପ୍ରଶସ୍ତ । ଦିବା ସାତ ଘଣ୍ଟା ଗତେ ମାହେନ୍ଦ୍ରବେଳା । ଯୋଗିନୀ···ଦକ୍ଷିଣେ । ବାଃ ପୃଷ୍ଠଯୋଗିନୀ ହେଲା ।” ବଡ଼ ଟୁସିରେ ପାଞ୍ଜି ବନ୍ଦ କରି ହସି ହସି ଦାସେ ଉପରକୁ ମୁହଁଟେକି ଚାହାଁନ୍ତି ତ କେହି ନାହାନ୍ତି । ଭାବିଲେ, ‘କ’ଣ, ପଣ୍ଡିତେ ଉଠିଗଲେ କି ? ହଉ, ଘରେ କ’ଣ କାମ ହେଉଥିବ ନା !’ ଦାସେ ଟିକିଏ ଅପ୍ରତିଭ ନ ହେଲେ ନୁହେଁ ।···ଏ ପଣ୍ଡିତଗୁଡ଼ାକ ଏମିତଆ ହେଉଥିବେ ବୋଧହୁଏ । ମନ ଏମିତ ଚଗଲା ନ ଧରିଲେ ଆଉ କି ପଣ୍ଡିତ ସେ ହେଲା ! ଭ୍ରାନ୍ତଭାବରେ ଦାସେ ଅଲଗ ହସୁଥାନ୍ତି । ପଣ୍ଡିତେ ଆସି ପଚାରିଲେ, “କ’ଣ ହେଲା ଦାସେ, କ’ଣ ଯୋଗ ବାହାରିଲା ? ମୋ ବଟାରେ ଗୁଆ ନଥିଲା ସେ ଦ’ଟା ଘରୁ ଆଣିବାକୁ ବାହାରିଗଲି । କେଉଁଦିନ ଯାତ୍ରା ପାଇଁ ପ୍ରଶସ୍ତ ବାହାରିଲା ?”

ବେଶ୍ ପରିଷ୍କାର କଥା—ଦାସେ ସିନା ଭୁଲ୍ଲାରେ କେତେ କ’ଣ ଭାବିଯାଉଥିଲେ ! ···ନାଃ-ନୀଳକଣ୍ଠ ପଣ୍ଡିତଟା ଲୋକ ମନ୍ଦ ନୁହେଁ !

ଏତିକବେଳେ ସେଇ ସାପୁଆଣ୍ଟା ପେଡ଼ିକାର ଧରି ଦାଣ୍ଡେ ଦାଣ୍ଡେ ଚାଲିଗଲା । ତା ପଛରେ ଗୋଟେ ପିଲ । ଇନ୍ଦ୍ରମଣି ମଧ୍ୟ ବେଶବାସ ହୋଇ କୁଆଡ଼େ ବୁଲିବାହାରିଗଲା । ଦାସଙ୍କର କାହିଁକି ମନହେଲା ଘରକୁ ଫେରିଯିବାକୁ । ଆଉ କିଛି ନୁହେଁ ଯେ, ଏଇମାନେ ଆଉ କେତେବେଳେ ବସି କଥାବାର୍ତ୍ତା ହେବେ !

ପଣ୍ଡିତେ ପାନ ଉପରେ ଆଉ ଟିକିଏ ଗୁଆ ପାଟିକୁ ପକାଇ ଟିକିଏ ଗହଳିଆ ଗହଳିଆ କରି କହିଲେ, "ସେଠି ପୁରୀରେ ଅନେକ କାମ । ଇନ୍ଦ୍ରମଣି ସକାଶେ ନୂଆ ହୋଇ ଗୋଟେ ପ୍ରସଙ୍ଗ ଆସିଛି···ହଁ, ମଣିଷ ସେଠି ପହଞ୍ଚିଲେ ଯାଇ ସବୁ କଥା ଛିଡ଼ିବ ।"

ଯାହା ଯୋଗ କଥା ପଣ୍ଡିତେ ମନେରଖି ନାହାନ୍ତି ଦେଖି ଦାସେ ମଧ୍ୟ ସେକଥା ଆଉ ଉଠେଇଲେ ନାହିଁ । କହିଲେ, "ଇନ୍ଦ୍ରମଣି ପାଇଁ ରାମଚନ୍ଦ୍ରପୁରରେ ପତ୍ର ପଡ଼ିଥିଲା ! ସେଇଟା କ'ଣ ହେଲା ?"

"କୋଉ ରାମଚନ୍ଦ୍ରପୁର ?···ଓ ! ସେମିତି ତ ଶହେଟି ପ୍ରସଙ୍ଗ ପଡ଼ିଛି, ମାତ୍ର ସେଇଠି କ'ଣ ଗୋଟେ ବନ୍ଧ କରିବ ମ ?·ହଁ, ପ୍ରଜାପତି ସମ୍ବନ୍ଧ, କିଏ ଏବେ କହିବ କେଉଁଠି ହେବ ବୋଲି ?"

ଏହି ସମୟକୁ ଆସି ପହଞ୍ଚିଲା ଶାମ ମଲିକ । କହିଲା—"ଦାସେ ଆପଣଙ୍କୁ ଘରୁ ଯାଇ ଗୁହାଟେ ଖୋଜିଆସିଲିଣି । ଆପଣ ତ ଆସି ଏଠି ବସିଛନ୍ତି, ମୁଁ ଆଉ ପାଇବି କୋଉଠୁ ? ଆପଣଙ୍କର ଖଣ୍ଡେ ଖୋଲ ଲଗା ଚିଠି ଆସିଛି ।"

ଚିଠି ? ବଡ଼ କୌତୂହଳ ଆସେ ଗାଁକୁ । ଆଉ ଦାସଙ୍କ ପାଖକୁ ଆହୁରି କୌତୂହଳ । ଦାସେ ଟିକିଏ ଇତସ୍ତତଃ କରି ଚିଠିଟି ନେଲେ । ପଣ୍ଡିତେ ଅନେଇଥାନ୍ତି । ଭିତରେ କ'ଣ ଅଛି କେଜାଣି ? କିଏ ସେ ଦେଲି ସ୍ୱାକୁ ? ଷ୍ଟାମ୍ପ କାର୍ଡ଼ ଖଣ୍ଡେ ତ ଦେଇପାରିଥାନ୍ତା ! ଭିତରୁ ବାହାରିଲା ଖଣ୍ଡେ ବଡ଼ ସୁନ୍ଦର ନିମନ୍ତ୍ରଣ ପତ୍ର । ପରିଷ୍କାର ଓଡ଼ିଆ ଛପେଇ—"ଉତ୍କଳ ସଂସ୍କୃତ ସମ୍ପଦ ଆନୁକୂଲ୍ୟରେ ନିଖିଳ ଭାରତ ପଣ୍ଡିତ ସମ୍ମେଳନ ଆସନ୍ତା କାର୍ତ୍ତିକ ପ୍ରଥମ ଦିନ ଆରମ୍ଭ ହେବ । ଆପଣଙ୍କୁ ବିନୀତ ଅନୁରୋଧ ଯେ ଆପଣ ନିମନ୍ତ୍ରଣ ରକ୍ଷାକରି ସଭାରେ ଯୋଗ-ଦେବେ । ଇତି ।"

ତାଙ୍କ ଅଜାଣତରେ ଗୋରା ମୁହଁଟା ପଣ୍ଡିତଙ୍କର ଲାଲ ପଡ଼ିଗଲା । ଟିକିଏ ହସିବେ ବୋଲି ଭାବି ହସିପାରିଲେ ନାହିଁ ।

"ଦେଖି ଦେଖି ! ଏଇଟା କ'ଣ ତମ ନାଁରେ ଆସିଛି ?" କହି ପଣ୍ଡିତେ ସେ ଚିଠିଖଣ୍ଡ ଲେଉଟପାଉଟ କରି ଦେଖିବାକୁ ଲାଗିଲେ । ଦାସେ ମଧ୍ୟ ବିଷୟଟା ବୁଝିପାରୁ ନ ଥାନ୍ତି ।...କିଓ ସେ କାହିଁ, ଏ ପଣ୍ଡିତ ସଭା କାହିଁ ! ତାଙ୍କ ପାଖକୁ ବା କାହିଁକି ନିମନ୍ତ୍ରଣଟାଏ ଆସିଲା ?···ସେ କ'ଣ ସେଇ ସନାତନ ଦାସ ?···ନା ଆଉ କାହା ଚିଠିଟା ଆଣି ଦେଇଗଲା ମ !

"ଆରେ ହେ ଦେଖିଲ, ଏଇ ଶୁଣିଲ ପଣ୍ଡିତେ, ଏସବୁ ସେଇ ଗଦାଧରର କାମ । ସେଇଟା ମୋର ମାଉସୀପୁଅ ଭାଇ । ପୁରୀରେ ସଂସ୍କୃତ କଲେଜରେ କାମ କରେ । ଗଲା

କାର୍ତ୍ତିକରେ ମୁଁ ତା' ଘରେ ପଣ୍ଡିତଙ୍କ ପାଞ୍ଚ ଦିନ ରହିଆସିଥିଲି । ଏଇ ମ ଏ ପଧାନଙ୍କ ପାଇଁ ବଡ଼ଦେଉଳବଳେ ବାନା ବାନ୍ଧିବାକୁ ପଠେଇଥିଲେ ସେ ଯାଇଥିଲି ।···ସେଇଆ ହେଲା ତା'ହେଲେ । ମୁଁ ଏଥିରୁ ଖଣ୍ଡେ ପଠେଇଦେଇଛି ।"

"ଓ ! ନହେଲେ ଅସିବା କଥା ନୁହେଁ ତ ! ଆଜି ମଧ୍ୟ ଏମିତିଆ ହଜାରଙ୍କୁ ନିମନ୍ତ୍ରଣ ମିଳିଥିବ ନା ! ସଭାରେ ବସି ଶୁଣିବାକୁ ତ ଲୋକ ଲୋଡ଼ା । ଆଚ୍ଛା, ତା' ହେଲେ କ'ଣ ଆସୁଛ ? ଚାଲ ସାଙ୍ଗ ହେଇ ଯିବା ।"

"ବାପ୍ପା ହେଲା ଦାଆଡ଼ୀଏ ! ମୁଁ କଏ ଆଉ ଏ ସଭା କଏ ? ମୁଁ କୁଆଡ଼େ ଯାଇପାରିବି ? ତମେ ଯ ।"

ଚିଠିଖଣ୍ଡ ହାତରେ ଧରି ଉଠିଲେ ଦାସେ । ପଣ୍ଡିତେ ମଧ୍ୟ କେମିତି ଟିକିଏ ଅସୁଖ ପାଇଲାପରି ଉଠି ଠିଆହେଲେ ।

ବାଟରେ ଦାସଙ୍କୁ ସବୁକଥା କେମିତିଆ ଅବାଗିଆ ବୋଧ ହେଲା । ଆଚ୍ଛା, ତୁ ତ ସ୍ନାପ ଯିବୁ କେତେ କ'ଣ ସବୁ ପଢ଼ିଛୁ ଶୁଣେଇବୁ ବୋଲି । ଗଛ ଶିଖରେ ଚଢ଼ିଲା ପରି ତତେ ଏବେ ଲାଗୁଥିବ । ଆଉ ମୁଁ ଏଥିରୁ ଖଣ୍ଡେ ପାଇଲାରୁ ତୋ ମୁହଁଟା କାହିଁକି କୁହୁଳିଗଲା ! ଗୁଡ଼, ମଣିଷ ପ୍ରକୃତି ପରା ବଡ଼ ବିଷମ ହୋ ! ସେଦିନ ପଧାନଘର ମଝିଆଁ ପୁଅ 'ନୀଳକଣ୍ଠ ପଣ୍ଡିତ ଖାଲି ନାଁକୁ କାଶୀ ଯାଇଥିଲା' ବୋଲି ବଙ୍ଗାରେ କହିଦେଲା । ମୁଁ ତାକୁ ମୁହଁରେ ଶୋଧିଦେଲି ନା ! ସେଇଠି ମତେ ଲାଗିଲା ସେ ମୋ ଘର ଲୋକଟାକୁ ନିନ୍ଦା କଲାବୋଲି । ହେଲେ ଏ ସ୍ନାପ ପାଇଁ କେଭେଁ ବାହାରିବା କଥାନୁହେଁ । ସେ ତ ପରର ଶ୍ରୀ ଦେଖିଲେ କମା ସହିପାରିବ ନାହିଁ—ହିଂସକୁ ସ୍ନାପ । ହେଇ ହେଇ ମୋର ଯଦି ଟିକିଏ କେଉଁଠି ସନ୍‌ମାନ ଦେଖିଲା ତା'ର ନାହିଁତେଇଁବ । କରେ, ଶ୍ଲେଷ୍ଟ ଜନ୍ତୁ ସିନା ପରସ୍ପର ଲଢ଼େଇ କରନ୍ତି, ହେଲେ ମଣିଷ ଏତେ ପଢ଼ିଶୁଣି ଆଉ କ'ଣଟା ଅଧିକ ହେଲା ? ବୋଇଲା ପରା ସ୍ୱଜାତି ପରହିଂସ୍ରକାଃ' । ଆରେ ତୁ ମତେ ହିଂସା କରି କ'ଣ କରିବୁ ବା ? ତୁଟା ପଣ୍ଡିତଟା ହେଇ ଏଡ଼େ ସ୍ୱାନବୁଦ୍ଧି କାହିଁକି ତତେ ଘୋଟିଛି ! ଛି···ଛି !!

# ରୁକ୍ମଣୀ ରଥ

"ଟିକଏ ଆଉଁଷହେଲେ ଖାଇବାଟା ଯେମିତ ସୁଖ, ଆଉ କାହିଁରେ ନାହିଁ ! ହଜାରେ ଦୁଧଦହି ଖାଅ, ସେଥିରେ କ'ଣ ଏମିତଆ ତୃପ୍ତିଟାଏ ଆଉ ମିଳବ ? ଏ···ଏ··· ଉଚ୍ଚ···ନାରାୟଣ !!

ସେଦନ ଶୀତ ଆଉ ଦେଖାନାହିଁ । କାକର ପବନ ହାଡ଼ ଭତର ଥରେଇ-ଦେଉଥାଏ । ଦାସେ ସଂଧ୍ୟା ପହରଆ ସହଳ ସହଳ ଲକ୍ଷ୍ମୀନାରାୟଣଙ୍କ ସେବା ସାରଦେଇ ବାହାରଆସିଛନ୍ତି ।

···ଘରେ ଆସି ଲୁଣିଆଟେ ବସିଥିବ, ନ ଆସି ଆଉ କ'ଣ ଉପାୟ ଅଛୁ ?···କୁହା ନାହିଁ ବୋଲ ନାହିଁ, ଦ'ପହରଟାରେ ହୁ'କନା ଆସି ମାଛ ପୁଡ଼ାଟେ ଧର ପହଞ୍ଚିଗଲ !

"କହେ ପଣ୍ଡିତେ, ସବୁ ଭଲ ନା ?"···ଦାସେ ପିଣ୍ଡାରେ ଠିଆ ହୋଇଥିଲେ । ବୃଲ୍ଲପଡ଼ ଦେବନ୍ତି ତ ସୁଦର୍ଶନ, ତାଙ୍କ ଝୁଲୁମାଙ୍କ କକେଇପୁଅ ଭାଇ ।

"କେୟ ନନେ ! ତମ୍ଭେ କୁଆଡ଼େ ? ଆସ ଆସ !···ହେ ବଟ ! ପାଣି ଆଣେ—ତମ ମାମୁ ଆସିଛନ୍ତି ।"

ଗଣ୍ଡିଗ୍ରେ ମୁଆଁ ଉଖୁଡ଼ା ହୋଇ କ'ଣେବୁ ଥିବ କେଜାଣି, ମାତ ମାଛପୁଡ଼ାଟାରେ ସାତଟି ଦବ୍ୟ ସୁନ୍ଦର ଖଇଙ୍ଗା । ବାଃ !

ଦାସେ ଏହିସବୁ କାରଣରୁ ମନ୍ଦରରୁ ଫେରଆସିଛନ୍ତି ଏବଂ ଚଞ୍ଚଳ ଖିଆପିଆ ମଧ୍ୟ ସରଯାଇଛୁ । ତଳପିଣ୍ଡାରେ ଉମ୍ଭେଇଟିଏ ଜାଳି ତା' ଗୁରପାଖରେ ପିଲଙ୍କୁ ନେଇ ବସିଗଲେ ସନାତନ ଦାସ । ମନଟା ଖୁବ୍ ଖୁସି ଅଛୁ । ଉପର ପିଣ୍ଡାରେ ଆଖେଇ ସାର ସୁଦର୍ଶନ ନନେ ଭଉଣୀଙ୍କ ସାଙ୍ଗେ କ'ଣ କଥା ହେଉଥାନ୍ତି ।

"ଇଆଡ଼କ ବାହାରଆସ ନନେ—ଟିକଏ ହାତ ସେକବ···ହଇହୋ, ପାନ ବଟାଟା ଆଣ ଏଠିକ । ଆଉ ଏ ବଟ ହାତରେ ଖଣ୍ଡେ ଦାଲ୍ଲଗୁଣ୍ଡା ଦବ । ହେ ବଟ, ଗିରୁଟି ନେଇଆସିବୁ ବାପା !···ଉଠ୍ ଜସ୍ମୀ, ସେ ପିଢ଼ାରୁ ଉଠିପଡ଼୍ ! ମାମୁଁ ବସିବେ ।"

"ଓହୋ, ଆଉ ! ପିଲଟା ତ ବସିଛୁ । ସେ ଉଠଲେ ଯାଇ କ'ଣ ଆମେ ବସିବା ? —ବସିଆ ପୁଅ ! ମୁଁ ଏଇ ଗୁଣ୍ଡରେ ବସି ପଡ଼ୁଛୁ ।"

ଝୁଲୁମା ପାନବଟାଟା ଧର ଆସି ଠିଆହେଲେ । ତାଙ୍କ ଦେଖି ଉମ୍ଭେଇ ପାଖକୁ ଲଦି

ସେ ମଧ୍ୟ ବସିଗଲେ । ସେ ପାନରେ ଚୂନ ଲଗାଉଥାନ୍ତି, ଦାସେ ଗୋଟେ ଖଣ୍ଡ ଗୁଆ ଦେଖି ଗୁଆକାଟରେ ଲଗେଇଲେ ।

"ଏ ମାଛ ବେପରଟା ତମେ ଗ୍ଭଲଛ ନା ବୋଧ୍ହୁଏ ପିଲା ଗ୍ଭଲଛନ୍ତି ମ ?"

"ହଁ, ସେଇଟା ପିଲାଟେ । ତାଙ୍କୁ କାମରେ ଲଗେଇଦେଲେ ହେବ ନା ! ସେ କ'ଣ ଆଉ ବର୍ଷ ଗୋଟାକରେ ସବୁ ଶିଖିଯାଆନ୍ତା କି ?"

ଦାସେ ଅଳ୍ପକେ ସ୍ମିତ୍ରଙ୍କି ବୁଝିଗଲେ । ପ୍ରଶଂସା ଯ୍ଭାପ କଏ ନ ଗ୍ଭହେଁ ? ଆଉ ବେଳ ହୋଇଥିଲେ ବୋଧ୍ହୁଏ ପଟିଆ ଦୁଇପଦ କହିହୋଇଥାନ୍ତା । ଗ୍ଭଡ଼ ! ଏ ଯ୍ଭାପର ବୁଦ୍ଧ ତ ସେତକ ।

"ହଇ ହେ ନନ୍ଦେ, ସେ ମୁକ୍ତାମା' କେଉଟୁଣୀ ମାଛ ଲଗୁଆଣି ଦଉଛି ନା ?"

"ହଁ, ସେଇ ଏକା ଦଉଚ ଯେ, ହେଲେ ବୁଢ଼ୀ ହେଇଗଲାଣି । ତା'ର ଦ'ଟା ବୋଧ୍ହୁଏ ଏବେ ସବୁ ଆଣି ମାଛ ବକୁଛନ୍ତି ।"

"ଏଇ ପାନଟା ତମେ ନଅ । ଏଇଟାରେ ପଗଡ଼ ଗୁଆ । ତମେ ଟୋକାଲୋକ । ବୁଝିଲ, ସେ ମୁକ୍ତାମା'ଙ୍କୁ ମୁଁ କେଉଁ କାଳୁ ଦେଖିଆସୁଛି । ରତନପୁର ଏବେ ସିନା ଶଶୁରଘର ହେଲା, ନ ହେଲେ ସେଇଟା ତ ଫେର୍ ଆମ ମାମୁଘର ।"

"ହଁ, ତମ ସାନମାମୁଙ୍କର ତ ଗଲାବର୍ଷ କାଳହୋଇଗଲା । ତାଙ୍କ ପିଲା ପଞ୍ଝା କଏ କ'ଣ ସବୁ କାମ କରଗଲେଣି । କେହି ଗୋଟେ ଆଉ ସେଥିରୁ ଗାଁରେ ନାହାନ୍ତି । ଅକାଳେ ସକାଳେ ଏମିତି କାହା ସାଙ୍ଗରେ ଦେଖାହୋଇଗଲେ ଥଟ୍ଟା ଟାପରା ଟିକଏ ହୁଏ ।"

ଟୁକୁମା ସେଉଠୁ ଆସ୍ତେ ଉଠିଲେ । ··ପୁଅ ଗାଁରେ ନାହିଁ, ବୋଧ୍ହୁଏଟା ଫେର୍ କେତେବେଳ ଆଉ ଭୋକରେ ରହିବ ? ଖଣ୍ଡେ ପାନ କାନରେ ବାନ୍ଧ ଉପର ପିଣ୍ଡାଅଡ଼େ ଉଠିଗଲେ ।

ଦାସେ ଲମ୍ବାପଟିଏ ମାର କହିଲେ—"କାଳହେବା କଥା । ଶହେ ଶହେ ବର୍ଷ ଭୋଗ କଲେ, କ'ଣ ଆଉ ଗଛପନ ହୋଇଥାନ୍ତେ ? ମୁଁ ତ ଆଉ ଏ କଣ୍ଟାଳ ଗ୍ଭଡ଼ କୁଆଡ଼େ ଯାଇପାରୁନାହିଁ । ପୁଅଟା ହେଲେ ଯୋଗ୍ୟ ହୋଇଥାନ୍ତା ! ତା ହାତରେ ତ କିଛି ହେଲାନାହିଁ । ମୁଁ ଏଠୁ ଟିକଏ ଗୋଡ଼ ଟେକିଲେ ଦଅଁ ଅପୂଜା ରହିଯିବେ । କହିଲି, "ଆରେ ବାପ, ଗୋସେଇଁବାପଙ୍କ ଆଲା ଧରିଲେ ବଇଁଶର ନାଁ ରହିବ । ଯଜମାନ କର୍ମ ପୂଜାପୂଜି ଟିକଏ ଶିଖ । ମନକୁ ପାଇଲା ନାହିଁ, ହେଇ ମାସେ ହେଲା ଯାଇଛି କ'ଣ କାମ ଖୋଜି । ମାସକୁ କୁଆଡ଼େ ପଞ୍ଚାବନ ଟଙ୍କା ମିଳିବ । ଆଉର ଉପୁର ମଧ୍ୟ କ'ଣସବୁ ଅଛି । ସ୍ତ୍ରୀ ତ ସେମିତି ହେଲା । ନ ହେଲେ ସେବା ତ କରିବ; ଦେବତା ଗ୍ଭଡ଼ି ମଣିଷ ସେବା କାହିଁକି କରନ୍ତା ? ଲକ୍ଷ୍ମୀନାରାୟଣ ପଞ୍ଚାବନ ଟଙ୍କା ସିନା ଗଣି ଦେବେନାହିଁ ମାତ୍ର ଖାଇବାକୁ ତ ନଅଣ୍ଟ କରିବେନାହିଁ ! ତାଙ୍କ ପ୍ରସାଦରୁ ମୁଁ ଏତେ ବଡ଼ କୁଟୁମ୍ବ ଚଳେଇ ନେଉଛି ତ ଫେର୍ !···ଆରେ ରାଃ । କାହିଁକି ଏମିତ ହେଉଛ ? କଥାଟେ କୁହାଇ ଦେବେ ନାହିଁ ଏଗୁଡ଼ାକ !—ଯିବଟି, ଶୋଇବ ଗଲ ଯା ! ଯ୍ଭାପେ କୁଲାଙ୍ଗାର ଗୁଡ଼େ ।"

ବଟ ତା ତଳ ଷାଇ ଜସ୍ମୀ ସାଙ୍ଗରେ ଝଣ୍ଟେ ଗୁଦରକୁ ଘୋଡ଼େଇ ହେବା ପାଇଁ ଝଣା ଓଝଟର ଲଗାଇଛୁ । ଗାଲ ଶୁଣି ଶୋଇବାକୁ ଗଲେ ନାହିଁ ସତ, କିନ୍ତୁ ଦୁହେଁ ଢାକଜକ ହୋଇ ସେଇ ଝଣ୍ଟକ ଗୁଦର ଷଗକର ଘୋଡ଼େଇହୋଇ ବସିଗଲେ ।

ସୁଦର୍ଶନ ନନ୍ଦେ କଥା ଗୋଳେଇଲ ପର କହିଲେ, "ଏ ମାଛଗୁଡ଼ାକ ବଡ଼ ଗ୍ରେଟ ପଡ଼ଲ । ସେଇଠ ପୁଣି ଏଇ ଖଇଙ୍ଗା ଆଗ ସବୁ ଧରୁଥିଲେ; ଗୋଟାକ ଢନ ଢନ ବଶା ।'

"କଓ, ସେ କଥା ମୁଁ ଜାଣିନ !···ସେ ବର୍ଷ ନନା ମୋତେ ପଠାଇଦେଇଥାନ୍ତି ମାମୁଘର । ବଡ଼ମାମୁ ଯଦୁ ମିଶ୍ରେ ସେତେବେଳକୁ ବୟସ ଥିଲ ଲୋକ । ମତେ ବୟସ ଷୋହଳ କ ସତର ଏମିତ କ'ଣ ହବ । ଯଦୁ ମିଶ୍ରଙ୍କ ବିଷୟ ଏବେ ଯାହା ଶୁଣୁଛ, ମୁଁ ଆଖିରେ ଦେଖିବା କଥା । ଆଈ ବୁଢ଼ୀକୁ ତ ଆମର କିଛୁ ପିଠାପଣା କର ଆସେନାହିଁ । ସେକାଳ ଲୋକ, ଏତେ ଛନ୍ଦମନ୍ଦ ତାଙ୍କର ନଥିଲ । ବୁଢ଼ୀର ଦୁଇ ପୁଅ—ଯଦୁନ ଆଉ ମଧୁନ । ସେମାନେ ଖାଇବେ ବୋଲ ଆଈ ଛଅ ସେର ଗୁଡ଼ଳ ଚୂନାକରେ । ତାକୁ ଖଲ ଘାଣ୍ଟି ଇଣ୍ଡୁ ଅଧାରରେ ଦଟି ହାତେ ହାତେ ଡ଼େଙ୍ଗର ଶିଳପୁଆ ପର ଶୁଆଇ ଦଏ । ସିଝିଗଲେ ଦୁଇ ଷଇ ଦୁଇ ପାଖେ ବସି ବୁଢ଼ୀ ସାଙ୍ଗେ କଥା କହୁ କହୁ ସେ ଯୋଡ଼ିକ ଚୂର୍ଣ୍ଣି ଦଅନ୍ତି । ସେ କ ମଣିଷ ! ସେ କ ଯୁଗ !!···ସେମାନେ ସବୁ କ'ଣ ଖାଉଥିଲେ ଦେଖିନ ! ଆମ ପର କ'ଣ ଇମିତ ଚୂଚୂମୁରଆ ଖିଆ ତାଙ୍କର ଥିଲ ? ବୁଢ଼ା ହେଲେ ପଛେ ବଡ଼ମାମୁ ନରମିଷ ଭୁଣ୍ଡକୁ ନେଇ ନାହାନ୍ତି ! ଗରମ ଖଇରେ ପୁଞ୍ଜେ ନଡ଼ିଆ ଦହୁରୁ ଦୋରୁଅ ଚପୁଡ଼ି ମାମୁ ସକାଳୁ ସକାଳୁ ଖାଉଥିଲେ । ଆଉ ହେଇ ହେଇ ଯଦି ଉଷୁମ କ୍ଷୀରରେ ଝଣ୍ଟ ପକେଇ ହସ୍ତାପିଆ କର ନକ୍ଷଟ ଇଣ୍ଡୁ ଦେଉଛ ତ ଗଣ୍ଡିଆ ବସି—ଜମା ଗଣିପାରବ ନାହିଁ । ଅଃ ! ସେମିତ ଖାଇ ପାର କଲ ଲୋକ ମୁଁ ଆଉ ଦହକରେ ଦେଖିଁ ନାହିଁ ।"

ଖଣ୍ଟେ ଡାଙ୍ଗି କାଠ ଧର ନିଆଁଟାକୁ ଦାସେ ଉଖୁରେଇଦେଲେ । ସେଇ ମାମୁଙ୍କ କଥା ଖାଲ ତାଙ୍କ ମନକୁ ଲଗିଥାଏ । ପୁଣି ମନେପଡ଼ଲରୁ କହିଲେ, "ଭଗବତୀଙ୍କଠେଇ ମାମୁ ଥରେ ମାଛ ପୋଡ଼ା ବଲ ଖାଇ ଆସିଥିଲେ । ସେଇ ଦନଠୁ ଲଗିଲ ଲଢ଼ା ସେ ସାତ ଦନରେ ଆଠ ଦନରେ ସେମିତ ପୋଡ଼ାଟିଏ ନ ହେଲେ ଆଉ ନଚଳେ । ଗୋଟିଏ ହାତେ ପାଞ୍ଚପା ଡ଼େଙ୍ଗର ଖଇଙ୍ଗ ତାଙ୍କୁ ପୋଡ଼ ଦେବାକୁ ହେବ । ଆଈବୁଢ଼ୀକୁ ମଧ ବଡ଼ ସଜ । ପଛେ ମାଇଁ ଆସିଲେ ମଧ ସେଇ ଅଭ୍ୟାସ ମାମୁଙ୍କର ଥାଏ ।···ଆଚ୍ଛା ନନ୍ଦେ ! ତୁମେ ଭଗବତୀଙ୍କ ପୋଡ଼ାବଲ କେବେ ଖାଇଛ ନା ? ଆଃ ! ସେ କ ଜନିଷ ! ମାଟି ଖୋଳା ହୋଇ ଏଠି ପଜା ବେଲକୁ ତ ବଡ଼ ବଡ଼ ଖଦା ପଡ଼ିଥିବ । ଜଳନ୍ତା କାଠ କାଢ଼ି ନେଇ ସେଇ ରଡ଼ ନିଆଁରେ ଦନୋଟି ଉତ୍କୃଷ୍ଟ ଖଇଙ୍ଗା ପୋଡ ଦଆଯାଏ । ସେ ଯାହା ଲଗେ ଆଉ କହିବା କଥା ନାହିଁ ! ଫଗୁ ପର ଝୁଡ଼ି ପଡ଼ ଥିବ । ତାର ଗୋଟେ ଭିନ୍ନ ସୁଆଦ । ସେ ପୀଠର ମହିମା ପର ! ସେଠି ଝୁଡ଼ା ମହୁରଟା ହେଲେ ଜଣା ସୁଆଦ ଲଗେ ! ଆଳୁ, କଦଳୀ, ବଡ଼ ଆଦ ପଡ଼ ସେ ଯେଉଁ ଯୋଗ ହୋଇଥିବ ଅଠା ଧର ଯାଇଥିବ ଯେ

ତାଙ୍କ ଫୋପାଡ଼ଦେଲେ ଜିଅଣ ଦେହରେ ଲାଗି ଯାଉଥିବ । ···ଗୋଟିଏ ତ ଭେକ୍‌ଟା ମାଛ ତଳମୁହାଁ ହଳେ ଆଗରୁ ଓହ୍ଲେଇ ଦେଇଥିବେ । ସେଇ ଗୋଟିକରେ ମନ୍ତାକୁର୍ ଜିଜ ସାଣ୍ଡି ଜିଅଣ । ଗୋଟା ଭୋଜ ହିଠିଯାଏ ।''

ଏ ସୁଅରେ କଥା ହେଲେ ପିଲାଙ୍କୁ କ ଆଉ ବନ୍ଦ ହୁଏ ? ଦୁଇ ଭାଇ ଆଗ୍ରହରେ ଖାଲି ଶୁଣିଲାଗିଛନ୍ତି । ସୁଦର୍ଶନ ନନ୍ଦଙ୍କୁ ମଧ୍ୟ ଶୁଣିବାକୁ ଭଲ ଲାଗୁଛି ।

''ସେଥରର ନନା ମୋତେ ନେଇ ବାଣପୁର ଯାଇଥିଲେ । ଦେବୀପ୍ରତିମା ସେଇଠି ଦେଖିଛି । ସେ ମାଛ କ'ଣ, ସେ ମୁଆଁ କ'ଣ ? ଦେବରୁଚ ଜନଷପରୁ । ଦେଟ୍‌ନ, ଦେବତା ଗୋଟିକେ ପର ଭୋଗ ଗୋଟିଏ । ଲିଙ୍ଗରାଜଙ୍କ କୋରା, ରଘୁନାଥଙ୍କ ଜାକରା, ସାକ୍ଷୀଗୋପାଳଙ୍କ ଘରପୁଲି ଆଉ ସଂସାରରେ କେଉଁଠି ହେବ ? ସେ ବାସନାରେ ତ ଆଗ ଅଧେ ପେଟ ପୂରିଯିବ, ଖାଇବା ତ ତେଣିକି ଅଛି । · ସେ ପୀଠମାନଙ୍କର ମହିମା ଅଛି । ମହାର୍ଦ କଥା ଆଉ କାହିଁକି କହିବା ? ସେ ତ ଗଲା ସ୍ୱର୍ଗରୁ ଦେବତା ଆସି ଖାଉଛନ୍ତି । ମୁଁ ଯାହା ଯାଇଥିଲି ନନାଙ୍କ ସାଙ୍ଗରେ ଥରେ ଲେଖା, ଆଉ ଯାଇ ନାହିଁ କି ଯିବି ନାହିଁ । ସେ ଦିନା ଗୋଟିଏ ପୁଅ ବୋଲି ସୁଆଡ଼େ ହେଲେ ନେଇଯାଉଥିଲେ । ମୋ ପରି ହୋଇଥିଲେ କ'ଣ ଯାଇଥାନ୍ତେ ?''

''ଆଚ୍ଛା ଦାସେ, ସାକ୍ଷୀଗୋପାଳରେ ନଡ଼ିଆ ଖାଇଲ ନା ?''

''ସେ କଥା କାହିଁକି ପଚାରୁଛ ହେ ! ସେଇଠି ତ ସମସ୍ତଙ୍କ ବାଡ଼ରେ ନଡ଼ିଆଗଛ, ଗୁଆଗଛ । ଯାହାଦେଲେ ଆଙ୍କୁଡ଼ି ଲଗେଇ ଦି'ଟା ନଡ଼ିଆ ତୋଳିଆଣନ୍ତି । ସେଇଥିରେ ତ ସ୍ୱର ଜିଅଣ ହୋଇଯାଏ । ଅସୁଆଦ ଜିଅଣଟା ମଧ୍ୟ ସୁଆଦ ଧରିଯାଏ । ମୋର ପରା ମନେଅଛି—ଆମେ ସାକ୍ଷୀଗୋପାଳରେ ଯାହା ଘରେ ଥିଲୁ, ସେ ମୋର ମାଇଁ ଲେଖା ହେବେ । ସେ ଦକ୍ଷିଣର ଝିଅ । ଓଳିଏ ରହିଲୁ । ଯାହା ଖାଇବାକୁ ଦେଲେ ଆଉ କ'ଣ କହିବ ? ଗୋଡ଼ ହାତ ଧୋଇ ତ ପ୍ରଥମରେ ଭୋଗ ଘରପୁଲି ଦି'ଟି ଲେଖାଁ ଖାଇଲୁ । ମୁଁ କ'ଣ ଖାଇପାରିଲି ? ସିଠାରେ ମୁହଁ ବାନ୍ଧିଦେଲା । ଘିଅ ସାକରରେ ତ ହିଟଣ୍ଡି ହେଉଥାଏ, କେତେ ଖାଇବ ? ଭାତ ଖାଇଲା ବେଳକୁ ପୁଣି ନଡ଼ିଆ ଚଟଣି, ଗୋଟିଏ ଉତ୍ତମ ମହୁର, ଆଉ ତା ସାଙ୍ଗକୁ ଲୁଣି ମାଛର ସାକର । ସବୁଥିରେ ନଡ଼ିଆ । ନଡ଼ିଆ ନ ପଡ଼ିଲେ ର ତାଙ୍କ ଜିଅଣ ଜମା ରନ୍ଧା ହେବ ନାହିଁ ଗଲା !''

ବଟ ଆଉ ଜସ୍ପୀ ପାଟି ସୁଆଦ ସୁଆଦ କରୁଥାନ୍ତି । କେତେ ମଜା କଥା ! ଘିଅ ସାକରରେ ପୁଣି ହି'ଟଣ୍ଡି ହେଉଥିବ ! ଆଃ !!

''ସୁଦର୍ଶନ କାଲିକ ବାହାରିଯିବ କହୁଛି । ରଘୁନାଥକୁ ଆଉ ଦେଖିପାରିଲା ନାହିଁ । ମୁଁ କହିଲି, ତା ଫଟ ସେ ପଠେଇଛି । ତାକୁ ଦେଖିଲେ ଯାହା, ଏ ଫଟ ଦେଖିଲେ ତାହା ।'' ଆଉ ଗୋଟିଏ ଉଦ୍ଦେଶ୍ୟରେ ଭାଇ ପୋଷିବାକୁ ନାଆଁ ଜାଳୁଥାନ୍ତି ଝୁନୁମା । ''ତାକୁ ପରା ଖୋଜିଲି ସେତେବେଳେ, ପାଇଲି ନାହିଁ । ଏ ପିଲେ କ'ଣ ତାକୁ ଠାଏ କରି ରଖିଲେ । ଏବେ ବୋହୂପିଲା ତାକୁ କେଉଁଠୁ ଖୋଜି କାଢ଼ିଲା ।''

'ଫଟ' ନାଁ ଶୁଣି ଧଡ଼ପଡ଼ ହୋଇ ପିଲେ ଉଠିଲେ । "ସ୍ୱାଇନାର ଫଟ କେମିତି ହେଇଛୁ ଯତେ !"

"ଆରେ ତମେ ଆହୁରି ଦେଖିନ କହେ ନଦେ ? ଯାଅ, ଦେଖିବ । ଭଲ ସ୍ୱାପ ଯନ୍ତ୍ର ତିଆରି କରିଛୁ ହୋ ! ସେ ଟୋକାଟା ଅବିକଳ ସେମିତି—ସେଇ ଆଖି, ସେଇ ମୁହଁ—ବଡ଼ ଆଶ୍ଚର୍ଯ୍ୟ କଥା ହୋ !"

ସୁଦର୍ଶନ ନଦେ ଉଠି ପିଣ୍ଡା ଉପରକୁ ଗଲେ । ଭଉଣୀ ଦେଖାଉଥାନ୍ତି ମାଙ୍କ ମଝିରେ ବଟ ଆଉ ଜସ୍ୱୀ ଧେଲପେଲ ହୋଇ ଘାପ ଉପରକୁ ନଇଁପଡ଼ି ଦେଖିଲଗିଥାନ୍ତି । ତାଙ୍କ ସ୍ୱାଇନାର 'ଫଟ' କଥା ଗାଁଯାକ ପିଲ୍ ଆଉ କେହ୍ବି ନ ଜାଣି ନାହିଁ । ପଞ୍ଝା ପଞ୍ଝା ହୋଇ ଆସି କେହ୍ବି ଆଉ ନ ଦେଖିଛୁ ବୋଲ୍ ନାହିଁ !!

ଦାସେ ଖଣ୍ଡେ କାଠିରେ ନଆଁକୁ ଉଖୁରେଇଦେଲେ । ଉମ୍ବେଇ ପାଖକୁ ଟାଣିନେଇ ହାତ ପାଦ ବସି ସେକୁଥାନ୍ତି । ମନେପଡ଼ିଲ ମାମୁଘର କଥା । ରତ୍ନପୁରିଆ ଯତେ ବଡ଼ ଉତ୍ପାତିଆ ସ୍ୱାପେ ! ସବୁ କଥାରେ କଉତୁକ କରିବେ । ତାଙ୍କ କଥା ମଧ କେମିତି ବେଢାଗିଆ । ଲୋକଗୁଡ଼ାକ ପଟେଇ ପରି, କଲ୍ଲୁ କଥା କହିବେ ସେମିତି ମାଇଚିଆ ।

"ହଇହେ ଯ-ଅ-ଦୁ, ଯ-ଅ-ଅ-ଦୁ ! ଏ ବର୍ଷ ଆଉ ବା-ଆ-ଡ଼ି ପଡ଼ିଲ ନାଇଁ ?"

"ଅ-ଅ-ହୁ ! ବା-ଆ-ଡ଼ି କେମିତି ପଡ଼ିବ ? ଏ ବର୍ଷ ପରି ହୋ ଆ-ଆ-ମ୍ବ ନାଇଁ ।"

ସ୍ୱାପ କ'ଣ ଶୁଣିବ ? କୁଠି ପୁଣି ବାଡ଼ି ପଡ଼ିଲ ନାହିଁ ବୋଲ ତାଙ୍କର ମନ କଷ୍ଟ । ତାଙ୍କ ଗାଁକୁ ତ ରତ୍ନମାଳିଆ ଦଶଦଗରୁ ଘେରିଛୁ । ମହା ପ୍ରତ୍ୟକ୍ଷ ଦେବତା । ଏଣ୍ଡ କେବେହେଲେ ସେ ଗାଁଟାରେ ବାଡ଼ି ପଡ଼ିବାର ଜଣାନାହିଁ କ ଶୁଣାନାହିଁ । ପାଖ ଆଖ ଗାଁରେ ପଡ଼ିଲେ କେମିତିଆ ଭୋଜନ ଖାଇଯାନ୍ତେ ଏ ଖର୍ଚ୍ଚରେ ସେମାନେ ଥାନ୍ତି ।

"ମନକୁ ମନ କ'ଣ ଏମିତି ହସୁଛ କ ଦାସେ ? ଆସ ଏ ପିଣ୍ଡାକୁ, ସେଠି ଏକୁଟିଆଟା କ'ଣ କରୁଛ ?

"ହୁଃ ! ମୁଁ ଆଉ ଏଠୁ ଉଠି କେତେ ଯାଉଥିବ ?"

ପୁଣି ମନେପଡ଼ିଲ ମାମୁଙ୍କ କଥା । ଯଦୁ ମିଶ୍ରଙ୍କ ମାମୁ ଲେଖା ହେବେ ମାଗୁଣି ଷଡ଼ଙ୍ଗୀ । ତାଙ୍କର ଗୋଟେ ଯଜମାନ ଘରକୁ ଶ୍ରାଦ୍ଧ କରି ଯିବାକୁ ଥାଏ । ସେଦିନ ସକାଳେ ଯଦୁ ମିଶ୍ରେ ବାହାରିଲେ ଗାଧୁଆ ପାଧୁଆ କରି । ନୂଆ ପଇତା ପଙ୍କାଡ଼ିଏ ଗିର ଗିର କରି ହଳଦୀ ମଣ୍ଡି ପିନ୍ଧିଥାନ୍ତି । ବାଟରେ ମାମୁଙ୍କ ସଙ୍ଗେ ଭେଟ ହୋଇଗଲ ।

"କରେ ଯ-ଅ-ଦୁ । କୁ-ଉଆଡ଼େ ଯାଉଚୁ ମ ?"

"ଅ-ଅହ୍ନ । ଗୋଟେ ଶ୍ରାଦ୍ଧ ଘରକୁ ଯାଉଚ । ଆଉ କ'ଣ ଚୂ-ଉ-ଲାକ ଯାଉଚ ନା ଗା-ଆ-ଡକୁ ଯାଉଚ ।" ଯାଇଁ ପହଞ୍ଚିଲେ ଷଡ଼ଙ୍ଗୀଙ୍କ ଯଜମାନ ଘରେ ।

"କଉ, ତମର ଶ୍ରା-ଆ-ଦ୍ଧ ହବ ପରି !"

"ଆଜ୍ଞା ହଁ, ଆମ ପୁରୋହିତ ଷଡ଼ଙ୍ଗୀଏ ଆସିଲେ ହବ ।"

"ମା-ଆ-ଗୁଣି ଷଡ଼ଙ୍ଗୀଟି ? ଅ-ହ୍-ହ୍ । ତାଙ୍କର ପରା କା-ଆ-ଳ ହୋଇଗଲା ହୋ ।"

"କ'ଣ ହେଲା ? ସେ ପରା କାଲି ଆସିଥିଲେ ।"

"ସେ ଆମ ମା-ଆ-ମୁ ପରା । ଆମେ ଆଉ କ-ଅ-ଣ ମି-ଇ-ଛ କହିବା ? କା-ଆଲି ରାତିରେ ତ ବା-ଆ-ଡ଼ ପଡ଼ିଗଲା । ତାଙ୍କୁ କା-ଆଣ୍ଟେଇ କରି, ପଇତା ବ-ଅଦଳ କରିଛୁ ଦେଖୁନା । ହଉ ତମର ଶ୍ରା-ଆ-ଦ୍ଧ ଆଉ କ'ଣ ବା-ଆକି ରଖିଦବା । ଦିଅ । ସ-ଅ-ଜ କରିଦିଅ । ବେ-ଏ-ଗି ଯାଉଦେବା ।"

ସେଇଠୁ ପଇସାପଇ, ଗୁଡ଼ଉଲ ପଞ୍ଚା ଧରି ଆସି ଘରେ ।

ସେଦିନ ମାଗୁଣି ଷଡ଼ଙ୍ଗୀଙ୍କ ସାଙ୍ଗେ ପୁଣି ଦେଖାହେଲା ।

"ତୋ···ର-ଅ-ଇ ଜଳୁନ କ ଯ-ଅଦୁ !"

ଦାସେ ଏଇଠି ପାଟି କରି ହସିପକାଇଲେ ।

"ଏମିତ ବାପ୍ପା ପରି କ'ଣ ହସୁଛ କ ଦାସେ ?"

"ନାଇଁ ହୋ ! ମାମୁଙ୍କ କଥା ମନେପଡ଼ିଲା ଯେ ହସୁଥିଲି । ଶଳା ଆଗରେ ପୁଣି ସବୁ ଦାସେ ବଖାଣିଗଲେ । ହସବୃଷ୍ଟି ଗୁଡ଼ାଏ ହେଲା । ଝୁଲୁମା' ତ ଶୁଣି ଶୁଣି ସେଇ କଥା ଉହୁଘଷା କଲେଣି । ସେ ଦାଣ୍ଡଘରେ ଖୁଇ ପାଇଁ ଖଟିଆ ପକାଉଥାନ୍ତି ।

"ହଇରେ ସୁଦେଇ, ଶୋଇବୁ କହୁଥିଲୁ ପରା । ତୋ ଶେଯ ପଡ଼ିଲା, ବାହାରିଆ ।"

"ଆସୁଛୁ, ଆସୁଛୁ । ଏଇଠି ଦାସେ ବଡ଼ ଗମାତ କଥା କହୁଛନ୍ତି ପରା; ଆମ ଗାଁର ଆଗକାଳିଆ କଥା ।"

ଆହୁରି କେତେ ପୁରୁଣା କଥା ଦାସଙ୍କର ମନେପଡ଼ିଗଲା, ଯେମିତ ଦର୍ପଣ ଦେହରେ ସେ ନିଜର ପଲାଦିନର ଗ୍ରଇ ଦେଖୁଛନ୍ତି । ···କିଛି ସମୟ ପରେ ସୁଦର୍ଶନ ନନ୍ଦେ ସେଇଠୁ ଉଠି ଚାଲିଯାଇଛନ୍ତି । ଦାସେ ଆଉ ଜମା ଜାଣିପାରିନାହାନ୍ତି ।

ତାଙ୍କଠାରେ ଅନ୍ୟମନସ୍କ ଭାବରେ ଝୁଲି ନିଆଁ ଉଖାରୁଥାନ୍ତି । ପାଉଁଶ ଭିତରୁ ଚକ୍ କରି ନିଆଁ ଦିଶିଯାଉଥାଏ ।

ସାଆନ୍ତରା ଘର ପିଣ୍ଡାଟା ବଡ଼ ଅଣଓସାରିଆ । ସେଇଠି ବଡ଼ କଷ୍ଟରେ ଧାଡ଼ିହୋଇ ଗୁରେଟି ପିଲା ବସନ୍ତି । ···ନାନ୍ଥଙ୍କ ସ୍ୱାପ ! ପୁଣି ଆସି କହିବ କ'ଣ ନା, 'ମାଷ୍ଟ୍ରେ ଗଣ୍ଡେ କୋଲା ଦବନ ?'···ନନା ନ କହିଥିଲେ ଆଉ ମାମୁ ହଁ ନ କରିଥିଲେ ମୁଁ କ ଆଉ ମାଷ୍ଟ୍ର ହୋଇଥାନ୍ତି । ଛ' ମାସ କାନ୍ଦାରେ ମତେ ସେଇଠି ରହିବାକୁ ହେଲା ନାଇଁ କ ।···ତାଙ୍କୁ ସେତେବେଳକୁ ଏଗାର କି ବାର ବର୍ଷ ହୋଇଥିବ ପରା । ଗୋଟା ହୋଇ ବଡ଼ କଅଁଳିଆ-ଟିଏ ହୋଇଥାଏ । କେତେ ଗେଲେଇ ହୋଇ ସେ କୋଳ ମାଗେ ।। ଏ ସ୍ୱାପ ମାଇକିନିଆ ଜାତ ପରା ଓଳିଆରୁ ଗଜା ହୋ ।—ମାତ୍ର ସେ କ'ଣ ଜାଣିଥିଲା ଏତେ କଥା ହେବ ବୋଲି ?—ନା ମୁଁ ଜାଣିଥିଲି ସ୍ୱାପ ତାକୁ ମୁଁ ବାଛି ହେବ ବୋଲି ? ନନା ଆସି ମାମୁଙ୍କ

ଯାଙ୍କ ଯେମିତ ନନ୍ଦଘରର କିଛି ପ୍ରସଙ୍ଗ କଥା ହେଉଛନ୍ତି, ନା ସେ ଆସିବ କୋଳ ଖାଇବାକୁ, ନା ମୁଁ ଯାଉଛି ସେ ନନ୍ଦଘର ଯାଇଆଡ଼େ । ଦିନେ ମାତ୍ର ପୋଡ ପଣସ ଖାଉଥିଲି । ନୂଆଣିଆ ଗଛଟାର ଅଧେବାଟ ଚଢ଼ି ଯାଇଛି । ସେଇଠୁ କ'ଣ ଓହ୍ଲେଇ ଆସିବ ? ବସି ତ ଗଳ୍ପ ସେଇଠି ଏଡ଼େ ବଡ଼ ଓଡ଼ଣା ଟାଣି ।

ପୁଣି ହସିଲେ ଦାସେ ।

କେତେ ସବୁ ବଦଳିଗଲା ସତେ ! ଦେଖୁ ଦେଖୁ ସେ ଅସି ଆଠଟି ପିଲାର ମା । ବିଧାତା ସିନା ଉନୋଟିଙ୍କ ଆମ ଭାଗ୍ୟକୁ ଲେଖି ନଥିଲା ।

ଉପର ପିଣ୍ଡାରେ ଟିକୁମା ଉବଧର ଯା'ଆସ ହେଉଛନ୍ତି । ଆଲୁଅ ମୁହଁ ଉପରେ ପଡ଼ୁଛି । କିନ୍ତୁ ସେଥିରେ ଦାସେ ସେଦିନର ସେ ବରକୋଳଖିଆ ମୁହଁ ଆଉ ଦେଖିପାରୁ ନାହାନ୍ତି । କାନ ପାଖକୁ କଳା ମଚମଚ କୁଞ୍ଚକୁଞ୍ଚିଆ ବାଳର ପେନ୍ଥା ଆଉ ନାହିଁ । ଗ୍ରୁ-ଆ-ଡ଼ । କୋଉ କଥାଟା ରହୁଛି ଯେ ବାକ ଏଇଟା ରହିଥାନ୍ତା ! ହେଲେ କେଡ଼େ ବେଗି ସମସ୍ତ ଯାଉଛି ଦେଖ । ···ହେଇ କାଲି ପରି ଲାଗୁଛି । ସେ ପାଲିଙ୍କିରେ ବସି ବାଆହୋଇ ଯାଉଛନ୍ତି । ଗଉଡ଼ଙ୍କ ହୁଁ ହାଁ ଡାକ ଏବେ ବି ଶୁଭୁଛି । କିନ୍ତୁ ସପନ ପରି ସବୁ କୁଆଡ଼େ ଉଭେଇଗଲାଣି । ଯା···ସବୁ ଯେମିତି ଯିବ । 'ତଳ ବରଡ଼ା ଖସୁଚ, ଉପର ବରଡ଼ା ହସୁଚ, ମଝି ବରଡ଼ା ଥାଇ କହୁଚ ମୋ ଦିନକାଳ ଆସୁଚ ।' —ହୋଇଗଲା ଆସି ପଚୃଶ ସତକ, ଆଉ କେତେଟା ଦିନ ବା । 'ଜଣା ହେଉଛି ଦିନୁ ଦିନ ଆୟୁଷ । ଆଉ ଏଣିକି ଅଛି କେତେ ବୟସ ରେ ।' ଫଳ ପାଚିଆସିଲା, ଡେମ୍ଫ ଦୁର୍ବଳ, ଟିକିଏ ପବନ ହେଲେ ଖସିଲା । ଆଉ କ'ଣ ତାକୁ କିଏ ଯୋଡ଼ି ରଖିପାରୁଛି ନା ପାରିବ ?···ପ୍ରଭୁ, ତୁମର ଇଚ୍ଛା । କି ମାୟା ଲାଗିଛି ମଣିଷକୁ । ସେ ସେଇ ପାଲିଙ୍କିରେ ବସି ବସି ବସ୍ତ୍ର ଅଣାସ୍ୱରରେ ଗ୍ରଳୁଛି ଅଜଣା ବଣମାଳ ପାରି ହୋଇ ଅଧରାତିଆ ଅନ୍ଧାର ଭିତରେ । ଏ ବେତାଳ ପାଲିଙ୍କିଟାକୁ ନେଇ କେଉଁଠି ହାବୁଡ଼େଇବେ ତାହା କେହି କହିପାରିବେ ନାହିଁ । ସେଇ ପାଲିଙ୍କି ଭିତରେ ଘୁମେଇ ଘୁମେଇ କିଏ କେତେ ସ୍ୱପ୍ନ ଦେଖିଗ୍ରଲିଛି । କରେ, ଆଖି ଥରେ ଫିଟା—ଦେଖିବୁ ସବୁ ଅନ୍ଧାର । ବଗୁଡିଆଟାରେ ହୁଁ ହାଁ ଡାକ ଜଣା ଭୟଙ୍କର ଶୁଭେ ? ବାବା !

ଗଲା ଖଙ୍କାର ଦାସେ ଦୋକତା ଡିବା ଅଣ୍ଟାରୁ କାଢ଼ିଲେ ।

ବଡ଼ ବିଚିତ୍ର ସତେ ଜୀବନଟା । ପାଣିସୁଅ ପରି ବହି ଗ୍ରଲିଛି । ସବୁବେଳେ ତଳମୁହାଁ । ସେଇ ଲୁଣିପାଣିରେ ମିଶି ଏକାକାର ନ ହେବା ପର୍ଯ୍ୟନ୍ତ ତା'କୁ ଆଉ ଶାନ୍ତ ନାହିଁ । ତା'ର ତ ଆଉ ଆୟତ୍ତ କିଛି ନାହିଁ । ତାକୁ ଯୋଉ ବାଟେ କଣେ ନଚଉଛି ସେ ସେଇ ବାଟେ ନାଚିବାକୁ ଲାଗିଚ । ପାଦେ ପଛକୁ ଘୁଞ୍ଚିଯିବାକୁ ବଳ ନାହିଁ । ଖାଲି ଏମିତି ଭାବ ବସିଲେ ମନକୁ ଟିକିଏ ସିନା ଆସୁଛି, ନହେଲେ ତ ଜୀବନଟା ଖାଲି ହୁ ହୁ ଆଗେଇ ଯିବା କଥା । ହଃ, ମରିବା ତ ! କିଏ ଏବେ ମରି ନାହିଁ ଯେ ଏତେ ଡର ପଡ଼ୁଛି !

"କ'ଣ ଆଜି ସେଇଠି ରାତି ପାହିଯିବ କି ?"

ଆଉ ଟିକିଏ ଆଗରୁ ଝିଙ୍କୁମାନଙ୍କର ଏ ଡାକ ଶୁଣିଥିଲେ ଦାସେ ଅବଶ୍ୟ ପଚାରିଥାନ୍ତେ —"ଆଜ କୋଳି ଖାଇବ ନାହିଁ କିଓ ?" କିନ୍ତୁ ସେତେବେଳେ ତାଙ୍କୁ ଖାଲି ସ୍ୱର ସ୍ୱର ଲାଗୁଥାଏ । ହୁଁ ହୀଁ ଡାକ କାନରେ ବାଜୁଥାଏ । ଦାସଙ୍କୁ ସଫା ଅନୁଭବ ହେଉଥାଏ ଯେ ବେତାଳ ଆଉ ପଛେଇବେ ନାହିଁ ।

କେବଳ କହିଲେ, "ହେଇ ଆସିଲି ପରା ।"

# ସକଳ ତୀର୍ଥ ତୋ ଚରଣେ

"ବୁଝିଲ କର୍ଣ୍ଣ ଝକୁମା, ଏଥିରେ ତମେ ଆଉ ମନରେ ରୋଷଧରି ବସିଲେ କ'ଣ ହେବ ! ପାଣ୍ଡପୁଅ ଗଲା ତା ମା' ବାପଙ୍କୁ ଧରି ପୁରସ୍ତମ—ତମେ ସେଇ କଥାଟାକୁ ଲକ୍ଷ୍ୟ ଦେଲେ ହବ ! ସେମାନେ ହେଲେ ଥିଲବାଲା । ତାଙ୍କୁ ଭଗବାନ ପଇସା ଦେଇଛନ୍ତି, ସେ ଯିବେ, ତା' ବୋଲି ତମେ କାହିଁକି ଖିଆପିଆ ଛାଡ଼ି ଘରେ ବସିବ ! ଏ କଥା ମୋର ସମଝ୍ ପଡ଼ୁ ନାହିଁ । ଯାଅ, ଉଠ, ବାଢ଼ି କରି କ'ଣ ଗଣ୍ଡେ ଖାଇପକାଅ । ସେ ଜଗନ୍ନାଥେ କ'ଣ ଜାଣୁ ନ ଥିବେ ଯେ କେତେ ଦୁଃଖୀ ତାଙ୍କୁ ଦେଖିବାକୁ ମନ କରି ମଧ୍ୟ ବେଡ଼ା କାଟି ଘୁଞ୍ଚିଯାଇ ପାରୁ ନାହାନ୍ତି ?"

"ତମ ହାତ ଧରିଲି ଦିନୁ ତ ସେଇଆ, କ'ଣ ଆଜି କି ? ଖାଲି ଜଞ୍ଜାଳରେ ପକେଇ ପାଣ୍ଡିବ । ମଣିଷ ଆସି କୋଡ଼ି କୋଡ଼ି ବର୍ଷ ଘର କଲା ଯେ ଏ ଇରୁଣ୍ଡି ବନ୍ଧ ଡେଇଁଲା ନାହିଁ । ଭିତରେ ସିଝେଇ ସନ୍ତୁଳି ହେଇ ଦିନ ଗଲା ।...କାଞ୍ଚ ତେଲୁଣୀ ହେଇ ମୁଣ୍ଡ ! ସିଏ ଗଲା ଗୋବିନ୍ଦ ଦ୍ୱାଦଶୀ ଦେଖିବ । ମଣିଷ ତାକୁ ମଧ୍ୟ ସରି ହେଲା ନାହିଁ ! କେତେ ଲୋକ ଯିବେ, କେତେ ହାଟ ବଜାର, କେତେ ଦୋକାନପସରା—ସବୁ କିଣିବେ । ଧିକ୍ ! ମାଇକିନିଆ ଜନ୍ମ ପାଇଥିଲି ଯେ ପୁଅଟିରୁ କାଚ ମୁଠାକୁ ଯୋଗ୍ୟ ହେଲା ନାହିଁ ।"

ପିଣ୍ଡାରୁ ସ୍ତ୍ରୀଙ୍କର ଈର୍ଷା-ଅଭିମାନ-ଅଭିଯୋଗମିଶା କାନ୍ଦଣା ଦାସେ ଶୁଣି ନ ଶୁଣିଲା ପରି ବସିଥିଲେ । ଚତୁର୍ଦ୍ଦିଗ ଘୋଟି ଯାହା କଳାମେଘଟା କୁଣ୍ଡା ଝାଡ଼ୁଥିଲା, ଅଳ୍ପ କୋହଲିଆ ପବନ ବାଜି ରବ ରବ ହୋଇ କୁଢ଼େଇହୋଇପଡ଼ିଲା । ଅନେକ ଦିନରୁ ସଞ୍ଚିତ ସେ ବାମ୍ଫୁଆ କୋହ । ସମ୍ପତ୍ତି କୋଳରୁ ଆସି ନଅଣ୍ଡିଆ ଭିତରେ କର୍ମ ଆଦରି ପଡ଼ିରହିବାର ବିଦ୍ରୋହ, ଛାତି ଅନ୍ଧାରରେ ଆହୁରି ଶହ ଶହ ଅସନ୍ତୋଷ, କେତେ ଘୂମନ୍ତ ଅଭିଳାଷ, ଗୁଦା ପଛପଟେ ରକ୍ତମୁଖା ବାଘ ପରି ସନ୍ତାନ କଷ୍ଟ—ଏ ସମସ୍ତ ଯେପରି ସେଇ ଅସହାୟ ଓ କରୁଣ କଇଁ-କଇଁ କାନ୍ଦ ଭିତରେ ପ୍ରକାଶ ପାଉଥିଲା ।

ଦାସେ କନ୍ଦୁ କଥାକୁ ଲକ୍ଷ୍ୟ ରଖି ଭାବିଲେ, 'ଓଃ, ଏଗୁଡ଼ାକ ସର୍ବେ ସମାନାଃ । କେହି ତ ଆଉ ଠାକୁର ଦର୍ଶନକୁ ଯାଉନାହାନ୍ତି । ସବୁ ଖାଲି ଖାଇବେ; ଲଗେଇବେ ! ହୁଃ ! ଏଥିପାଇଁ ପୁଅ ଯିବାକୁ ଏତେ ହମହମ ।'...ତାଙ୍କୁ ସବୁ ବୁଝାପଡ଼ିଲେ ମଧ୍ୟ କେମିତି କେଜାଣି ଟିକିଏ ହସମାଡ଼ିଲା । କନ୍ଦୁ କିଛି କହିଲେ ନାହିଁ ।

ଆରଘରୁ ସଡ଼ ସଡ଼ କାନ୍ଦଣା ସେମିତି ଶୁଭୁଥାଏ ।

ତାଳପତ୍ର ଝେଡା ଧାଁ ଜଙ୍ଘ ଉପରେ ପଡ଼ିଛି । ଦାସେ ଲେଖନ ମୁନ ଭୂଇଁରେ ଘଷି ଗାଲରେ ପରୀକ୍ଷା କରୁଥାନ୍ତି । କିନ୍ତୁ ମନଟା ତାଙ୍କର ଅନ୍ୟଆଡ଼େ ।···ସନାତନ ଦାସଙ୍କ ଆଠପ୍ରାଣୀ କୁଟୁମ୍ବ ଏ ମହଙ୍ଗା ଦିନରେ ବଡ଼ କଷ୍ଟରେ ଚଳନ୍ତି । ପୂଜକ ହିସାବରେ ଲକ୍ଷ୍ମୀ-ନାରାୟଣଙ୍କ ଭୋଗ ଗଣ୍ଡାକ ଆସି ସକାଳଓଳି ବାଣ୍ଟିକୁଣ୍ଟି ଚଳିଯାଏ । ବାକି ଆଉ ଗୋଟିଏ ଓଳି ।···ଦାସେ ଦିନେ ଦିନେ ଖୁସି ମନରେ ଥିଲେ କହନ୍ତି, "ହଁ ! ହେଲେ ହେଉ ମହଙ୍ଗା କାଳ, ଆମର ଭଗବାନ ଚଳାଉଛନ୍ତି । ସେ ନ ଚଳେଇ ପାରିଲେ ଆମେ ଚଳେଇ ଦେଉଛୁ ।—କଉ ! ହେଲା ନାହିଁ ନା ! ଯେଉଁ ଦିନ ଦି' ପଇସା ଯୋଗାଡ଼ ହୋଇଯାଉଛି, ସେ ଦିନଟା ଭଗବାନ ଚଳେଇଲେ । ଆଉ କିଛି ନ ମିଳିଲା ଦିନ ଧୀର୍ ଉପାସରେ ଶୋଇ ପଡ଼ୁଛୁ । ସେଇଟା ଆମେ ଚଳେଇଲୁ ନା ସେ ଚଳେଇଲେ !"

ଶୀତଦିନଆ ସକାଳ ପହରଟା ଝରୁପିଡିଆ ବସି ଦାସେ କେଶବ ରାମାୟଣ, ସାରଳା ମହାଭାରତ ତାଳପତ୍ରରେ ଲେଖନ୍ତି । ବାଇଗଣ ମଞ୍ଜି ଗଣି ହେଲା ପରି ଅକ୍ଷର । ପତ୍ରଟିକ ଚିକୋଟି ଲେଖା ଧାଡ଼ି; କହିଁତ ମାଳ ପରି !—ଗୋଟିଏ ଅକ୍ଷର କଟା ନାହିଁ, ଗୋଟିଏ ଧାଡ଼ି ବଙ୍କା ନାହିଁ । ଲେଖା ସରିଗଲେ ପୋଥିକି ମିଶଗ ଗ୍ରନ୍ଥି ମଲାଟ ବନ୍ଧେଇ କରି ଦାସେ ବିକ୍ରୀ କରି କିଛି ପଇସା ପାଆନ୍ତି । ତାଙ୍କ ଗରାଖ ପାଖଆଖ ଦଶଖଣ୍ଡ ଗାଁ ଲୋକ । ଯାହାର ଦି'ପଇସା ହେଲା, ସେ ଦାସଙ୍କ ଗନ୍ଥା ସାରେ ଆସି ଗାଦିମାରି ରହିବ । ଏ ଛାପା ବହି ଯୁଗରେ ମଧ୍ୟ ଲୋକଙ୍କର ସେହି ରୁଚି ଆଗ୍ରହ ବଦଳି ନାହିଁ । ସେମାନେ କହନ୍ତି, "ତାଳପତ୍ର କାଳପତ୍ର । ପୋଥିଲେଖା···ନଇଲେ ଏ ଛାପା—କଏ ଛପା କ'ଣ ?···ଏବକୁ ସିନା ସବୁ ଛାପା ହୋଇ-ଗଲା, ନଇଲେ ତ ସବୁ ପୋଥି ନା ନାହିଁ ? ସେ ଜିନିଷ ପରି ଅଲଗା ।"

ଗାଲ ଉପରେ ଲେଖନ ମୁନ ପରୀକ୍ଷା ଚାଲିଛି, କିନ୍ତୁ ଦାସଙ୍କ ମନ ଲେଖାରୁ ଖସି ଯାଇଛି । ମନ ଭିତରେ ବିରକ୍ତିରେ ଚଡ଼୍ ଚଡ଼୍ ହେଉଛନ୍ତି ।

ଗୋବିନ୍ଦ ଦ୍ୱାଦଶୀ ପଡ଼ିଛି । କେତେ ଢୋକାଟ ସବୁ ହଉଛନ୍ତି ଯିବାକୁ । ହେଲେ ପୁଣ୍ୟ ହେବ ବୋଲି ସବୁ ଯାଉଛନ୍ତି ନା ? ସ୍ନାପେ ଗୋଠ ମାଡିଲେ ଖଣ୍ଡିଆ ମାଡିବା ନ୍ୟାୟ । ସେ ବର୍ଷ ପାଟପୁରକୁ ବାଦିପାଲି ଦେଖିବାକୁ ଗାଁଟାଯାକ ଲୋକ ଉଠିଗଲେ କି ! ଘରଯାକ ଖାଲି ପାଲି ପିଉଛନ୍ତି । ଏଡ଼େ ବଡ଼ ଗାଁଟାରେ ବରାଡ଼ ପିଲାଟାଏ ପୁଛା ନାହିଁ । ତା ଆର ଦିନ ଆସିଲା ବେଳକୁ ପଧାନ ଘରେ ଯୋଗ—ତାର ଅମାର ଭାଙ୍ଗି କଏ ଧାନ ନେଇଯାଇଛି । ପାତ୍ର ବୁଢ଼ାର ଚେଡା ବୁଢ଼ିଗଲା—ତା ଟଙ୍କାବାକ୍ସ କଏ ଟେକି ନେଇଛି !! ହେଲେ ସେ ବୁଢ଼ାଟା ତ ବାକ୍ସ ମୁଣ୍ଡତଳେ ନ ଦେଲେ ଶୋଇବ ନାହିଁ କି ତାକୁ ନିଦ ହେବ ନାହିଁ । ତାକୁ କାହିଁକି ଏମିତିଆ ଭେଳିକି ଧରିଲା ? ଉଚିତ ହୋଇଛି ସ୍ନାପକୁ ।··· ସେମିତିଆ ଏସବୁ ଭାବିଛନ୍ତି ପୁରପ୍ରମରେ କ'ଣ ଗୁଡ଼େ ହୋଇଯାଉଛି, ସେ ଯାଇ ଦେଖି-ପକେଇବେ ।···ବାଉଁଶ ଗ୍ରନ୍ତି ଦେଖିବାକୁ ଏ ମାଇକିନିଆ ପଞ୍ଚା ଅଇଁଠା ହାତରେ ଦାଣ୍ଡରେ ଆସି ଠିଆ ହେବା ଲୋକ । ଏ କ'ଣ ସତେ ଯାଉଛନ୍ତି ଠାକୁର ଦେଖିବେ, ପାପ ଛଡ଼େଇବେ ବୋଲି ?···ଏବଲୁ ଏବକୁ ତ ଦେଖିବ ସମସ୍ତଙ୍କ ହାତରେ ପଇସା । କି ଯୁଗ ହେଲା

ଟଙ୍କାରେ ଛଅପା' ଗୃହଳ ବଳ ଧନୀ ତ ହେଇଗଲେ ସ୍ୱାପେ ।···ହେଲେ ଆମ ହାତରେ ବ ପଇସା ଥିଲେ ଆମେ ମଧ ଯାଇଥାଆନ୍ତୁ ନା ! ସେ ପାଟତ୍ତୋର କ'ଣ ଆମକୁ ଲଗିବ ନା ଆମେ ପୁରସ୍ତମ ଯିବୁ ?···ହଉ !!

'ହିଁ' କର ନିଶ୍ୱାସଟିଏ ମାଣବାର କେବଳ ଶୁଭିଲ ।

ଦାସେ ଲେଖନ ଟେକ ପୋଥିଲେଖାରେ ମନ ଦେଲେ । ବ ପଦ ଚାରି ପଦ ଲେଖା ହେଲ । କେଣେବ ଭଣତ ସରିଲ । ଘରେ ପିଲ୍ଗୁଡ଼ାକ କ'ଣ କାରଣରୁ ମାଡ଼ପିଟ ହୋଇ କାନ୍ଦ ଆରମ୍ଭ କରଦେଲେ । "ବଟିଆ ତ ଆଉ ହବ ନାହିଁ, ମୁଁ ଜାଣେ । ସେଇଟା ସ୍ୱାପ ହୁଣ୍ଡା, ପିଲ୍ଗୁଡ଼ାଙ୍କୁ ମାରମାର ବାତୁଆ କରଦେବ ।"

"ହେ ବଟ, ଶୁଣ ସ୍ୱାଡ଼େ । ଗୁ ସ୍ୱାପ ହାଡ଼ ଘରେ ହେଲେ ଜନ୍ମହେଇଥାନ୍ତୁରେ; ମୋ ଘରେ କାହିଁକି ଆସି ପଶିଲୁ ?"

ସ୍ୱରରୁ କାନ୍ଦ ଆହୁର ଶୁଖି ନାହିଁ । ପୁ ରୁଣା ଗେଷରେ ସ୍ତ୍ରୀ ଘରଭିତରୁ କହିଲେ— "ତମର ସେ ପିଲଟାଠେଇଁ ଏତେ ରାଗ କାହିଁକି କହିଲ ? ପିଲ୍ ମୋର କୋଉ ପହରୁ ଯାଇଛୁ ଯେ ଲୁଖୁସ୍ ଗାଧେଇ ଆଉର ଆସି ନାହିଁ । ଏ ଯୋଡ଼ାକ ପେଟେ ଲେଖାଁ ଖାଇ ବାଡ଼ଆପିଟା ହେଉଛନ୍ତ । ସେ ଘରେ ଥିଲେ ନ ଥିଲେ ସବୁ କଥାରେ ଖାଲ ତାହାର ଦୋଷ !"

ଦାସେ ଆଉ ଉତ୍ତର କଛୁ ଦେଲେ ନାହିଁ । ପିଲ୍ଙ୍କର ପାଟି ଗୁଣ୍ଡ ତ ତାଙ୍କର ଦେହସହା ହୋଇଗଲଣି । ଗୁଡ଼, ଏଗୁଡ଼ାକ ତ ସେମିତ—ମାତ୍ର ଏଇଟା ମା ହେଇ ତାଙ୍କର କ'ଣ ଆଉ ଆଳ ସମ୍ଭାଳଲ ! ସେ ବୋହୂପିଲଟା ନ ଥିଲେ ତ ସ୍ୱାଙ୍କ ଦେହରେ ଉଇ ଲ୍ଗି ସାରନ୍ତେଣି ।

ବୋହୂ କଥା ମନେପକାଇ ଦାସେ ଖୁବ୍ ନରମିଗଲେ । ମନକୁ ମନ କହିଲେ, ହଉ, ଘର ହେଇ ପିଲେ କ'ଣ ଆଉ ପାଟି କରବେ ନାହିଁ ! ମାତ୍ର ବୋହୂଟା ମୋର ଲକ୍ଷ୍ମୀଟାଏ । ଏ ହୁଣ୍ଡା ସ୍ୱାପ ଦନଯାକ କ'ଣ ଦଣ୍ଡେ ଘରେ ରହିଲ ? ଭାଗବତ ଘରେ ସଞ୍ଜ ହେଲେ ରାତ ଦ ଘଡ଼ ପର୍ଯ୍ୟନ୍ତ ପଖଜ ଟିପିବ । ତାକୁ ଘର କଥା ତ କଛୁ ଲଗିଲ ନାହିଁ··· ହଉ, ଏ ବୁଢ଼ାଟା ଆଉ କେତେ ଦନ ! ବେକରେ ପଡ଼ିଲେ ବଲେ ବଜେଇ ଶିଖିବ, ସ୍ୱାପ ଯିବକୁଆଡ଼େ ?

ମନେ ମନେ ହସି ହସି ଚଷମା ଫିଟାଇ ଦାସେ ଯତ୍ନରେ ଗୁଡ଼ାଇ କାନମୁଣା ଭିତରେ ରଖିଲେ । ପୋଥି ବନ୍ଧାହୋଇ ରଖା ହେଲ । ଟିକଏ ଦୋକଡ଼ା ପାଟିରେ ଦେଇ ସେ ଦାଣ୍ଡ ପିଣ୍ଡାରେ ଯାଇ ଠିଆହେଲେ । ତାଙ୍କ ଘର ମୁହାଁମୁହିଁ ଦାଣ୍ଡ ସେପଟ ସାଇରେ କାଶ୍ୱ କେଲ୍ଣି ଘରେ କୋଲପ ପଡ଼ିଛୁ । ସେ ପୁରସ୍ତମ ପଳେଇଲ୍ଣି । ଗାଁଟାରୁ ଅଧେ ଲେକ ଚାଲିଗଲେଣି ହୋ !···ହଁ, କାହିଁକି ନ ଯିବେ ? ଗୋବନ୍ଦ ଦ୍ୱାଦଶୀ ପର ଦନ କ'ଣ ଆଉ ଆସିବ ? ପରମଭାଗ୍ୟ ଯା'ର ଥିବ ସେ ଏପରି ଦନରେ ଯାଇ ଜଗନ୍ନାଥ ଦର୍ଶନ କରବ ।··· ସେ କପାଳ ଖଣ୍ଡ ହେଲେ କଣି ନ ଥାନ୍ତା ! ହେଲେ ସେ ଛଟା ଟଙ୍କାରେ କ'ଣ ହୋଇଥାନ୍ତା ?

ଏଠି ତ ଆଉ ଏକୁଟିଆ ଯିବା କଥା ନୁହେଁ । ସମସ୍ତଙ୍କୁ ସାଙ୍ଗରେ ଲମ୍ଭେଇ ନେଇଗଲେ ଛ କୋଡ଼ି ସଉକ ଟଙ୍କା ନ ହେଲେ ନୁହେଁ । ଗୁଡ଼ ! କଥାଟା ଉପରେ ନ ଭାବିବା ଭଲ ବୋଲି ଦାସେ ଆସ୍ତେ ପେଟରେ ହାତ ମାରି ପିଣ୍ଡାର ଏ ପାଖ ସେ ପାଖ ଟହଲୁଥାନ୍ତି ।

ନୀଳକଣ୍ଠ ପଣ୍ଡିତ ମଧ୍ୟ ପୁରୀ ଯାଇଛୁ । ଜାଣିବା ଶୁଣିବା ଲୋକଟା ତ ! କାଶୀରୁ କ'ଣ ଆଉ ମାହାଳିଆ ପାଠ ପଢ଼ି ଫେରିଛୁ ! ପଇସା ବ ହାତରେ ଗଣ୍ଡେ ହୋଇଗଲଣି । ସକାଳେ ଗାଧୋଇ ଆସିଲେ ପଣ୍ଡିତ ଖଣ୍ଡେ ଶାଲ୍ ଘୋଡ଼େଇ ହୋଇ ତା ଉପରେ ନାମାବଳୀ ପକାଏ । ହଉ, ସେ ତ ଯାଇ ଅଧେ ସମସ୍ତ ନୂଆ କୁଣିଆ ହେବ । ପୁଅ ଇନ୍ଦ୍ରମଣି ପାଇଁ ପୁରୀରୁ ପ୍ରସଙ୍ଗ ଅସିଛୁ, ସେ ସେଇଥିରେ ମାତବ । ଆଉ ଦ୍ୱାଦଶୀକୁ କଏ ପଚାରେ ? ପୁରୀରେ ବନ୍ଧ୍ ସେଇଠୁ କେବେହେଲେ ଯାଇ କ'ଣ ଠାକୁର ଦେଖି ଅସିବ ନାହିଁ ? ଜଗନ୍ନାଥେ ତ ଆଉ କୁଆଡ଼େ ବାହାରି ଯାଉନାହାନ୍ତି ।

ତଥାପି ଦାସଙ୍କ ମନଟା କାହିଁକି ଖରି ଉଦାସିଆ ଲାଗୁଥାଏ । ଏତିକିବେଳେ ଦେଖିଲେ ବଟ କାନ୍ଦ କାନ୍ଦ ଆସୁଛୁ । ତା' ପଛରେ ତାଙ୍କ ବଡ଼ପୁଅ ରଘୁ ରାଗରେ ତମ୍‌ତମ୍ ହୋଇ ଆସୁଛୁ ।

"କ'ଣ ହେଲା କରେ ?"

"ଯା ପାପ ଚଣ୍ଡାଳ, ଏମିତି ପାଣିରେ ବୁଡ଼ିଲେ କେବେହେଲେ ପ୍ରାଣ ବାହାରି-ଯିବ । ପ୍ୟାକୁ ଦେଖୁଛ ନା ନନା ! ତା' ହାତ ଗୋଡ଼ କେମିତି କନ୍ଦା ପଡ଼ିଯାଇଛୁ ଦେଖ । ପାଣିରେ ବୁଡ଼ ବୁଡ଼ ତା'ର ଆଉ ଗତ ନାହିଁ ।"

"ହଉ ଗୁଡ଼ିଦେ ତାକୁ । ସେଇଟା ତ ସେମିତିଆ ହେଲା; କ'ଣ କରିବା ?"

ବଟକୃଷ୍ଣ ଘରେ ପଶିଛୁ କି ନାହିଁ, ଝୁକୁମା ସେଆଡ଼ୁ ଟାଣି ଟାଣି ଆଣି ପୁଣି ଦାଣ୍ଡରେ ଠିଆ କଲେ । "ଦେଖିଲ, ଦେଖିଲ ! ଶତ୍ରୁକୁ ହେଲେ କଏ ଏମିତି ମାରିବ ? ତା ପିଠି ଆଉ ଅଛି ! ଲହୁଲୁହାଣ ହେଇଯାଇଛି ପିଲାଟା । ରୁ ବଡ଼ଭାଇ ହେଲୁ ବୋଲି ତଆର କ'ଣ କହିବୁ ନା, ଏମିତି ମଲାଗଲା କରି ମାରିବୁ ?"

ବଟିଆ ପିଠିରେ ପାଞ୍ଚଟା ଆଙ୍ଗୁଳିଚହ୍ନ । ନୋଳା ଫାଟି ରହିଥାଏ ।

ଦାସେ ଏମିତିଆ ତ ବରାବର ଦେଖୁଛନ୍ତି, ଏଣୁ କିଛି ନ କହି କେବଳ ରଘୁକୁ ଚାହିଁଲେ ।...

"ଏଇଟାକୁ ନ ଡରେଇଲେ ଛତରା ହୋଇଯିବ ନାହିଁ ?—ହଉ ଏବେ କହୁବ ଯେବେ ମୁଁ ତା ଦେହରେ ଟିପ ଦେବ ନାହିଁ । ଯାଉ, ସେ ଯାହା ହେଉଛି ହେଉ ।"

ରଘୁ କଥାରେ ଦାସେ କିଛି କହିଲେ ନାହିଁ । କିନ୍ତୁ ଝୁକୁମା ସପ୍ତମରେ ତେଜ ଉତ୍ତର ଦେଲେ—"କାହିଁକି, ସେ ଛତରା ହଉ ! ସମସ୍ତେ ଆଉ କୋଉ ପଣ୍ଡିତ ହେଇଛନ୍ତି ନା ହାକିମ ହେଇଛନ୍ତି ! ବଂଚଥିଲେ ଭିକ ମାଗି ଖାଇବ, ଏମିତି ମାରିଦେଲେ କ'ଣ ପାଇବୁ ?"

ପାଟିରୁଣ୍ଡ, କନ୍ଦାକଟା...ଅନେକ । ଯାହା ମଝିରେ ମଝିରେ ହୁଏ, ତାହା ଚାଲିଛୁ ।

ଦାସେ ଇତ୍ୟବସରେ ଗାମୁଛାଟି କାନ୍ଧରେ ପକାଇ ବାଡ଼ିଟି ଧରି ଚାଲିଗଲେ ଦାଣ୍ଡେ ଦାଣ୍ଡେ । ଲକ୍ଷ୍ୟ ନାହିଁ । ଖାଲି ଟିକିଏ ବୁଲେଇଯିବେ ।

ବୃଥା ହେଇଗଲା ସତେ ଜୀବନଟା । ଏମିତିଆ ଜଞ୍ଜାଳରେ ଘାଣ୍ଟି ହୋଇ ହୋଇ କେବେହେଲେ ମଣିଷର ପ୍ରାଣ ବାହାରିଯିବ ଜାଣିହେବ ନାହିଁ ।···ଯାଃ, ସ୍ୱାପ ଯେ ଯାହା ହୋଇଗଲେ ମୋର କ'ଣ ଯାଉଛି ? ଏ ସଂସାରରେ କିଏ କାହାର ? ଯେଝା କର୍ମଫଳ ସିଏ ଭୋଗକରି ମରିବେ ସ୍ୱାପେ ! ସେଥିରେ ମୋ ହାତରେ କ'ଣ ଅଛି, ନା ଆଉ କାହା ହାତରେ କ'ଣ ଅଛି ?···ମରିଗଲା ପାଳୁଆ ମିଶ୍ର; ଝାମ୍ପ ପାଇଗଲା । ଆଉ କେତେ ଦିନ ଘାଣ୍ଟି ହୁଅନ୍ତା ? ସଂସାର କଲା, ଭୋଗ କଲା—ମହା କାର୍ତ୍ତିକରେ ଉଠିଗଲା । ସମସ୍ତ ସେମିତି ଯିବେ । କେହି କାହା ପଛରେ ଗୋଡ଼େଇଯିବେ ନାହିଁ । ବଂଚଥିଲାତକ ମାୟା ଛାଡ଼ୁ ନାହିଁ ବୋଲି ସିନା ଏତେ କଥା !

ସ୍ୱା ଭିତରେ ଦାସେ ନିଜ ଅଜାଣତରେ ଆସି ବଥିଁଦାଣ୍ଡ ଧରିଲେଣି । ଏଇଟା ବାଉଁଶ ସାଇ ଦେଇ ଲକ୍ଷ୍ମୀନାରାୟଣଙ୍କ ମନ୍ଦିର ପଛପଟେ ବାହାରିବ ।

ହଉ ହେଲା ଏବେ, ଟିକିଏ ସହଲ ବାହାରି ଆସିଲେ କ'ଣ ହେଲା ସେଇଠୁ ! ବଥିଁଙ୍କ ମୁଖଶାଳାରେ ଘଡ଼ିଏ ଆହୁରି ଭଲ ଲାଗିବ । ପଇତାରେ କଷ୍ଟ ସବୁବେଳେ ଲାଗିଥାଏ, ହେଲେ ଟିକିଏ ଦରଶ୍ଣି ଦେଖିନେଲେ । ଗୋଟିଏ ଗୋଟିଏ ଆଗେଇଲେ ।

ବାଉଁଶ ସାଇର ନୁଆଁଣିଆ ଗଳି । ପଲ ପଲ ଧୂଷୂରି । ଟୋକେଇ ବାଉଁଶିଆ ବୁଣିବାକୁ ପ୍ରତି ଘର ଦୁଆରେ ଗଦେ ଲେଖାଁ ବାଉଁଶ ।

ଇସ୍, ବୁଢ଼ା ବାଉରି ମଧ୍ୟ ଘରେ କୋଲପ ପକେଇ ପଳେଇଛି । ଯାଉ କ'ଣ ହେଲା ସେଇଠୁ ? ବାଉରି ହେଲା ବୋଲି କ'ଣ ଯାଆନ୍ତା ନାହିଁ ? ଦାସିଆ ବାଉରି ତ ଫେରି ନାଁ ରଖିଦେଇ ଯାଇଛି ।···ସତେ କେଡ଼େ ଜମିସ୍ୱା ଲୋକଗୁଡ଼ିଏ ଏମାନେ ! ଗର୍ବ, ଅହଂକାର ବୋଲି ଟିକିଏ ନାହିଁ । ମନରେ ବିକାର ନାହିଁ । ସେବା ହେଲା ଏମାନଙ୍କର ଧର୍ମ । ଆହା, ଏଇଗୁଡ଼ିକ ହେଲେ ଭଜନବନ୍ତ । ଆମେ ସ୍ୱାପ ଟେକ ଜାତ ଟେକ ଜାତି କହି ହଜାରେ ପାପ କରୁଛୁ ।

କାଳିଆ ଧଳିଆ ବାଉରି ପିଲାଟିଏ, ତା'ରି ପରି ମୋଟା ଗୋଟା ଧୂଷୂରି ପିଲାଟି ସାଙ୍ଗେ ଏକୁଟିଆ ଖେଳୁଥାଏ । ତା ମୁଣ୍ଡରେ କୁନି କୁନି ଚାପୁଡ଼ା ମାରୁଥାଏ ଓ ସେ ସୁଁ ସୁଁ ହୋଇ ମଣିଷ ପିଲାଟାର ଗୋଡ଼ଠୁ ମୁଣ୍ଡଯାଏ ଶୁଙ୍ଘି ଯାଉଥାଏ ।

ଟିକିଏ ବୋଲି ମାୟା ନାହିଁ ସ୍ୱାର । ହେଲେ କେଡ଼େ ଅସନାରେ ତାର ସାରା ଜୀବନଟାଯାକ କଟିଯିବ ! କ'ଣ କରିବ ? କର୍ମ ତ ସବୁ । କର୍ମଫଳ ଅନୁସାରେ ଭୋଗୁଛି, ଭୋଗିବ ଆହୁରି । କିଏ ତ ସେଥିରୁ ଛାଡ଼ ଯାଇ ନାହାନ୍ତି ! ନଳ ରାଜାଙ୍କଠୁ ଆଉ ସତ୍ୟବନ୍ତ ପୁରୁଷ କିଏ ଅଛି ? ସେ ତ ପୁଣି କେତେ ଅବସ୍ଥା ହେଲେ ! ବୁଦ୍ଧ ପାହିଲେ ରାଜା ହୋଇଥାନ୍ତେ, ନୋହିଲା କେତେମନ୍ତେ । ଚୌଦବର୍ଷ ବନବାସ ଗଲେ ରାମଚନ୍ଦ୍ର । ଛାଡ଼ ଛାଡ଼, ଆଚ୍ଛା କର୍ମ ଫଳ ସ୍ୱାପ ! କଉ, କହୁଛି ପରା ନକେ "କର କରାଉଥାଏ ମୁହିଁ,

ମୋ ବନ୍ଧୁ ଆନ ଗତ ନାହିଁ"—ସେ ତ ଆମ ଭିତରେ ରହି ସବୁ କରେଇଲା, ଫେର୍ କର୍ମଟାଏ କୋଉଠୁ ଆସିଲା ଯେ ଆମେ କର୍ମଫଳ ଭୋଗିବା ! ମୂଳ ହେଲା, ସେଇ କରୁଛି, ପୁଣି ସେହି ଭୋଗୁଛି । ଆମେ ବୋଲି କ'ଣ କେହି ନାହିଁ ? ତାହେଲେ ଏତେ ନବରଙ୍ଗ କାହିଁକି ଲଗିଛି ? ପୂଜାପାଠ, ହୋମଯଜ୍ଞ, ଓଷାବ୍ରତ ଏଗୁଡ଼ା କ'ଣ ସବୁ ମିଛ ! ଜୀବାତ୍ମାଟି ବଗୁଲ ଜାଲ କାଟି ଯାଇ ପରମରେ ତ ମିଶିବ, ତାହେଲେ ତ ଫେର୍ ଆମେ ସବୁ ଆସିଗଲୁ । ଛାଡ଼, ଏଗୁଡ଼ା ସବୁ ମହାଗହନ କଥା । କିଛି କ'ଣ ଏଥିରୁ ବୁଝି ହୁଏ ! କେହି ତ ବୁଝିନାହାନ୍ତି । ଶୁକ, ସନକ ମଧ୍ୟ ହାରିଯାଇଛନ୍ତି ।

ମନ୍ଦିରର ପଛପଟଟା କେଡ଼େ ଅସନା ହୋଇଛି ମ ! ସଜନାଁକୁ କହିଲେ ହେବ । ସେ ସ୍ୱାପ ଜମି ଖାଉଛି ମନ୍ଦିର ସଫେଇ ପାଇଁ । ଦେଖିଲା ବେଳକୁ ପଇସାକର କାମ ନାହିଁ । ହଉ ହେଲା, ତାକୁ ଦେଖିଲେ କହିଦେବା ।

ଦୁଆର ଫିଟେଇ ବେଢ଼ା ଭିତରେ ପଶିଲେ ଦାସେ । ବଡ଼ ଜଗୁଟିଆ ବେଳ । ନାଟମନ୍ଦିର ପାହାଚକୁ ଅଳ୍ପ ଅଳ୍ପ ପବନ, ଟିକଏ ଟିକଏ ଖରା । ଦାସେ ପଥର ଖୁଣ୍ଟିକୁ ଆଉଜି ଉଣ୍ଟାସରେ ବସିଗଲେ । ଆଉ ବେଳ ହୋଇଥିଲେ ସାଙ୍ଗେ ସାଙ୍ଗେ ଶୋଇବା ନିଧାର୍ଯ । କିନ୍ତୁ ଆଜି ଆଉ ତାଙ୍କ ଆଖିକୁ ଯେମିତି ନିଦ ନାହିଁ । ବାରମ୍ବାର ତାଙ୍କର ମନେପଡ଼ୁଛି, 'ସମସ୍ତେ ଗଲେ ଗୋବିନ୍ଦ ଦ୍ୱାଦଶୀ ଦେଖିବାକୁ. ସେ ଯାଇପାରିଲେ ନାହିଁ ।'

ଏମିତି ଭାବୁ ଭାବୁ ଟିକଏ ଗୁଳି ନିଦ ସବୁ ମାଡ଼ିଲା । ଆଖିପତା ଘୋଡ଼େଇ ହୋଇ ଯାଉଥାଏ । କିନ୍ତୁ ଦାସଙ୍କ ମନ ବଡ଼ ସଚେତନ ଭାବରେ ସେଇ ଗୋଟିଏ କଥା କେବଳ ଚିନ୍ତା କରୁଥାଏ ।

ପଧାନଘର ସତେ ଗୋଟେ ଲୋକ । ପଧାନ ବୁଢ଼ା ଯାଉଛି ବୋଲି ଏଣେ ତକାହକା ହୋଇ ଗାଁଯାକ ଲୋକ ତା ପିଛୁ ଧରିଛନ୍ତି । ଏତେ ମଣିଷ ପେଡ଼ି ପୁଟୁଳା ଧରି ବାହାରିଲା ବେଳକୁ ଜଣା ହେଲେ ଗହଳ ହେଉଥିବ ?···ଷ୍ଟେସନରେ ସିନା ପହଞ୍ଚି ଯାଇଛ, ରେଳୁଆ କ'ଣ ଏତେ ଲୋକ ନେବ ? ହଅ, ପଧାନ ପୁଅ, ଟିକଟ ସାଇବକୁ ଦି ପଇସା ନ ଦେଲେ କି ଆଉ ହୁଏ ! ପଶିଯାଅ···ପଶିଯାଅ !! ଆହେ, ସେଇଟା ନୁହେଁ । ସେଇଟା ବେଶି ପଇସା । ଓଃ, କି ପେଲାପେଲିହୋ ! ହେ ରଘୁଆ···ବିପ୍ରଚରଣ ! ସେ ପିଲାଟାକୁ ଆଗ ଜାଲାକବାଟି ବାଟେ ଗଳେଇଦିଅ । ତୋ ପେଟେରା ମୁଣ୍ଡେଇ ପଶିଆ କାହିଁ ! ରେଳ ଛାଡ଼ିଦେବ । ହେ ବୃନ୍ଦା ! ଏଠି କ'ଣ ଛାଡ଼ ଛାଡ଼ ହେଉଛୁ ବା ? ସମସ୍ତେ ତ ରେଳଚୁଆଁ । ଏଠି ଆଉ ଭେଦ କ'ଣ ?···ଗୁଡ଼ିଲା···ଗାଡ଼ି ଗୁଡ଼ିଦେଲା । ସବୁ ଚଢ଼ିଲେ ନା ନାହିଁ ? ହେ, ବରଜୁ ଉଠିଲା ନା ନାହିଁ ?···ହଉ ହଉ, ପେଡ଼ିଟାକୁ ସମ୍ଭାଳି ରଖିଥା ।

ପାଟିରୁଣ୍ଡ···ଘୁ ଘା ରେଳ ଇଞ୍ଜିନର ଡାକ । ଶେଷକୁ ସବୁ ଯାଇ ରେଳ ଇଞ୍ଜିନର ଡାକ ରହିଲା । ବୃନ୍ଦା ନାହାକ ପାଟି ଶୁଭୁଛି—କେମିତିଆ ସେ ଖାଲି ଶୋଇ ଶୋଇ ଥରେ ରେଳରେ ଯାଇଥିଲା । ରହିଲା, ରହିଲା ଗାଡ଼ି । ଜଗି ଦିଅ । ଆଉ କାହାକୁ ଉଠିବାକୁ

ଦଅ ନାହିଁ, ରୁନ୍ଧ ହୋଇ ସବୁ ମରଯିବା । ହେ···ହେ, ବୁଢ଼ୀଟାଏ । ତାକୁ ଟେକ ଆଣ । ନ ହେଲେ ସେଇଟା ଖସିପଡ଼ି ମରଯିବ ।

ପଧାନ ବୁଢ଼ାଟା କେମିତ ଘୂମେଇଲଣି ଦେଖ । ଇଏ ପୁଣି ସମସ୍ତଙ୍କୁ ସମ୍ଭାଳ ନେଇଥାନ୍ତା ! କେତେ ଲୋକ କେତେ ଆଡ଼ୁ ଆସି ବସିଛନ୍ତି ଏ ଡବାଟାରେ ହୋ ! କାହାକୁ ତ ଚହ୍ନି ହେଉ ନାହିଁ । ଜଣାନାହିଁ, ଜଣାନାହିଁ ସିନା ଏଇଠି ଘଷାଘଷି ହୋଇ କେମିତ ଠିଆରହିଛୁ ! ଟିକଏ ହେଲେ ବାସନ୍ଦ ନାହିଁ । ସବୁ ପରା ଏକମୁହାଁ ପୁଣ୍ୟଯାତ୍ରୀ । ଗୋଟିଏ ପାଟଡୋର ସମସ୍ତଙ୍କୁ ସେଣ ଟାଣି ନେଉଛି । ଏଠି ଆଉ ନିଜ ପର କ'ଣ ଅଛି ? ଜୟ ଜଗନ୍ନାଥ ! ଡାକ ଗୁମୁରି ଉଠୁଛି, ରୁମ ଟାଙ୍କୁରି ଉଠୁଛି । କି ଉଦ୍‌ବେଗ ସମସ୍ତଙ୍କର ! ଟିକଏ ନଇଁ ରେଲ ଭିତରୁ ନୀଳଚକ୍ରକୁ ଥରେ ଚାହିଁଦେବେ ! ହରି··· ପତିତପାବନ ! ଏ ବାନା ଦେଖେଇଲ ହେ ପ୍ରଭୁ ! କୋଟିଏ ଜନ୍ମର ପାପ କ୍ଷୟ ଗଲା । ସମସ୍ତେ ଭକ୍ତିଗଦ୍‌ଗଦ । ଆଖିରୁ ଲୁହ ପୋଛି ପକାଉଛନ୍ତି । ଆତ୍ମା ଧୋଇ ହୋଇଯାଉଛି । 'ଜୟ ଜଗନ୍ନାଥ !' ଏକାଥରକେ ସାରା ରେଲଟାର ଲୋକ ଡାକ ଲଗିଛନ୍ତି । ଆକାଶ ଫାଟି ପଡ଼ୁଛି ଡାକରେ ।

ହଉ, ଚାଲ ପଣ୍ଡାପୁଅ ! ଆଉ ବିଳମ୍ବ ସହୁ ନାହିଁ । କେମିତ ହେଲେ ନେଇ ଗରୁଡ଼ ପଛପଟେ ଠିଆ କରେଇଦଅ ବେଗି । ······ସମୁଦ୍ର ସ୍ନାନ ହେବ ? ହଉ ଚାଲ । ଚାଲ ପଧାନେ !···ଓଃ କେମିତ ଘୁ ଘୁ ଘୁ ଗର୍ଜୁଛି ଏ ଅକଳନ୍ତ ସାଗର ! କି ଲହଡ଼ି, କି ଫେଣ ! ସବୁ ତୀର୍ଥଜଳ ପରା ଏଥିରେ ମିଶିଛି ! ତୀର୍ଥରାଜ ଇଏ । ମହୋଦଧିରେ ମୁଣ୍ଡ ବୁଡ଼େଇଦଅ । ଶରୀର ପବିତ୍ର ହୋଇଯାଉ । ହଉ ହେଲା, ଚାଲ ଏଥର । ଆଉ ଏଇଠି ନୁହେଁ । ଏ ଲହଡ଼ିରେ ମାଡଗଲେ ମାଡିଯିବ । ଫିଟି ଆସ, ଆଉ ବିଳମ୍ବ କର ନାହିଁ ।

ନିଅ, ଏ ବଡ଼ଦାଣ୍ଡ ଧୂଳି ମୁଣ୍ଡରେ ଲଗାଅ । ଏସବୁ କୋଟି କୋଟି ମହାପୁରୁଷଙ୍କ ପାଦଧୂଳି । ଏହାରି ଉପରେ ନନ୍ଦିଘୋଷ ରଥ ଚକ ଚାଲେ । ଗଡ଼ିଯାଅ ସବୁ ଏ ଧୂଳି ଉପରେ । ଏ ଧୂଳି ନୁହେଁ, ଆକାଶରୁ ଦେବତା ଆସି ଏଇ ବାଟେ ପାଦଗାମୀ ହୋଇ-ଯାଆନ୍ତି । ଏ ଧୂଳି ନୁହେଁ । ବୋଲ ହୋଇପଡ଼ ସବୁ ଦେହଯାକ । ଗଙ୍ଗା ସ୍ନାନଠୁ ବଳି ଫଳ ପାଇଯିବ ।

ଉଃ, କି ଜନସମୁଦ୍ର ! ଚାରିଆଡ଼େ ଖାଲି ମୁଣ୍ଡମାଳ । ହେ କାହ୍ନୁ ! ଫେରିଆ କହୁଛି ସେ ପସରା ପାଖରୁ । ଏଠି ମଣିଷ ଗୋଟିକେ ପସରା ଗୋଟିଏ । ସେଠି ଲଖିଗଲେ ବାହାର ପାଇରୁ ନାହିଁ ଦେଖ କହୁଛି । ରୁହଁ ନାହିଁ ସେ ପସରା ଆଡ଼େ କେହି । କଣ୍ଟା ଲଗିଯିବ, ମୋହ ଲଗିଯିବ । ପାଟଡୋର ହୁଗୁଳି ଯିବଟି । ଉପରକୁ ଆଖି ଟେକ—ପତିତପାବନ ବାନା କେମିତ ଫର୍ ଫର୍ ହୋଇ ଉଡ଼ୁଛି ଦେଖ । ଆଗେଇ ଚାଲ, ଆଗେଇ ଚାଲ । ଜୟ ଜଗନ୍ନାଥ । ଜୟ ଜଗନ୍ନାଥ । ମେଘନାଦ ପାଚେରି ଆଉରି କେତେ ଦୂରରେ ହେଇ ଦିଶୁଛି । ଉଃ, ଏ ପଥର ବାଡ଼ କ'ଣ ଘଞ୍ଚି ଅସିପାରନ୍ତା ନାହିଁ । ଚୌଦବ୍ରହ୍ମାଣ୍ଡ ଯାର ଖେଳଘର, ତାକୁ ଏ କେତେ ମାନ । ଘୁଞ୍ଚାଇ ଦଅ ପ୍ରଭୁ । ଏ ମେଘନାଦ ପାଚେରି ମେଘ ପର୍ଯ୍ୟନ୍ତ

ଘୁଞ୍ଚଯାଉ, ସବୁ ଦୂରଦୂରାନ୍ତରୁ ଦୁଃଖୀ ରଂକ ଗୁଲଆସନ୍ତୁ ବେଢ଼ା ଭିତରକୁ । ସବୁ ପାଖେଇ ଯାଆନ୍ତୁ ସେ ଭିତରେ ।

ଅଃ, ଆସିଗଲ ! ଦୂରୁ ଦେଖିଲ ବଗ୍ଗୁଅଛୁ ଚ଼ଳ, ଜଗମୋହନେ ବଳେ ଆହମୂଳ । ନା ଆଉ ନୁହେଁ, ଏଇ ଆସିଗଲା ଅରୁଣସ୍ତମ୍ଭ । ହେଇ ସିଂହଦ୍ୱାର, ବାଇଶି ପାହାଚ, ନାଟ-ମନ୍ଦିର, ଗରୁଡ଼ସ୍ତମ୍ଭ । ଓହୋ ! ଓହୋ ! ଜଗନ୍ନାଥ ! ଜୟତଳି ପ୍ରଭୁ ! ହେ ବଳଆର ଭୁଜ ! ହେ ଚକାନୟନ !! ହେ ପତିତପାବନ ହରି !! ଏ ରୂପ ଦେଖି ଜୀବ ଯାଉ ହେ ପ୍ରଭୁ ! ନାଚ ସମସ୍ତେ, ନାଚ ନାଚ ତରଳିଯାଅ, ବୋହିଯାଅ । ହରି ଜଗନ୍ନାଥ ! ଜୟ ଜଗନ୍ନାଥ ! ଜଗନ୍ନାଥ !”

× × × ×

ବେଳ ଆସି ରାତରାତ ହେଲାଣି ।

ଯନଆ ବେଢ଼ା ପହଁଳବାକୁ ଆସି ଦାସଙ୍କୁ ଦେଖି ଠିଆ ହୋଇଗଲା । ଆଣୁ ମୁଣ୍ଡ ଯୋଡ଼ ଦାସେ ମେଞ୍ଚାଟିଏ ହୋଇ ତଳେ ଶୋଇଛନ୍ତି । ମୁଣ୍ଡତଳେ ଗାମୁଛା, ଆଖିକଣରେ କଣେ ଲୁହ । ଦେହଟା ତାଙ୍କର ରହି ରହି ଠକଠକ ହୋଇ ଥରଯାଉଛି । କ'ଣ ଅସୁସ୍ଥ ହେଲେ କି ?

“ଆଜ୍ଞା, ଏ ଅବେଳଟାରେ କ'ଣ ଶୋଇଚଁନ୍ତି ? ହଇ ହେଉକା ଅସୁଖ ହେଲା କି ?”

ଆଖି ଫିଟାଇଦେଲାରୁ ଗଚ୍ଛିତ ଲୁହଯାକ ବୋହିଗଲା । ସେ ଗୁଣ୍ଡଆଡ଼କୁ ବଲବଲ କରି ଯଡ଼ିଏ ଗୁହିଁଲେ । ପୁଣି ଆଖି ବୁଜ ପଥରଖଣ୍ଡି ଉପରକୁ ଗାଳେଇପଡ଼ିଲେ ।

“ଯନଆ କରେ ? ବେଢାଟା ଓଲେଇଦବୁଟି ବାପା ମୋର । ଉହୁ ହୁହୁ । ଲକ୍ଷ୍ମୀ ବେଳଟାରେ ଜର ହେଲା ସ୍ୱାପ ! ଓହୋ ହୋ ! କି ଶୀତ ! ଦବୁଟି ଓଳେଇ ଆଗ । ଅହହ ! ମୁଁ ଉଠୁଛି । ହରି ଜଗନ୍ନାଥ, ତୁମରି ଇଚ୍ଛା ପ୍ରଭୁ ! ଉହୁଁ ହୁହୁଁ !!

# ଧନାଗମ

"କ'ଣ ଏତେସବୁ କଣିପକଉଚ ଏ ଦାସେ ?"

"କରେ ବାପା—ବୃନ୍ଦା ନାହାକ କୁଆଡ଼େ ?" ଦାସେ ପଣ୍ଡରଦନ ଘରଟିକସ ଦେଉପକେଇଛନ୍ତ । ଆଉଣ କ'ଣ ବାକଆ ରହିଗଲ୍ କ ?

ପାଟବୁଢ଼ା କର ପୁ ଡ଼ଆରେ ସୂତା ବାନ୍ଧ୍ ବାନ୍ଧ୍ କହିଲ୍, "ଦାସେ ପଗ୍ର ପ୍ରବାସ ଯିବେ । ଘରର ମାସକସାକର ଖଞ୍ଜାସବୁ ଦେଇ ନ ଗଲେ କେମିତ ହେବ ?"

ପାଟବୁଢ଼ାର କଳା ମଟମଚ ମୁହଁ । ଝୁମା ଝୁମା ଗାଲ ହସରେ ଓସାର ହୋଇଯାଏ । ବାଘୁଆ ଦାଣ ତଳେ ପାନବୋଳରେ ଦାନ୍ତଗୁଡ଼ାକ କଳା; ତା ମଝିରେ ଗୋଟିଏ ସୁନାଦାନ୍ତ ଚକଚକ କରୁଥାଏ ।

"କ'ଣ ସ୍ୟେ କଥା ?—କ'ଣ ଦାସେ, ସତ ?"

"ହଁ, ସେ ମଦନପୁରଆ ମହାଜନ ଧବଳେଶ୍ୱରଙ୍କଠି ରୁଦ୍ରାଭିଷେକ କରେଇବ । ଘବୁଚ ଯିବ ବୋଲ୍ ।"

"ହଁ, କାହିଁକ ନ ଯିବ ? ଦ' ପଇସା ରୋଜଗାର କଲେ ତ ଫେର୍ ଚଳିବ । ଉଧାରରେ ଏତକ ଜନଷ ତ ଫେର୍ ନଉଥିବ । ଟଙ୍କା ପନ୍ଦର କୋଡ଼ିଏ ସଣକ ବାକବ ନାହିଁ କ ? ସ୍ୱାକୁ ଫେର୍ ତ ଶୁଝିବ ।"

"ଆଉ କ'ଣ ତାଙ୍କୁ ସେ କାଳ ଦାସେ କଣ ପାଇଲ୍ କ ନାହାକେ ? ଏବେ ପଗ୍ର ସବୁ ନଗଦ । ପୁଅ ପଗ୍ର ମାସକୁ ମାସ ପଇସା ପଠଉଚ ।"

"ଆରେ ସତେ ତ ! ମୁଁ କ'ଣ କହୁଥିଲ୍ କ ··ବଇଲେ···ଦାସେ ତ ଆଉ ଉଧାରବାଢ଼ି କର ଚଳିବା କଥା ନୁହଁ···ବଇଲେ କାଲେ ନଉଥିବେ । ତାଙ୍କୁ ଏବେ ଶୁଝିଦେବାକୁ କେତେ ମାବ ! ରଘୁନାଥ ତ ସାଇବ ପାଖରେ ଅର୍ଦ୍ଦଲି କାମ କଲ୍ । ସେ ସାଇବଠୁ ବଡ଼ ବୋଲ୍ ଜାଣ । ସେ ପଗ୍ର ଆଗ ସମସ୍ତିଙ୍କ ଅଳ-ଅର୍ଦ୍ଦଲି ଶୁଣନ୍ତ ବୋଲ୍ ତାଙ୍କୁ ଅର୍ଦ୍ଦଲି କହ । କହୋ ! ବୃନ୍ଦା ନାହାକକୁ ଏ କଥା ଜଣାନାହିଁ ? ହେଲ୍ ଦାସେ, ଆମ ଉପରକୁ ଦୟା ରଖିଥିବଟି ! ପୁଅ ହାକମଙ୍କ ପାଖେ ରହିବ । କେତେବେଳେ ଏମିତ ପଦଟେ କହିଦେଲେ ଆମ କପାଳ ଫିଟିଯାଆନ୍ତା ।"

"ହଉ, ସବୁ ସେ ପ୍ରଭୁଙ୍କ ଇଚ୍ଛା । ତମର ସବୁ ଆଶୀର୍ବାଦ ସେ ଟୋକାଟା ଉପରେ ଥାଉ ତ !"

ଦାସେ ସବୁ ଜିନିଷ ହିସାବ କରି ପଇସା ଗଣିଦେଇ ଉଠିଲେ । ବୁଢ଼ା ନାହାକ ବାଟ କାଟି ଆଡ଼େଇ ହୋଇଯିବାର ମଧ୍ୟ ଲକ୍ଷ୍ୟ କଲେ । ମୋଡ଼ ପାଖରୁ ବୁଲ୍‌ପଡ଼ି ଯାହା ସବୁ ଥିଲେ ତାହା ଦେଖିଲେ । ପାଚବୁଢ଼ା ଓ ବୁଢ଼ା ନାହାକ ମୁହଁକୁ ମୁହଁ ଯୋଡ଼ି କ'ଣ ଠାଠଣ ହୋଇ କଥାହେଉଛନ୍ତି । ଟିକିଏ ଆମୋଦ ଲଗିଲା ଦାସଙ୍କୁ । ଟିକିଏ କାହିଁକି କେଜାଣି ଭୟ ମଧ୍ୟ ହେଲା । ଯେମିତିଆ ଦାସଙ୍କର ସେମାନଙ୍କ ପାଖରେ ସବୁଦିନିଆ ସମ୍ପର୍କ ତୁଟିଯାଇଛି । ପୋଷା ବାଛୁରୀଟା ଟାଣେଇଗଲେ, ତା ଶିଙ୍ଗ ଗଜେଇଗଲେ ତା ପାଖକୁ ଯେମିତି ମାଲିକ ବି ଯିବାକୁ ଡରିବ, ତାକୁ ଦୂରରୁ 'ଚୁ' 'ଚୁ' କରି ଅଳ୍ପ କରି ଆପୁଡ଼େଇବ, ସେଇ ଅବସ୍ଥା ନୁହେଁ କି ? ତାଙ୍କ ଦୟା, ଅନୁଗ୍ରହ, ସହାନୁଭୂତି ଉପରେ ଯେଉଁ ଦାସେ ବଞ୍ଚି ଥିଲେ, ସେ ନିଜ ଗୋଡ଼ରେ ଠିଆହୋଇଯିବାଟା ତାଙ୍କ ପାଇଁ କ'ଣ କମ୍ ବିସ୍ମୟର ବିଷୟ ! ଟିକିଏ ଯେତେହେଲେ ଈର୍ଷା ହେଉ ନ ଥିବ କି ?

ଆରେ, ନାଇଁ ମ ! ଏଇ ପିଲା ବକଟେ ସ୍ୱାପ କ'ଣ ଏମିତି ଗୁଡ଼େ ହାକିମ ହୋଇଗଲା କି ? ପେଟ ଚଳେଇବାକୁ କ'ଣ ଦ'ଟା ପଇସା ପଠାଉଚି ତ ! ଆମେ କ'ଣ ଆଉ ଯୋଡ଼ ପିନ୍ଧପକେଇଲୁ ନା ପଥର ଘର ତୋଳେଇ ପକେଇଲୁ ? ହେଇ ହେଉ କ'ଣ ନା, ଅଧେ ଦିନ ଯାହା ଗୋଟିଏ ବକତ ମିଳୁଥିଲା ଏବେ ଦୁଇଓଳି ଗଣ୍ଡେଲେଖା ମିଳିଲା । ଏଇ ତ—ଆଉ କ'ଣ ? ତୁମେ ସବୁ ତୁଚ୍ଛାରେ ଏତେ ଘବ୍ରୁଛ ନା !···କଥାଟା ସେଠି ନୁହେଁ ସେ— ଅସଲ ହେଲା—ସନାତନ ଦାସ ଭଳି ଲୋକ । ଅଧେଦିନ ଉପାସ ରହିବା କଥା—ସେ ଯଦି ଦ'ଓଳି ଖାଇପକେଇଲା, ତାକୁ ବଳି ଅନ୍ୟାୟ ଆଉ କ'ଣ ଅଛି !···ସ୍ୱାପ ! ପରଶ୍ରୀକାତର, ଟିକିଏ କା'ର ଶ୍ରୀ ଦେଖିଲେ ଗ୍ରୁନିଆ ଧରିଯିବ ସ୍ୱାଙ୍କୁ ।

ବୁଝୁଛି, ଟଙ୍କା ହେଲା ସବୁ କଥାର ମୂଳ । ତା'ର ଉପରେ ମାନସମ୍ମାନ, ତାର ଉପରେ ଲୋକ ସାନ ବଡ଼ ହୋଇଯାଉଛି । ସ୍ୱାଙ୍କ କଥା କ'ଣ କହିବା ? ରଘୁନାଥ ଟଙ୍କା ପଠେଇଲା ବୋଲି ଟ୍ରୁମା' ତ ସେ ବୋହୂଟାକୁ କୁଟା ଖଣ୍ଡେ ଦ'ଖଣ୍ଡ କରେଇ ଦଉ ନାହିଁ । ସେଇ ପୁଅ—ଯାହା ଉପରେ ଏତେ ବିରକ୍ତ ହେଉଥିଲା 'ଅକର୍ମା' ହୋଇଗଲା ବୋଲି, ତା ପ୍ରଶଂସାରେ ଏବେ ଆଉ ଗାଆଣି ଗାଇଲେ ସରୁନାହିଁ । ଯେ ପଇସା କମେଇଲା, ସେ ହେଲା ଅନ୍ନଦାତା । ତାକୁ ମୁଁ ଏବେ କ'ଣ ଆଗପରି ଦ'ପଦ କହିପାରିବ ? ···କିଓ ! କାହିଁକି କହିବ ? ସେ ପରା ହେଲା କୁଳର ଭଗୀରଥ । ପିଣ୍ଡକର୍ତ୍ତା !!

ଘରେ ପହଞ୍ଚି ଦାସେ ସବୁ ଜିନିଷ, ଗ୍ଲେଟ ପୁଡ଼ିଆ, କାଗଜ ଠଙ୍ଗା ଗୋଟି ଗୋଟି କରି ମଦେଇ ଥୋଇଦେଲେ । ବଟ, ଜମ୍ବୀ, ଟୁକୁଆ ସବୁ ଘେରି ବସିଗଲେ । କ'ଣ ସବୁ ଏତେ ଜିନିଷ ଘରକୁ ଆସିଗଲା ?

“ଆରେ ରହ—ସେସବୁ ଫିଟାନା, ମିଶିଯିବ । ହଇହୋ, ସେଆଡ଼ୁ ଜାଗା ନେଇଆସ । ଏଇଠି ଭର୍ତ୍ତିକରି ରଖିଦେବା ।”

ବୋତଲ, ଟିଣଡ଼ବା, ସରା, ହାଣ୍ଡି, ତାଟ ଆସିଗଲା ।

“ସେଇ ପାଚ ବୁଢ଼ାଟାଠି ତୁମର କ'ଣ ଏମିତି ରସ ଲାଗିଛି ? କାଇଁ, କ'ଣ

ଉଧାର ଆଣୁଛ କ, ଯାହା ସେ ଦେଇଦେବ ନେଇଆସିବ ?···ଦେଖିଲ ! ଏ ମଣଚଯାକ କେମିତି ସେ ଦେଇଛୁ ! କଳା ଖଡଗ୍ର, ଖାଲି ମୁଣ୍ଡି ଭରଣ, ବୋଟେ ହବ ମଞ୍ଜି । କାହିଁ ଗଣେଶା ଦୋକାନରୁ ଆଣିଲ ନାହିଁ ? କାଲି ବଟ ହାତରେ ଜଗ ମଗେଇଥିଲି ଯେ ଗୋଟେହେଲେ ତା ଦେହରେ ଗୋଡ଼ ଥାନ୍ତା ! ବସ୍ତୁବଛ ହେଇ କ ସୁନ୍ଦର ଜଗଗଣ୍ଡେ ! ···ଅରେ ଥାଉ । ଗଲ ସେ ସୋଗଷଯାକ । ମୁଁ ଆଉ ପାରେ ନାହିଁ । ଆରେ ବଟ, ନବୃତି ବାପା, ଏଗୁଡ଼ାକୁ ଦାଣ୍ଡଆଡ଼େ ଟିକଏ ନେଇଯା ।"

ସ୍ତ୍ରୀଙ୍କ ପ୍ରତର୍କ ସ୍ୱରେ ଦାସେ ଟିକଏ ଖବଲେ—ଉଧାରବାଡ଼ି କୋଉ କାଳୁ ପାଇ ବୃଡ଼ାଠୁ ମୁଁ ଆଣୁଛୁ । ଏବେ ପଇସା ଦେଇ ଆଣିବା ବୋଲି ଆଉ ଗୋଟେ ଦୋକାନରୁ ଆଣିବ ? ସେ କ'ଣ ଭାବବ କହଲ ? ଏଗୁଡ଼ା କଥା ?···କନ୍ତୁ ସ୍ତ୍ରୀଙ୍କୁ ସେ ବିଷୟରେ କଛ କହିଲେ ନାହିଁ ଦାସେ ।

"ଦେଖି ଶୁଣି ଚଳବ । ହେଇ, କାଲି ହେଲ ସୋମବାର । ମଝିରେ ଆଉ ଗୋଟା ସୋମବାର ଗଲେ ତା'ଆର ସପ୍ତା ଫେରଆସିବ । ଘରେ ତ ପୁଦେଇ ରହିବ । ମାମୁ ଯେ, ବାପ ସିଏ । ଅସୁବିଧା ଆଉ କଛ ହେବ ନାହିଁ । ଆଚ୍ଛା, ତମ ଭାଇ ଗଲେ କୁଆଡ଼େ ? ଆସି ସଞ୍ଜ ହେବ ।"

ଟୁକୁମା' କୁଲରେ ପକେଇ ସାନ ପିଆଜରୁ ଗ୍ରେପାଯାକ ପାକୁଡ଼ୁଥାନ୍ତି ।

"ତମେ ଆଗ ବହପା'କୁ ଜଗି ସେଇଠି ଚଳବଟି ? ଖାଇବାରେ କେବେ ଉବେଲ କରବ ନାହିଁ ଦେଖ । ତୁମ ଦହ ଦହ ପର ନୁହଁ । ହାତରେ ଗ୍ଲାସ କ'ଣ ଉଆଗଣ୍ଡେ ବକଢେ ଖାଇବା··ଯେ ସେଇ କଥା ଏକା ମୋତେ ହେଇଛୁ ଚନ୍ତା । କେମିତି ମା' ମଙ୍ଗଳା ମାସେ କଟେଇ ସବଶୁଭରେ ଫେରେଇଆଣିବେ । ବୋହୂର ଏଣେ ଏ ଅବସ୍ଥା । ମାସ ଦବସ ହେଇଗଲା । ତୁମେ ଘରେ ନ ଥିବ । ପୁଅ ତ ରହିଲା ପ୍ରବାସରେ । ଏ ଭିତରେ ତା'ର କ'ଣ ହବ ବଇଲେ କଏ ସବୁ କରବ ? ସେଆଡ଼େ ଅନ୍ନଡ଼ଶାଳରେ ମୋ ପିଲା କଥା ବୁଝିବ ନା ସ୍ତ୍ରୀଙ୍କ ଜଞ୍ଜାଳ କରବ ?"

"ସେଥିପାଇଁ ତ ମୋର ଅଧେ ମନ ନାହିଁ ଯିବାକୁ । ସେ ପିଲାଟା ପ୍ରବାସରେ ରହିଲା ଆମ ଉପରେ ଭରସା ରଖି । ଆସିଲେ କ'ଣ କହିବ ? ବୋଲିବ, ଏମିତି ସମୟକୁ ସ୍ତ୍ରୀଙ୍କୁ ଯିବାକୁ ଥିଲ ? ଟିକଏ ସତାର କରଥିଲେ ହେଇନଥାନ୍ତା !"

"ହଅ ! ଭଗବାନ ଅଛନ୍ତି ସବୁ କଥାକୁ । ତମେ ଥିଲେ ଏବେ କ'ଣ କରଥାନ୍ତ କ ? ହଁ, ଖାଲି ମୁଣ୍ଡଧରଡା ଟୁହେଇ ଘରେ ଜଣେ ମରଦ ନ ଥିଲେ କଥାଟା ଅସୁନ୍ଦର । ପୁଦେଇ ତ ଅଛି । ଘରକଥା କ'ଣ ତାକୁ ନୂଆ ହେଇଚ କ ? ଗଲେ ଏବେ ଟଙ୍କା ଦେଢ଼ଶ' ମିଳବ । ଏବକାଳେ ଏତକ ଟଙ୍କା ଛାଡ଼ି ଘରେ ବସିଲେ କ'ଣ କରନ୍ତ ?"

"ଏ ଟୋକାଟାକୁ ଦାଣ୍ଡରେ ଛାଡ଼ିଦେଇଛ । ଗାଈଗୋରୁ ଆସିବା ବେଳ, ଭୁଷିଦେଲେ କମିତି ହେବ ?"···ସୁଦର୍ଶନ ନନ୍ଦେ ସାନଭଣଜାକୁ କାଖ କରି ଘରକୁ ପଶିଆସିଲେ ।

"ମୁଁ ଜାଣେ—ସେ ବଟ ଟୋକା କ'ଣ ଗୁଣରେ ହେଲା କି ? ସ୍କୁଲକୁ ଗୁଡ଼ାଦେଇ କୁଆଡ଼େ ଡିଆଁ ମାରୁଥିବ । ତୁ କୁଆଡ଼େ ଯାଇଥିଲୁ କି ? ତତେ କ୍ୱାଁ ଖୋଜୁଥିଲେ ।"

ଦାସେ ତଳ ପିଣ୍ଡାରେ ଗୋଡ଼ ଧୋଇସାରି ଗାମୁଛାରେ ପୋଛୁଥାନ୍ତି ।

"ଏଇଠି ବୋଉ ପାଖେ ଠିଆହବୁଟି ବାପା, ମୁଁ ଆସେ ।" କହି ନନ୍ଦେ ଦାସଙ୍କ ପାଖକୁ ଓହ୍ଲେଇଗଲେ ।

"ନାଇଁ ହୋ, ମୁଁ ଖାଲି ଏମିତି ପଗ୍ଭରୁଥିଲି ନା, ଏତେବେଳ ହେଲା କୁଆଡ଼େ ଗଲି ବୋଲି ! ତମେ କଥା ମାନ ରଖିଲ ବୋଲି ସିନା ମୁଁ ଦମ୍ଭରେ ବାହାରୁଛି, ନହେଲେ କ'ଣ ଯାଇଥାନ୍ତି କି ? ଦେଖ, ଦଶଁଙ୍କ କଥା ତୁମକୁ ଲଗିଲା । କୋଲପ ଭଲ କରି ପକେଇ ଆସୁଥିବ । ଅଳଙ୍କାରପତ୍ର କେତେ ସବୁ ଅଛି । ମଣିଷଙ୍କ ଲୋଭର ତ ସୀମା ନାହିଁ—କିଏ ସ୍ୱାପ କେତେବେଳେ ଠଉରେଇଥିବ ଯଦି ପଶି ନେଇଗଲେ ସବୁ ବନ୍ଧା-ଆଗୁଳା ହବା ।···ସ୍କୁଲଡ଼େ ପିଲଙ୍କ କଥା ମଧ ଲଗିଲା । ଏ ଟୁକୁଆଟା ବଡ଼ ଅଟ୍ଟ ହେଇଛ, ତାକୁ ଟିକିଏ ସମ୍ଭାଳିନେବ ।"

"ହଉ, ତମେ ସେସବୁ ବିଷୟରେ ନିଶ୍ଚିନ୍ତ ହୋଇ ଯାଅ । ମୁ ସବୁ ଚଳେଇନେବି । ଚଉଦ'ଶୀକି ଚଉଦ'ଶୀ ମାସେ ରହି ଆସିବ ତ ? ଦେଖ, ତମେ ଆସିଲେ ଫେର୍ ମୁଁ ଯିବି । ମୋର ଗାଁରେ ସେଆଡ଼େ କେତେ କାମ ତୁମକୁ ଜଣା । ଘରେ ଖାଇବାଯାକ ଅଛନ୍ତି ଯେ, ହେଲେ······।"

"ହଉ, ତମେ ଟିକିଏ ଧୂଆଧୋଇ ହୋଇପଡ଼ିବଟି ! ମନ୍ଦିରକୁ ଯାଇ ସବୁ ଦେଖିଦେଇ ଆସିବା ।"

× × ※ ×

"ତମକୁ କ'ଣ ରାତିଯାକ ନିଦ ନାହିଁ କି ଦାସେ ! ଖାଲି ଖୁଞ୍ଚୁରୁ ମୁଞ୍ଚୁରୁ ହଉଛ । କେତେ ରାତି ଅଛି ହେ, ଆଉ ଟିକିଏ ଶୋଇପଡ଼ ।"

"ନାଇଁ ହେ, ପହିଲି କୁକୁଡ଼ା ପରା ଡାକଦେଲାଣି । ସହଳ ବାହାରଗଲେ ହବ ନା ! ଛ' କୋଶ ରାସ୍ତା, ବେଗି ଯାଇ ନ ପହଞ୍ଚିଲେ ମାଡ଼ୁଆଳି ସ୍ୱାପ ଗାଧୋଇ ପାଧୋଇ ସକାଳୁ ବସିଥିବ ସଂକଳ୍ପ କରିବ ବୋଲି ।···ହାଁ, ହାଁ, ତମେ କାହିଁକି ଫେର୍ ଉଠିଲ ଶୀତରେ ?"

"ନାଇଁ, ଘୁଲି ଟିକିଏ ବଳେଇ ଦେଇ ଆସିବ ।"

ପାଣି ଲୋଟେ ଆଣି ମୁହଁ ଧୋଉଛନ୍ତି ନନ୍ଦେ !

"ଓହୋ !···ଇମିତି ଗୁଡ଼େ କାହିଁକି ଗଜ୍ଜୁଛ ହେ ନନ୍ଦେ ! ଉଶ୍ୱାସରେ ମୁହଁ ଧୋଇଲେ ହବ ନାହିଁ ? ସେଆଡ଼େ ତମ ରଡ଼ିରେ ପିଲାଗୁଡ଼ାକ ସବୁ କାଆଁନିଦରେ ଉଠି-ପଡ଼ିବେ । ଗୁଡ଼େ ଏମିତି ଟାଣି ଖଙ୍କାରିଲେ ଘଣ୍ଟିକା ଛୁଡ଼ିଯିବ ନାହିଁ ?"

"କ'ଣ ବେଳ ହେଇଗଲାଣି କି ?" କହି ଟୁକୁମା' ଆରଘରୁ କବାଟ ଫିଟାଇ ବାହାରିଲେ । ତରତର ହୋଇ ମୁହଁଟା ଧୋଇପକେଇଲେ ।···ତଳଘରେ ଦାସେ ନବାକୁ

ଗଣ୍ଡେ ଚୂଡ଼ା, ପୁଡ଼ିଆରେ ମେଞ୍ଚାଏ ଗୁଡ଼, ଗୋଟିଏ ଡାଲ, ଦାନ୍ତକାଠି ଗୋଚ୍ଛାଟିଏ, କୁଞ୍ଚାହୋଇ ରଙ୍ଗମରା ପିନ୍ଧା ଓ ଗାମୁଛା, ପାନି, ଶୁଖୁଆ, ଶୁଖୁଆ, କୁଶ କେରାଏ, ପାନ ବଟୁଆ, ନାସଦାନ, ନଡ଼ିଆତେଲ ଶିଶିଟାରେ ଟିକଏ ସଜାଡ଼ିଦେଲେ ।

"ତୋ ମୁଣାରେ କାହିଁ ଯାହା ଯାହା ନେବେ ସବୁ ପୁରେଇ ଦେଇଛୁ । ବୁଝିଲୁ ସୁଦେଇ ! ତୁ ତ ଭଲରେ ଆଜ୍ଞ ଯାଉନୁ । କ୍ୱାଁହି ସେଆଡ଼ୁ ଫେରଲେ ତୋ ମୁଣା ନେଇଆସିବେ ।"

ଦାସେ ଶୋଇବା ଘର ପିଣ୍ଡାରେ ଏପାଖ ସେପାଖ ବୁଲୁଥାନ୍ତି—ଟିକଏ ପିଲାଙ୍କୁ ଦେଖିବଅନ୍ତେ । ଘର ଭିତରକୁ କେମିତି ଯିବେ, ବୋହୂଟା ଶୋଇଥିବ । କବାଟ ଫାଙ୍କରେ ଟିକଏ ଦିଶୁଛି । ବଟିଆର ବାଁ ଗୋଡ଼ଟାରେ ଘା'ଟା ଆଉ ଶୁଖିନାହିଁ । ପୋଖଗ୍ଣ ପଙ୍କରେ ଖପରା ଥିଲା । ପାଣିରେ ବୁଡ଼ିଲା ବେଳକୁ ଗଳିଯାଇଛି । ପିଲାଟା କେତେ ଶୁଖିଯାଇଚ ସ୍ୱା ଭିତରେ ! ଗଣ୍ଠି ଝାଡ଼ୁଚ ପରି ଲାଗୁଛି ।

"ଏ ମୁଣା ଭିତରେ ସବୁ ରହିଲା, ବୁଝିଲ ! ଆଉ ଏ ଗଣ୍ଠିଟାରେ ତୁମ ଗ୍ୱଦର, ଆଉ ସୁଦେଇର କମ୍ବଳଖଣ୍ଡ ବାନ୍ଧି ଦେଇଛୁ ।"

"ସେଇଟା କାହିଁକି ଦେଲ ? ତାଙ୍କର ଲୋଡ଼ା ହୋଇଥାନ୍ତା ନା କ'ଣ ।"

"ନାହିଁ ହେ, ମୋର କ'ଣ ହବ ? ତୁମେ ପ୍ରବାସ ଯାଉଛ, ନେଇଯାଅ "

"ହଉ, ଦିଅ ମତେ ସେ ମୁଣାଟା । ମୋ ବାଡ଼ିଖଣ୍ଡ ସେ କୋଣରେ ଅଛି, ଆଣ । ଆସ ନନ୍ଦେ, ଯିବ ପରା, ବାହାରେ କ'ଣ ଖଣ୍ଡେ ପକାଅ । ଆଚ୍ଛା, ମୁଁ ତା'ହେଲେ ଆସୁଚ— ସୁଦେଇ ତ ରହିବେ । ଆଉ କ'ଣ ? ଦେଖି ଚାହିଁ ଚଳୁଥିବ, ବୋହୂର ଯତ୍ନ ନେଉଥିବ । ଲକ୍ଷ୍ମୀନାରାୟଣ କେମିତି ତାକୁ ଉଦ୍ଧାର କରନ୍ତୁ ।"

ଦାସେ ଶୂନ୍ୟକୁ ଚାହିଁ ଡାକଲେ, "ଦୁର୍ଗା ମାଧବ, ଦୁର୍ଗା ମାଧବ, ଦୁର୍ଗା ମାଧବ ! ଚାଲ ନନ୍ଦେ !"

"ହଉ, ଚାଲ ।"

ଦାଣ୍ଡପିଣ୍ଡା ପର୍ଯ୍ୟନ୍ତ ଝିଲୁମା' ଆସି ଠିଆହେଲେ । ଶେଷକୁ ଦୁଇଜଣ ଦାଣ୍ଡ ଧରଲା ବେଳକୁ ଦାସେ ବୁଲପଡ଼ି ଚାହିଁଲେ ।

ଝିଲୁମା' କହିଲେ, "ଦେଖ, ଦହକୁ ଜଗି ଚଳୁଥିବଟି !"

ଗାଁ ମୁଣ୍ଡ ନାଳଆ ପର୍ଯ୍ୟନ୍ତ ଦୁହେଁ ନୀରବରେ ଚାଲିଗଲେ ।

"ମୁଁ...ତା ହେଲେ...ଏଇଠୁ ଫେରୁଛି ।"

"ଫେରବ ? ହଉ ।"

"ସେଇଠି ତୁମକୁ ପହଁଚିବାକୁ ଉଛୁର ହବ ନାହିଁ ତ ?"

"ନାହିଁ ହେ, କେତେଗୁଡ଼ାଏ ଏମିତ ବାଟ କି ?"

"ହଉ, ପିଲାଙ୍କ ବିଷୟ କିଛି ଚନ୍ତା କରିବ ନାହିଁ । ମୁଁ ତ ଅଛି ସବୁ କଥାକୁ । ମୁଁ ଚଳିଠି ଦେବ ଯେ !"

"ହଉ !"

ଦାସେ ଠିଆହୋଇ ଦେଖି ଦେଖି ସକାଳ ପହରର କୁହୁଡ଼ିଆ ଅନ୍ଧାରରେ ନଦେ ବେଗି ବେଗି ବୁଲିଗଲେ ।

ମୁହଁ ଫେରାଇ ଦାସେ ଆଣ୍ଠୁ ଉପରକୁ ଲୁଗା ଟେକି ପାଣିଧାରରେ ପଶିଲେ ।... ଅଃ, ମଣିଷର ଅଭାବ ହେଲେ ସତେ ସ୍ୱଭାବଟା ମଧ୍ୟ ନଷ୍ଟ ହୋଇଯାଏ । ସ୍ୱାପ, ପଇସା ଦି'ଟା ଥିଲେ ଘରେ ପିଲାଙ୍କୁ ଛାଡ଼ି ମୁଁ ଆଉ ପ୍ରବାସ କରିଥାଆନ୍ତି ? ବୋହୂଟାର ଅବସ୍ଥା ଇମିତ । ଭଲ ସ୍ୱାପ ଲୋଭ ଘୋଟିଛି ମଣିଷକୁ ! ଦୁଃଖେ ସୁଖେ କ'ଣ ଚଳିଯାଉନଥିଲି କି ? ହେଲେ ଅର୍ଥ ହେଲା ପରା ସବୁ ଅନର୍ଥର ଗୋଡ଼ ! ବାପ୍ପା ପରି ମଣିଷ ଏଇ ପଇସା ପଛରେ ସାରା ଜୀବନ ଧାଇଁ ଧାଇଁ ମଲେ ।...କରେ, ଏ ପଇସା କ'ଣ ସତେ ସ୍ୱର୍ଗକୁ ନେଇଯିବ ? ସୁଖ ହେଲେ ଭଲ ଦେଉଥାନ୍ତା ! ତା ବି ନାହିଁ । ଯଦି ପଇସା ନ ପାଇଲି ତମ ମନ କଷ୍ଟ, ଯଦି ପାଇଗଲି ଦି'ପଇସା କେଉଁ ମାର୍ଗରେ, ଆଉ ସବୁ ଲୋକଙ୍କ ମନ କଷ୍ଟ । ବଡ଼ ଆଶ୍ଚର୍ଯ୍ୟ କଥା ହେ ! ମଣିଷର ସବୁ ଖାଇବା ପିନ୍ଧିବା ତ ଭୂଇଁରୁ, ଉପଜାତ ହେଲା, ମଝିରେ ଏ ଛପାକରା ତମ୍ବା ପିତଳ ପଇସା ଫେର୍ ଗୋଟାଏ କ'ଣ ? ସେ ନ ହେଲେ ଆଉ ନ ହୁଏ ! ସେ ପୁଣି ବର୍ଷକୁ ବର୍ଷ ବଦଳୁଛି କେତେ ? ରାଣୀମାର୍କା, ବେଣୀମାର୍କା, ବୁଢ଼ାମୁଣ୍ଡିଆ ପଇସା ଗଲା, ଆସିଲା କଣା ପଇସା । ସେ ଗଲା, ଏବେ ଆସିଛି ଏ ସ୍ୱାପ ଆଙ୍କିଥକାଠ ପରି ପଇସା । ଆମେ ତ ବାପ-ଅଜା ଅମଳରୁ ଜାଣିଲୁ ଯେ ଟଙ୍କାକ ଷୋଳଅଣା, ଚଉଷଠି ପଇସା—ଏ ପୁଣି ଶହେ ପଇସା ନ ହେଲେ ଟଙ୍କା ନ ହୁଏ । କେଜାଣି ବେଳ କାଳ ବଦଳିଲା, ଲୋଭ ଗ୍ରାସିଲା ଲୋକଙ୍କୁ । କାମିନୀ କାଞ୍ଚନ—ଏ ପରା ହେଲେ ପାପ ।...ସେ ସାଆନ୍ତଘରର ଟୋକାଟା ବେକରେ କ'ଣ ଚନେ ସୁନାଚନ୍ଦ୍ରଟିଏ ଥିଲା ବୋଲି, ସେ ଲୋକଟା—ତା ନାଁ କ'ଣ ସ୍ୱାପ ମଦୁଆ—ତା ତୋଟି ଚପଦେଉଥିଲାଟି !...ସେ କଥା କାହିଁକି ? ଏ ପାଜି ବୁଢ଼ାଟା କଥା ଦେଖନ୍ତୁ ! ତାକୁ କ'ଣ କୋଉ ରାତିରେ ନିଦ ହୁଏ ? ରାତିଅଧ ହେଲେ ଭସ୍ୱରେ ବୁଢ଼ା ସ୍ୱାପ ଏଡ଼େ ପାଟିକରି ଗୀତ ବୋଲୁଥିବ । ସକାଳ ପାହିଲେ ବସିଗଲା ପୁଣି । ରୋଜଗାର କରିବ ।...କରେ ମୂର୍ଖ, ସେ ପଇସା ବାକ୍ସଟା କ'ଣ ମଲାବେଳେ ମୁଣ୍ଡେଇ ନେବୁ, ନା ତୋ ପିଲେ ତାକୁ ସାଙ୍ଗରେ ଟେକିନେଇ ତୋ ନିଆଁକୁ ପକେଇଦେବେ ? ତୋ ଆଙ୍ଗୁଠିରୁ ମୁଦିଟା ପରା ଭଡ଼ି ରଖିବେ ରେ ! ରୁ ରୁଛାରେ ଅବୁଝା ପରି ସିନା ସ୍ୱା ପଛରେ ଲାଗିଛୁ ।...ଓଃ ହରି !

ନାଳ ଆରପାଖେ ବୁଦୁବୁଦୁକିଆ ଜଙ୍ଗଲ ଭିତର ଦେଇ ଶଗଡ଼ିଆ ଧୂଳିଆ ରାସ୍ତାଟିଏ । ଦାସେ ଦୀର୍ଘ ନିଶ୍ୱାସଟିଏ ମାରି ବେଗି ବେଗି ଗୋଡ଼ କାଢ଼ି ଚାଲିଲେ । ନିଚ୍ଛଟିଆ ରାସ୍ତାଟାରେ କୁଆ କୋଇଲିଟିଏ ବି ନାହିଁ । କେମିତ ମାଡ଼ପଡ଼ିଲା ପରି ଲଗିଲା । ସେ ପଛକୁ ଦୁଇ ତନଥର ଚାହିଁଲେ । ଗାଁ ସେମୁଣ୍ଡରୁ ଆଖଡ଼ାଘରଆଡ଼ୁ କୁକୁରଟାଏ ଭୁକିବାର ଅଳ୍ପ ଅଳ୍ପ ଶୁଭିଲା ।

ହେଇ ସୁବଳ ଘର ପିଣ୍ଡାରେ ବାଘୁଆ ଭୁକୁଛି । କ'ଣ ଚୋର ପଶିଲେ କି ?—

ନା, ସବୁ ଆଉରି ଅଛି ମ ?···କ'ଣ ଦଶା ଗର୍ଜିଲା ପରି ଲାଗୁଛି । ଆଖି ପାଖରୁ ତଳକୁ ଟିକିଏ ଝୁଲିଲା ପରି ଲାଗିଲା । ଗୋଡ଼ ଆଉ ନ ଚଳେ । ଏତିକିବେଳେ ମାରିବଟା ଭେଦ ଶୁଭିଲା "କେକ୍‌ରେ···ଏ···ଏ···କେଁ ।"

ଓହୋଃ ! ସବୁ ପାଇଲା ତ ! ଏଇଠି ଏ ପଡ଼ିଆ ଭିତରେ ସାପ କେଉଁଠି ବଗୁଡ଼ିଆ ହୋଇଛି ହୋ ! ହୁ, ହୁ, ହୁ, ଜଣା ହେଲେ ଜୀବନଟା ପ୍ରତି ମୋହ ମରିଯିବ ? ମୋହ ଯେତିକି, ଭୟ ବି ସେତିକି । ଓଃ—ସ୍ତ୍ରୀକୁ ତ କାଟି ଦେଇପାରିଲେ ସମସ୍ତେ ଯୋଗୀ ହୋଇଯାନ୍ତେ, ଆଉ ଥିଲା କ ?

ଦେଢ଼ଶ' ଟଙ୍କା ଗଣିଦେବ ଯେ କେତେଟା ଧନକୁ ! ଜଣା ହେଲେ ପଇସାବାଲା ଲୋକଟା କ ! ତାର ପରି ଏ ଖଣ୍ଡକଯାକରେ ସବୁଠୁ ବେଶି ପଇସା । ତାକୁ ଏ ଦେଢ଼ଶ'ଟା ଟଙ୍କା ବା କ ଗୁଡ଼ ! ···ଟଙ୍କାଟା ମାତ୍ର ଆମ ହାତରେ ପଡ଼ିବାପରରୁ ଭଗବଣ୍ଡା ସରିଲାଣି । ଲଗ ଶ୍ରଦ୍ଧାରେ ଆଗ ପଳେଇବ ଗୁଲଶି ପାଖାପାଖି । ଶାଗୁବୋହୁ ପାଇଁ ପିନ୍ଧିବାକୁ ଲୁଗା ନାହିଁ, ତିରିଶି ଟଙ୍କାର ଲୁଗା ଆସିବ । ବାଡ଼ିଆଡ଼ ଖଡ଼ିର ଗୁଳଖଣ୍ଡ ଖଙ୍କି ଡେଳୁଳ ପରି ମେଞ୍ଚ ହୋଇଗଲାଣି, ସେଥିରେ କିଛି ପଇସା ଲାଗିଯିବ । ହେଇ ତ ଗଲା ଶହେ । ଆଉ ଟଙ୍କା ପଚାଶଟା ! କେଉଁ ବାଗେ ସେ ପାଣି ପରି ବୋହିଯିବ ଜାଣିହେବ ନାହିଁ । ଚଞ୍ଚଳା ପରି ! ଏଇଲାଗେ ଥିବ ତ ଆଉ ଟିକିଏ ନାହିଁ । ସବୁବେଳେ ତ ନଅଣ୍ଟ, କ'ଣ ହେଲେ କରିବ ମଣିଷ ?

ଆଚ୍ଛା, ମଦନପୁରରେ ଯେଉଁସବୁ ବାବୁଭୟା ମଟରଗାଡ଼ିରେ ବୁଲନ୍ତି, ତାଙ୍କର କ'ଣ ପଇସା ନଥିବ ? ଥିବ ଯେ, ତାକୁ ସୁଦ୍ଧି କ'ଣ ଖର୍ଚ୍ଚ ନଥିବ ! କହୋ, ଯେଉଁକି ବାଉଁଶକୁ ପରି ସେଉଁକି ପୋଲ, ସେ ଆଉ ଯିବ କୁଆଡ଼େ ? ସ୍ତ୍ରୀ ଯେ, ସେମାନେ ମଧ୍ୟ ଆମେ ଧନ୍ଦା ହେଲା ପରି ଧନ୍ଦା ହେଉଥିବେ ନା । କାହାକୁ କ'ଣ କେବେ ଅଭାବ ଛାଡ଼ିଛି ନା ଛାଡ଼ିବ ? ସ୍ତ୍ରୀ ପଛରେ ତ ଗୋଡ଼ାଉଥିଲେ ଗୋଡ଼ାଉଥିବ । ପାଞ୍ଚ ପାଇଲେ ପଚଶକୁ ମନ ହେବ, ପଚଶ ପାଇଲେ ପାଞ୍ଚଶ'କୁ । ଯେତେ ପାଇଲେ କ'ଣ ତୃଷ୍ଟ ଅଛି ? ତାକୁ ଛାଡ଼ି ବି ହେବ ନାହିଁ । ପଇସାଟାକୁ ଗୋଟେଇଲେ କାହାର କ'ଣ ପେଟ ପୁରେ ? ହେଲେ ସେ ଚନ୍ଦଧର ନଥିଲେ ଖାଇବାକୁ ମିଳିବ ନାହିଁ କ ପିନ୍ଧିବାକୁ ମିଳିବ ନାହିଁ ।

ଯୋଗୀ ଥାଳ ଧରି ବୁଲୁଛି, ତା'ର ତ ପଇସାକୁ ଖାତିର୍ ନାହିଁ କ ଲୋଭ ନାହିଁ । ତା'ର ପେଟକୁ ଗଣ୍ଡେ ପିଠିକୁ ଖଣ୍ଡେ ହେଲେ ସେ ସନ୍ତୁଷ୍ଟ । ଖାଇ ପିନ୍ଧି ବଞ୍ଚିବା ତ ହେଲା ମୂଳ । କିନ୍ତୁ ସେଥିରୁ ମନ ନେଇ ପଇସା ଅର୍ଜନରେ ସବୁ ଏମିତି କାହିଁକି ପାଗଳ ହେଉଛନ୍ତି ! ଏଇଟା କ'ଣ ଖାଲି ମୋହ ନା, ଏଇଟା ପରି ଏବେ ସବୁ ବିଷୟରେ ଯୋଗ୍ୟତା । ଜୀବନର ବାକି ସବୁ ପ୍ରୟୋଜନ ସ୍ତ୍ରୀ ସାହାଯ୍ୟରେ ମେଣ୍ଟିବ । ···ପୁଣ୍ୟ କ୍ଷେତ୍ରରେ କେତେ ଦେବଦେବୀ ନାହାନ୍ତି ? ତାଙ୍କୁ କ'ଣ ଆମେ ଦେଖିପାରିବା ପଣ୍ଡାଟିଏ ନ ଧଇଲେ । ସେ ପରି ବାଟ ଜଗି ଠିଆହୋଇଛି ! ତାକୁ କ'ଣ ଛାଡ଼ି ଯାଇହେବ । ସେମିତି ବଞ୍ଚିବ ତ ବାପା ଆଗ ପଇସା ବାହାର କର । ନ ହେଲେ ଶୁଖି ଶୁଖି ମର, ତୁମକୁ କେହି

ଯଗୃରବେ ନାହିଁ ।···ଇସ୍, ଭଲ ସଂସାର ହେଲା ହୋ । ତମ୍ବା ପିତଳ ପଇସା ହେଲା ଜୀବନଠୁ ବଡ଼ । ଧନ ବଳ ଆଗରେ ଜନ ବଳ କ'ଣ, ମନ ବଳ କ'ଣ—କେହି ଟାଣ ଧରି ପାରିବେ ନାହିଁ । ତା ବୋଲି କ'ଣ ପାଜବୂଢ଼ା ପରି ଟଙ୍କାଥଳି ଜଗି ଜଗି ପ୍ରାଣ ଯିବ ନହେ ! ପେଟକୁ ଖାଇବ ନାହିଁ, ଦେହକୁ ପିନ୍ଧିବ ନାହିଁ, ସ୍ବାପ ଯକ୍ଷ । ଭୂତ ଖାଇବେ ସେ ପଇସାସବୁ । ସେମିତି ମଧ୍ୟ ସଞ୍ଚିଲା ପରି ଧନ ସମ୍ପତ୍ତି କି ଲାଭ ? କମେଇଲ୍ ତ ସ୍ବାପ, ତାକୁ ଖାଇଦଅ । ତା'ର ମାତ୍ର ସେଥିରେ ସନ୍ତୋଷ । ଆମେ ତାକୁ ମୂର୍ଖ କହିଲେ, ସେ ମଧ୍ୟ ଆମକୁ ସେଇଆ କହୁ ନ ଥିବ କି ? ସେମିତି ନ ହେଲେ କ'ଣ ସେ ଆଉ ସତରେ ମୂର୍ଖ ହୋଇଥାନ୍ତା ! ଜଗୁଥାରେ ପୁଅ ପଇସା, ସେଇ ତୋତେ ପାରିକରିଦେବ । ମିଛ ମାୟାଟି !

“ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ
ଘଟ ଛୁଟିଲେ ତୋତେ ବୋଲିବେ ଭୂତ ରେ ।”

ଶଗଡ଼ିଆ ଗସ୍ତା ଗୁଡ଼ ଆସି ରୋଡ଼ ଧରିଲେ ଦାସେ । ସେତେବେଳକୁ ଖୁବ୍ ଫର୍ଚ୍ଚା ହୋଇଗଲାଣି । ଟିକିଏ ଠିଆହୋଇ ଟିପେ ଦୋକତା ପାଟିରେ ପକେଇ ହେଇଠୁ ଗୁଲିଲେ ଆଗକୁ । ‘ନମୋ ନାରାୟଣାୟ !’

# ଦୀକ୍ଷା ଗ୍ରହଣ

"ଗୋସେଇଁ ମହାପ୍ରଭୁ, ଆଉ ଏ ଦଶବର୍ଷ ହେଲା ଆପଣଙ୍କ ଦେଖା ନ ଥିଲା । ଏବକୁ ଏ ଟୋକାଯାକ ଆଉ ବ୍ରାହ୍ମଣ ଦେବତା କଛୁ ମାନୁ ନାହାନ୍ତି ଆଜ୍ଞା ! କେମିତି ମନହେଲା କେଜାଣି, ଆପଣଙ୍କ୍ ଏ ବର୍ଷ ଡକେଇଲା ମହାଜନ । ନ ହେଲେ ଦଶହରୁ ମଲା ଦେବ ନାହିଁ ସେଇଟା । ତା ମା' ବୁଢ଼ୀ ବୋଧେ ଲଗେଇଥିବ ନା କ'ଣ ! ମାତ୍ର ତା ବାପଟା ନଇଲେ ଗୋଟେ ଲୋକ ଥିଲା ଆଜ୍ଞା ! ଆଃ···ଆପଣ ତ ଜାଣନ୍ତି, କଉଣସି ବର୍ଷ ବୈଶାଖକୁ ଆଉ ବ୍ରାହ୍ମଣ ବରଣ ନ ହୋଇ ନାହିଁ । ଆପଣ ତ ନିଜେ କେତେ ବର୍ଷ ଆସିଛନ୍ତି ।"

ସନାତନ ଦାସେ ଧବଳେଶ୍ୱରଙ୍କଠାରେ ପାଞ୍ଚ ଦିନ ହେଲା ବରଣ ହେଲେଣି । ଉନ୍ନ ହଜାର ଉପରେ ବସ୍ତ୍ର ବେଲପତ୍ର ଚଢ଼େଇ ଅସୁ ଆସୁ ପ୍ରାୟ ବେଳବୁଡ଼ ସମୟ । ଖାଇସାରି ବସାର ବାହାର ପିଣ୍ଡାରେ ବସିଛନ୍ତି । ପାଟମାଲି ଆସି ତାଙ୍କ ପାଖରେ ପହଞ୍ଚି କଥା ଆରମ୍ଭ କରିଦେଇଥାଏ ।

ନଗ୍ଗୁଡିଆ ମନ୍ଦିରକୁ ଲଗି ବଡ଼ ପୋଖରୀଟା କୂଳରେ ଦୁଇଟି ଘର । ଗୋଟିକରେ ଗ୍ରେଟା ମାଳିଟି ଦଶଟି ବର୍ଷ ହେଲା ରହୁଛନ୍ତି । ଦାସେ ତାକୁ ଆଗରୁ ଜାଣନ୍ତି । ଆରଟି ଏମିତି ଅତିଥି ଅଭ୍ୟାଗତ ଆସିଲେ ରହନ୍ତି ।

"ହଁ, ମୁଣ୍ଡୁଯାବାପ ହରିଭକ୍ତ ଭଲ ଲୋକଟାଏ ଥିଲା । ହେଲେ ଆମେ କ'ଣ ଆଉ ଏଇ ଅନ୍ଧାରରେ ଆସିପାରିବା, ଯଦି ସେ ଧବଳେଶ୍ୱରଙ୍କ ଇଚ୍ଛା ନହେଲେ । ଆଚ୍ଛା, ଏ ଜଣକ ଯେ ପ୍ରତିଦିନ ଆସନ୍ତି ସକାଳୁ, ତା'ହେଲେ ଗଙ୍ଗାଧର ଶତପଥୀ ? ମୋର ତାଙ୍କ ସାଙ୍ଗରେ ଏମିତି କଛୁ ପରିଚୟ ନ ଥିଲା, କିନ୍ତୁ କି ଲୋକ ସିଏ ବାବା ! ତାଙ୍କୁ ଦେଖିଲେ ଯାହାର ମୁଣ୍ଡ ନଇଁଯିବ ।"

"ତାଙ୍କ କଥା କାହିଁକି କହୁଛନ୍ତି ଆଜ୍ଞା ! ନର ଦେହରେ ସେ ସାକ୍ଷାତ୍ ଦେବତା । ଜମିଦ୍ୱାରୀ ପୁରୁଷ । ପ୍ରଭୁ ତାଙ୍କର କ'ଣ ଇଚ୍ଛା କରିଛନ୍ତି ? ପୂଅଯାକ ସବୁ ବଡ଼ଲୋକ । ସେ ତାଙ୍କ ଅମଳରେ ମଧ୍ୟ ଖୁବ୍ ବଡ଼ଲୋକ ଥିଲେ । ତାଙ୍କୁ ଏମିତିଆ ଦିନ ଏବେ ଦେଖୁଛନ୍ତି, ସେ କ'ଣ ଅଳ୍ପ ଲୋକ ? ସେ କୋଉ ରାଜ୍ୟ ନ ବୁଲିଛନ୍ତି ବୋଲି ନାହିଁ, କୋଉ ତୀର୍ଥ ନ ଦେଖିଛନ୍ତି ବୋଲି ନାହିଁ । ଏବକୁ ସବୁଆଡ଼ୁ ମନ ଭାଙ୍ଗିଗଲାଣି । ପ୍ରତ୍ୟେକ ଦିନ ଆସି ସେଇ ସେ ପୂର୍ବପାଖ କଣରେ ବସିବା ଯଥାର୍ଥ । ମନ ହେଲେ ବୁଢ଼ା ଦିନେ ଏଇଠି ରାତ ରହିଯାଆନ୍ତି । ଘରେ ପୁଣି ମନା, କେହି ଆସି ତାଙ୍କୁ ଏଠୁ ଡାକିବେ ନାହିଁ । ସେ ତ

କାହାକୁ କଥା କହୁବେ ନାହିଁ, ଦଣ୍ଡବତ ହେଲେ ଟିକଏ ଖାଲି ହସିଦେବେ । ସେଦିନ ପରା ଆଜ୍ଞା ମନ୍ତ୍ରୀ ଆସିଥିଲେ । ମଦନପୁରକୁ ଆସିଲେ ଧବଳେଶ୍ୱରଙ୍କ ଦର୍ଶନ କରି ନ ଯିବା ପୁଅ କେହି ନାହିଁ । କାହାର ହେଇ ଏଡ଼େ ସାହସ ହବ ନାହିଁ । ଏ ମନ୍ଦିର ତ ଆଜ୍ଞା ସଂସାରରେ ନ ଥିବ । ପ୍ରଭୁ ବିଜେ କରିବେ ବୋଲି ନନ୍ଦ ଭୃକୁଟିଙ୍କ ଆଜ୍ଞା ହେଲା । ସେ ଦୁଇଜଣ ଧରି ଅଲଗା ଟେକିଦେଲେ ଏ ଅଚଳ ପର୍ବତ । ନ ହେଲେ ଦେଖନାହାନ୍ତି ଆଜ୍ଞା, ଏ ଅକର୍ମ ଶିଳାରୁ ଏଡ଼େ ବଡ଼ ପର୍ବତ କ'ଣ ମଣିଷ ହାତରେ ଏମିତି ଦୁଇ ଫାଳ ହୋଇ ଫାଟି ଯାଇଥାନ୍ତା ? ପଥର ଉପରୁ ତଳକୁ ପିନା ଚହଟି ଫାଟିଯିବ, ମାତ୍ର ଏ କଡ଼ରୁ ସେ କଡ଼ ଏମିତି ଆଡ଼ବାଗେ ଫାଟିଥିବାର ଆପଣ ହେଲେ କେଉଁଠି ଦେଖିଛନ୍ତି ନା ଆଗ ? ତା'ର ଭିତରେ ପୁଣି ସ୍ୱୟମ୍ଭୂ । ଆଉ ଏ ଜଳାଶୟ ତ ଆପଣ ଦେଖୁଛନ୍ତି । ଦୁଇଆଡ଼େ ଦୁଇଟା ପର୍ବତ । ସେ ପାଖକୁ ଆଖି ପାଉ ନାହିଁ । ଏ ମଧ୍ୟ ମଣିଷ ଖୋଳେଇ ନାହିଁ । ଏ ଦେବପୀଠ ଆଜ୍ଞା, ଆଉ ଅକଳନ୍ତ ମହିମା ମଧ୍ୟ ଏହାଙ୍କର । ଭୁବନେଶ୍ୱରରେ ସେ ପିନା ଲିଙ୍ଗରାଜ—ତାଙ୍କ ନିନ୍ଦା କରିବି ନାହିଁ—ହେଲେ ଏଭଳି ପ୍ରତ୍ୟକ୍ଷ ଦେବତା, ନିଜେ ସବୁ ଯୋଗାଡ଼ କରି ଆସି ପ୍ରକାଶ ହେବା କେଉଁଠି ହେଲେ ନାହିଁ । କ'ଣ ଆଜ୍ଞା, ବଡ଼ ଚିନ୍ତା କଲି ପରି ବସିଛନ୍ତି । ମନ ସୁଖ ନ ଥିବ ପରା !"

"ନା, ସେମିତି କିଛି ନାହିଁ ।"

"ହଁ, କ'ଣ କହୁଥିଲି କି, ମନ୍ତ୍ରୀ ତ ଆସିଥିଲେ । ସେଦିକ ବେଳେ ସବୁ ଏ ଘାଟ ହେଣ୍ଟାରେ ଗାଡ଼ିରେ ଆଲୁଅ ଲଗେଇ ପକେଇଛନ୍ତି । ଏ ପାହାଚଯାକ ମଧ୍ୟ ଖଣ୍ଡିଆ-ଦଣ୍ଡିଆ ଥିଲା । ତାକୁ ସଜଡ଼ାସଜଡ଼ି କରିଦେଇଛନ୍ତି । ଆଖିରେ ଦେଖିବା କଥା ଆଜ୍ଞା···ମନ୍ତ୍ରୀ ଦେବଦର୍ଶନ କରି ସାରିଛନ୍ତି କି ନାହିଁ ଆଖି ପଡ଼ିଗଲା କୋଣରେ ବୁଢ଼ା ଠିଆହୋଇଛନ୍ତି । ସମସ୍ତେ ଚାହିଁଛନ୍ତି, ଯାଇ ତାଙ୍କ ଗୋଡ଼ତଳେ ଢୋ'କିନା ମୁଣ୍ଡିଆ ମାରିଲେ । କହିଲେ, "ସାର୍, ଆପଣ ଏଇଠି ?"······ସମସ୍ତେ ତାଟକା ହୋଇ ଚାହିଁ ରହିଥାନ୍ତି, କିଏ ଏ ଜଣକ ଯାହାକୁ ମନ୍ତ୍ରୀ ମଧ୍ୟ ଯାଇ ମୁଣ୍ଡିଆ ମାରିଲେ ! ବୁଝ୍‌ ବୁଝ୍‌ କ'ଣ ନା ମନ୍ତ୍ରୀ କୁଆଡ଼େ କଲିକତାରେ ନା କ'ଣ ପଢ଼ିଲାବେଳକୁ କଲେଜରେ ବୁଢ଼ା ତାଙ୍କୁ ପାଠ ପଢ଼ାଉଥିଲେ ।··· ସେତେବେଳେ ବୁଢ଼ାଙ୍କୁ ମନ୍ତ୍ରୀ ସମେତ ସବୁ ସବୁ ବଡ଼ ବଡ଼ିଆ ଘେରିରହିଥାନ୍ତି । ହେଲେ ତାଙ୍କର ସେଇ ଟିକଏ ମାତ୍ର ହସ । ବଡ ଅଜବ ଲୋକ ଆଜ୍ଞା ! ତାଙ୍କୁ କେହି ହେଲେ କଳି ପାରି ନାହାନ୍ତି । ବୁଢ଼ା ହେଲେଣି ପିନା, ଦେଖିବାକୁ କଅଁଳ ଖଣ୍ଡ ପରି । ମୋତେ ଆଜ୍ଞା ବଡ଼ ଡର । ମୋତେ ଆଶ୍ଚର୍ଯ୍ୟ ଲାଗୁଛି ସେ ଏତେ ବେଳ ଧରି କେମିତି ଆପଣଙ୍କ ସାଙ୍ଗରେ କଥା କହୁଛନ୍ତି । ଆପଣ ମିଛ ମଣିବେ ଆଜ୍ଞା, ସେ କାହା ସାଙ୍ଗରେ ଏମିତି କଥା ହୁଅନ୍ତି ନାହିଁ । ମୁଁ ଆସୁଛି ଆଜ୍ଞା ! ସେଆଡ଼େ ଟିକଏ ଦୋଅଣ ବସେଇ ଦେଇ ଆସିଥିଲି, ଯାଏ କ'ଣ ହେଉଛି ଦେଖିଆସେ ।" ଗ୍ରେଟେଇ ଗ୍ରେଟେଇ ପାଟମାଳି ତା ବସାରେ ପଶିଗଲା ।

ଡରି କ'ଣ ସ୍ୱାପ ତତେ ଏକୁଟିଆ ! ଏ ମଣିଷକୁ ଯାହା ଅସମ୍ଭାଳ ଲାଗୁଛି ତ ଆଉ କହିବା କଥା ନାହିଁ । ବାପା, ବୁଢ଼ାଙ୍କ ପାଖରେ ବସିଲେ ନିଜକୁ କେତେ କ୍ଷୁଦ୍ରମାନ ଆଟା

ଲାଗୁଛୁ । ଏ ମଣିଷ ସତେ ବୃଥାରେ ଏତେକାଳ ସଂସାରରେ ପଡ଼ି ଘାଣ୍ଟି ହେଲା ସିନା, କିଛି ଆଉ ଜାଣିପାରିଲା ନାହିଁ । ମାତ୍ର ଶତପଥୀ ମହାଶୟ ଜ୍ଞାନର ଭଣ୍ଡାର । ପୂର୍ବଭାଗ୍ୟ ନଥିଲେ ଏପରି ମହାପୁରୁଷ ସାଙ୍ଗରେ ସାକ୍ଷାତ ହେବା ସହଜ ନୁହେଁ । ଆଜି ସେ କହିଲେ, "ସଂସାର ବନ୍ଧନ ଆମ ନିଜର ସୃଷ୍ଟି । ବୁଢ଼ୀଆଣି ତା ପେଟରୁ ସୂତା କାଢ଼ି ନିଜେ ସେଥିରେ ଛନ୍ଦି ହେବା ନ୍ୟାୟ ।" କଥା ପ୍ରକୃତ । ମାତ୍ର ଯାହା ଦିଶୁଛି ଆଉ ଯାହା ପାଇଁ ମଣିଷ ପ୍ରାଣ ପଣ କରିଦେଉଛି, ତାକୁ ସବୁ ମିଛ ବୋଲି କହିଦେବା କ'ଣ ସହଜ ପଡ଼ୁଛି ! ଧନ; ଦାରା; ପୁତ୍ର ସବୁ ମାୟାବଳରେ ଆମର ହୋଇ ଛନ୍ଦିହୋଇ ରହିଛନ୍ତି ସତ, ମାତ୍ର ତାଙ୍କୁ ଦୂରକୁ ପେଲିଦେବା ପାଇଁ ଇଚ୍ଛା ହେଲେ ସାହସ ଲୋଡ଼ା ! ନା ଆଜ୍ଞା, ସେ ଆମ ପରି ଅଜ୍ଞାନୀ ବୁଦ୍ଧିରେ ହେବ ନାହିଁ । କାଣ୍ଡିଆ ଅଠାରେ ଶୁଆ ଯେତେ ଫଡ଼୍ ଫଡ଼୍ ହେବ ଛଡ଼େଇ ହୋଇ ଉଡ଼ିଯିବାକୁ, ସେ ସେତେ ଆଉରି ଲଟେଇ ପଟେଇ ହୋଇଯିବ । ଅଠା ସୂତା ପୁରି ପୁରି ହୋଇ ଗୁଡ଼େଇ ହୋଇଯିବ । ତେବେ ଲାଭ କ'ଣ ? ଖାଲି ହାଲିଆ ହେବା ସିନା ! କୋଟିକେ ଗୋଟିଏ ପକ୍ଷ କେହି ଉଡ଼ିଯାଆନ୍ତି, ସେମାନଙ୍କ ଡେଣାରେ ବଳ ବେଶି କମ୍ପା କାଠିରେ ଅଠା ଶୁଖିଯାଇଛି । ଧରି ନ ଧରିଲା ପରି ଖାଲି ନାଆଁକୁ ହେଇ ଦୁଇ ପୁରି ସୂତା ଗୁଡ଼େଇ ହୋଇଯାଇଛି ।·····ବୁଢ଼ା ପ୍ରଫେସର ଥିଲେ । ସାରା ଭାରତ ଭୂଇଁ ବୁଲି-ଆସିଛନ୍ତି । କୌଣସି ଶାସ୍ତ୍ର ଆଉ ବାକି ନାହିଁ । କେତେ କରି ପଥରଦ୍ଧନ ଗୀତା ଶାସ୍ତ୍ର ମୋତେ ବୁଝାଇଲେ । ଆମେ କ'ଣ ଆଉ କ' ମ' ଠ' କରି ବୁଝିପାରୁନୁ କି ? ମାତ୍ର ସେ ଜ୍ଞାନ ଅନୁସାରେ କିଏ କରୁଛି !·····"ପିଲା ବୟସରୁ ଭେଣ୍ଡିଆ ହେବା ଯାହା, ବୁଢ଼ା ହୋଇ ମରିବା ମଧ୍ୟ ସେଇଆ"—କିଏ ନାହିଁ କଲା । "ଶରୀରଟା ପୋଡ଼ି ପାଉଁଶ ହୋଇଯିବ, କିନ୍ତୁ ଆତ୍ମା ଯେମିତ ସେମିତ ଯାଇ ଆଉ ଏକ ଘଟରେ ପଶିବ ।"—ତା'ବ ଠିକ୍ । ହେଲେ କ'ଣ ହେବ, ଏ ଗୁଡ଼ାକ ତ ଆମ ବାହକଯାକ ଶୁଣିଆସିଲୁ, ପଢ଼ିଆସିଲୁ, କେତେବେଳେ ହେଲେ ମନରୁ ଅଡ଼ୁଆ ଗଲାନାହିଁ ।

ବୁଢ଼ା କହିଲେ, "ଆମର ପୁଣି ବିଶ୍ୱାସର ଅଭାବ । ଶୁଣ, କହ, ବିଶ୍ୱାସର ଆଉ ଅଭାବ ହେଲା କୁଆଡ଼ୁ ? ଆମେ କେଉଁ ଦେବତାଙ୍କୁ ଅବିଶ୍ୱାସ କଲୁଣି ଭଲା ?—ସେମିତ ହଜାରେ ଦେବତାଙ୍କ ବିଶ୍ୱାସ, ବିଶ୍ୱାସ ନୁହେ । ବ୍ରହ୍ମତ୍ୱ, ଏକତ୍ୱ ଉପରେ ଅଗାଧ ବିଶ୍ୱାସ ଦରକାର ।"···କଓ, ବିଶ୍ୱାସ ବଢ଼ିଲେ ଏଇ ଭକ୍ତିଟି ! ଜଗନ୍ନାଥେ କ'ଣ ବ୍ରହ୍ମ ନୁହନ୍ତି, ନା ତାଙ୍କୁ କିଏ ଭକ୍ତି ନକରି ଅଛୁ ? ଆମେ ପରା ତାଙ୍କ ପାଖରେ ସବୁ ଦେଖୁଛୁ । ସବୁ ଦେବତା ତାଙ୍କରଠେଇଁ ଠୁଳ । ସେଇ ମୂଳ, ଆଦିକର୍ତ୍ତା ।

ହଁ, ଏଇଠି ବୁଢ଼ା କେଡ଼େ ସୁନ୍ଦର କଥାଗୁଡ଼ିଏ କହିଗଲେ ହୋ ! ବାଇଲେ ଜଗନ୍ନାଥଙ୍କର କି ଅଦ୍ଭୁତ ରୂପ ! ଗୋଡ଼ ନାହିଁ, ସେ ଅଚଳ, ସ୍ଥାଣୁ—ତମ ପାଖକୁ ଆସି କିଛି କରିଦେବେ ନାହିଁ, ହାତ ନାହିଁ—ସେ କର୍ମରେ ନିର୍ଲିପ୍ତ । କାନ ନାହିଁ । ଇସ୍, କଥା ହେଇଛି ସତେ ! ପୁଣି କାନ ନାହିଁ ? ଯେତେ ଡାକିଲେ ସେ ଶୁଣିବେ ନାହିଁ । କେବଳ ମେଘ ପରି କଳା ମୁହଁରେ ସୂର୍ଯ୍ୟଚନ୍ଦ୍ର ପରି ଏଡ଼େ ଏଡ଼େ ଚକା ଚକା ଆଖି ଦୁଇଟା ।

ସେ ସେଇ ଗମ୍ଭୀର ଭିତରୁ ଖାଲି ଦେଖୁଛୁ । ତା ଆଖିକୁ ଦିଶିଲା ପରି କାମ କରିବା ହେଲା ଅସଲ ଧର୍ମ । ଓଃ, ମୁଁ ଯେତେ ଭାବୁଛୁ ସେତେ କାହିଁକି ଏ ଭିତରେ ହଜିଗଲା ପରି ଲାଗୁଛୁ । ବଡ଼ ଚମତ୍କାର ହେଉଛୁ ଏସବୁ ଯେ, ହେଲେ କେମିତି ଦୋଷୀ ପରି ଲାଗୁଛୁ । ଯେମିତି ନ ଜାଣିବା କଥାଗୁଡ଼ାକ ଜାଣିବାରେ ମୁଁ ସୁତା ପକାଇ ପ୍ରଭୁଙ୍କ ମାପି ଦଉଛୁ କି ଆଉ !··· ନାଇଁ ମ, ଏ କଥାକୁ ସେକଥା ଠିକଣାରେ ସେ ଯୋଡ଼ି ଦେଉଛନ୍ତି ବୋଲି ସିନା ଏ ମଣିଷ ପାଟି ଫିଟୁ ନାହିଁ—ନଇଲେ ଏ ଜ୍ଞାନ ଆମର ଲୋଡ଼ା ନାହିଁ । କିଓ, ପ୍ରଭୁ କ'ଣ ଯନ୍ତ୍ର ହୋଇଛନ୍ତି ଯେ ତାଙ୍କର ଟିକିନିଖି ଜାଗାରୁ ଖିର୍‌ କାଢ଼ି ଅର୍ଥ କରିବ ? ତୁମେ ସିନା ଏମିତି ଭାବୁଛ, ସେ ତ ମନ ଜାଣି ରୂପ ଦେଖେଇବେ । ତାଙ୍କର କ'ଣ କଳନା ଅଛି ? ହଁ, ତାଙ୍କୁ ସାକ୍ଷୀ ରଖି ତାଙ୍କରି ନାଁରେ ସବୁ କରିବା କଥା ସେଇ ଏକା ତ ସବୁ କରୁଛି । ବଇଲା ପରି— 'ଅନାଦି ପରମ କାରଣ' । ସବୁ କଥାର ମୂଳରେ ସେ । ବାପଙ୍କଠୁ ଆଉ କିଏ ପୁଅ ହେଲାଣି ଏ ପଦ ଲେଖିବ ! ହେଲେ ବୁଢ଼ା ଅଳପ ଅଳପ ହସି କେତୋଟି କଥାରେ ସବୁ ଜ୍ଞାନର ମଞ୍ଜି ଯାକ କେତେ ସରଳରେ କହିଦେଉଥାନ୍ତି । ଶୁଣିବାକୁ କେଡ଼େ ମିଠା ! ମନରେ ସବୁ ନୂଆହୋଇ ବିଶ୍ୱାସ ଗଜେଇଯିବ ।

'ତୁମେ' ବା 'ମୁଁ' ବୋଲି କେହି ନାହିଁ । ସେଇ କେବଳ ସବୁଠାରେ ପୂରିରହିଛି । 'ସକଳ ଘଟେ ନାରାୟଣ', ଏଣୁ ଯାହା ଭାବୁଛ, କହୁଛ ବା କରୁଛ, ସବୁ ସେଇ କରଉଛି ବୋଲି ଜାଣ । ଏତକ ହୋଇଗଲେ ଆଉ ଅହଂକାର ରହିବନାହିଁ ବା ମମତା ରହିବନାହିଁ । ଆପଣା ପର ଜ୍ଞାନ ରହିବନାହିଁ । ଘର ବାହାର ଭେଦାଭେଦ ରହିବନାହିଁ । କାମ କଲେ ସେଥିରେ ଆଉ ମୋହ ଧରିବନାହିଁ, ଫଳର ଆଶା ରହିବନାହିଁ । ଏଣୁ ଦୁଃଖ ସୁଖ ମଧ୍ୟ ଜୀବନରୁ ଗୁଳିଯିବ । "ପଦ୍ମପତ୍ରରେ ପାଣି ପରି ସଂସାରରେ ଥାଇ ମଧ୍ୟ ନ ଥିଲା ପରି ରହିବ ।" କେତେ କଥା ଏମିତି ମନକୁ ଧରୁଥାଏ । ହେଲେ ଏଥିରେ ନୂଆ ଆଉ କ'ଣ ରହିଲା ? ସେଇ ପୁରୁଣା ଶାସ୍ତ୍ର ବିଦ୍ୟା ତ ! ଏଥିରେ ମନ ଗଳେଇ ସବୁ ବୁଝିଗଲେ ତ ଅସୁବିଧା କିଛି ନାହିଁ । କିନ୍ତୁ ଅସଲ ହେଲା, ଆରମ୍ଭ ମଣିଷ କରିବ କେଉଁଠି ? ଏ ସଂସାର ତ ଯାହା, ସେଥିରେ ନିଶ୍ୱାସ ନେବାକୁ ତର ସହୁନାହିଁ । ଯେତେ ଗୁହାରି ପ୍ରଭୁଙ୍କ ପାଖରେ ଲୟ ଲଗାଇବାକୁ ସେ କ'ଣ ଆଉ ସହଜରେ ହୋଇପାରୁଛି । ହଜାରେ କଥା ଆସି ମନ ଭିତରେ ବସାବାନ୍ଧି ରହିଯିବେ । କ'ଣ କରିବ ? ପାଟି ଗୁହାରି ସୁଆଦ ଖାଇବାକୁ । ପିଲେ ଘରେ ଭଲ ପିନ୍ଧିବେ । ସ୍ତ୍ରୀକୁ ତ ସଂସାରରୁ ଅଧେ ହେଲେ ମଧ୍ୟ କଅଣ୍ଣ । ଏସବୁ ତୁଟ୍‌ ତୁଟ୍‌ ତ ଦିନରାତି ବଢ଼ିଯିବ, ଆଉ ମଣିଷ କରିବ କ'ଣ ?

ଆଚ୍ଛା, ଦେହଟିକି ଭଲ ଘୋଡ଼ା ପୋଷିଲା ପରି ଖୁଆଇ ପିଆଇ ନ ରଖିଲେ ସେ ଏତେ ଧାଇଁବ ? ଦେହଟାଯାକରେ ଯାହା ଲୋଡ଼ା ସେଥିରେ ମନ ହେଲା ମାଲିକ । ପାଟି ଖାଇବ, ହେଲେ ସୁଖଟା ମନର ନା କାହାର ? ଶରୀର ସୁସ୍ଥ ରହିଲେ ମନ ପ୍ରଫୁଲ୍ଲ ରହିବ । ସ୍ୱାପ ଏ ଶରୀରଟାକୁ ଆଉ ଗୋଟାଏ କିଏ ପୁଣି ଚଳଉଚ ? ଚଳଉଥିବ ନା, ନଇଲେ ଶାସ୍ତ୍ର

ଆଉ କ'ଣ ମିଛ କହନ୍ତି ? ହେଲେ ନିଜ ଦେହର ସୁଖ ଦୁଃଖଠୁ ନିକେ ପୁଣି ଭିନ୍ନ—ବଡ଼ ଅଡ଼ୁଆ କଥାଟା, ଏଥିରେ ବିଶ୍ୱାସ କରିବା କ'ଣ ସହଜ ପଡ଼ୁଛି ! ମହା ସମୁଦ୍ରର ତ ସ୍ୱରଆଡ଼େ ପାଣି । କେତେ ଗହୀର ତାର କଳନାନାହିଁ । ସେ ପାଣିଟାକୁ ଆଡ଼େଇ ତା ତଳ ଭୂଇଁଟାକୁ ଦେଖିବ ବୋଲି କହିଲେ କେମିତି ଦେଖିବ ? ଯେତେ ପାଣିଟାକୁ ଆଡେଇବ ସେ ତ ସେତେ ଘୋଡ଼େଇ ହେଇଯାଉଥିବ । ସେମିତି ସେଇ ଲୁଣିପାଣିରେ ଓଦା ହୋଇ, ତାକୁ ଘାଣ୍ଟି ଘାଣ୍ଟି ଜୀବନଟି ଯିବ । ହୁଁ, ସ୍ୱାପ, ନାକ ଚପି ନିଶ୍ୱାସ ରୁନ୍ଧିକରି କିଏ ଯଦି ବୁଡ଼ାମାରି ଯିବ, ରହିପାରିଲେ ଯାଇ ଭୂଇଁ ଛୁଇଁବ । ମାତ୍ର ସେମିତି ପୁଅ କେତେ ଜଣ ଅଛନ୍ତି ! ସବୁ ଖାଲି ଉପରଟାରେ ଗୁଡ଼ାଏ ପାଣି ପିଟାପିଟି ହୋଇ ଓଦାହେବେ ।

ନିଶ୍ୱାସଟିଏ ମାରିଲେ ଦାସେ । ···ପାହାଡ଼ଟା ଯୋଗୁ ସେଇଠି ଅନ୍ଧାର ବଡ଼ ଚଞ୍ଚଳ ମାଡ଼ିଆସେ, ଆଉ ଜାଗାଟା ଏଡ଼େ ନିସ୍ତୁଟିଆ ଯେ ଏକୁଟିଆ ହୋଇ ବସିଗଲେ ଭାରି ଖାଁ ଖାଁ ଲାଗେ ।

ଯାଉଛି ସଞ୍ଜ ଆସୁ, ପାଣି ବାଲ୍‌ଟିଏ ପୁଣି ଆଣିବ । ଏ ହାଟ ପାଇକି ଦେଖି ଗୋଟିଏ ଭଲ ମାଟିହାଣ୍ଡି ଟାଏ ନକିଣିଲେ ଆଉ କିଛି ଚଳିବନାହିଁ ।

ତାଁ ଗୋଡ଼ ଠିପେଇ ପକେଇଲା ବେଳକୁ ବାଲ୍‌ଟିଟା ଟଣ୍‌କିନା ବାଜିଯାଉଥାଏ । ପାଟମାଳ ଦାସଙ୍କ ପଦେ କହି ଦେଇ ପୋଖରୀକୁ ପାଣି ପାଇଁ ଗ୍ଲଲି ।

ପୋଖରୀ ଆରପାଖେ ଟାଙ୍ଗରା ମୁଣ୍ଡିଆଟା ଉପରେ ଦି' ସ୍ୱରଟା ବଡ଼ ବଡ଼ ପଥର ଢିମା ଢିମା ହୋଇ ପଡ଼ିରହିଛି । ସେଇଠୁ ଏଇ ମାତ୍ରଅନ୍ଧାରୁଆରୁ ଗୋଟାଏ ଅଣ୍ଡିରା ବିଲୁଆ ନିସ୍ତୁଟିଆ ଡାକଟାଏ ଛାଡ଼ିଦେଲା । ତା'ପଛକୁ ତା' ପଛ ଆଉ କୋଡ଼ିଏ କି ପଚିଶ ମିଶି ରୁହେଇ ରୁହେଇ ଦି ସ୍ୱରଥର ଡାକଦେଲେ । ତା'ପରେ ଏମିତି ଗୋଟାଏ ନିସ୍ତବ୍ଧ ହୋଇଗଲା ଯେ ଦାସଙ୍କ କେଜାଣି କାହିଁକି ମାଡ଼ିପଡ଼ିଲା ପରି ଲାଗିଲା । ଟିକିଏ ଛନଛନିଆ ଲାଗିଲା । ସେ ଏପଟ ସେପଟ ଟିକିଏ ଗ୍ୱହିଁଲେ । ଆଉ ଲୁଚେଇଲେ କ'ଣ ହେବ ? ତାଙ୍କ ପ୍ରକୃତରେ ଡରମାଡ଼ୁଛି । ଛି ଛି, କ'ଣ ସତେ ମୋହ ମଣିଷର ଏ ଜୀବଟା ପ୍ରତି ! ଓହୋ, ପିଲଙ୍କ ଆଉ କ'ଣ କହିବା ! ମୁଁ ଆସି ବୁଢ଼ା ହେଲି—ମୋତେ ପୁଣି ଅନ୍ଧାର ହୋଇଗଲେ ବା ଏମିତି ନିସ୍ତୁଟିଆ ହୋଇଗଲେ ଡରମାଡ଼ୁଛି ! ମଣିଷ କାଳେ ମରିଯିବ ବୋଲି ସିନା ଏତେ ଡର ! ଆରେ ଯାଃ, ଏ ପୃଥିବୀରେ କିଏ ସ୍ୱାପ ତମ୍ବା ମୁଣ୍ଡ ବାନ୍ଧି ରହିଛି ନା ରହିବ ? ମରିଗଲେ ମରିଯିବ ଏବେ, କ'ଣ ହୋଇଗଲା ସେଇଠୁ ! ସୃଷ୍ଟି କ'ଣ ଜଣେ ମରିଗଲେ ଗୋଡ଼ମାଟି ହୋଇଯିବ ! ତେବେ ଏତେ କାହିଁକି ଆଉ ଡରିବହେ ?

ଖୁବ୍ ପାଟି କରି ଦାସେ 'ମନବୋଧ ଚଉତିଶା'ରୁ କିଛି ଆଉଡ଼ାଇଲେ –

"କହଇ···ମନ ଆରେ···ମୋ ବୋଲ···କର···
କଳା ଶ୍ରୀମୁଖ ବାରେ···ଦେଖିବା···ଗ୍ଲଲ···ରେ···
କଳା ଶ୍ରୀମୁଖ ବାରେ ଦେଖିବା ଗ୍ଲଲ ।

କେତେ ଧନକୁ ମନ···ବାନ୍ଧନ୍ତୁ···ଆଣ୍ଠ
କ ଯେଉଁଥିବୁ ଚୋର···ଛୁଟିଲେ···ଘଣ୍ଟ···ରେ ··
କ ଯେଉଁ ଥିବୁ ଚୋର ଛୁଟିଲେ ଘଣ୍ଟ ।"

"ବୋଲନ୍ତି ଆଜ୍ଞା, ଏ 'ମନବୋଧ ଚଉତିଶା' କୋଉକାଳେ ଯାଇ ଅବଧାନେ ଆମକୁ ପଢ଼େଇଥିଲେ । ପଦମାନ ମନେଅଛି ସିନା, ତାକୁ ଗାଉଛୁ କଏ ? ଏ ଯେଉଁ ପଦ, ସ୍ବାକୁ ଅଭ୍ୟାସ କରି ପଢ଼ିଲେ ମନ ଆଜ୍ଞା ବଳେ ସଂସାରରୁ ଛାଡ଼ିଯିବ ନା !"

"ସତ ହେ ଯାହା କହିଲ ।"

"ଆପଣ ବୋଲନ୍ତୁ ଆଜ୍ଞା, ମୁଁ ଏ ପାଣିଟା ଗୁଛେଇ ଦେଇ ଆସୁଛି ।"

"ଘର···ଘରଣୀ ଦେହ···କଲାଉ···ଥି···ବେ
ଯେଉଁ ବନ୍ଧୁ କୁଟୁମ୍ବ···ଶୁଙ୍କ ହୋଇବେ ରେ···।"

ଇସ୍, କେତେ ସତ କଥା ସ୍ବାପ ! ମଣିଷ ତୁଚ୍ଛାରେ ତା' ହେଲେ ତାଙ୍କ ପାଇଁ ପାଣ୍ଡି ହେଉଛି ? ଏସବୁ ସତରେ କେହି କାହାର ନୁହନ୍ତି ? ଯେଝା ରାସ୍ତାରେ ସେ ଚାଲିଛି ! 'ମିଛ ମାୟା ଏ ସଂସାର, କେହି ନୁହନ୍ତି କାହାର ।' ସ୍ବାଡେ ଏମିତ କହିଲି, ବଇଲ—ସବୁ ନିଜ ନିଜର କର୍ମ ପାଇଁ ଦାୟୀ, କେହି କାହା ପାଇଁ ଭାବିବା ଲୋଡ଼ାନାହିଁ ।···ଏ ସମସ୍ତ ଛାଡ଼ ମନକୁ ଓଲ୍ଟେଇ ଆଣ । ପୁଣି ତେଣେ କହୁଛି—କୁଟୁମ୍ବୀ ହେଲେଠୁ ତାଙ୍କୁ ପାଳିବା ପୋଷିବା ହେଲା ତୁମର ଧର୍ମ ।···ବଡ଼ ଜଟିଳ କଥା ସ୍ବାପ !···ଏଥିରୁ କାହାକୁ କରିବ, କାହାକୁ ବା ନ କରିବ ହେ !···ଅଃ, କିନ୍ତୁ ଅସଲ କଥାଟା ସେଇଠି ନାହିଁ ଯେ, କଥା ହେଲା ଆଉ ପାଞ୍ଚ ଜଣଙ୍କ ସାଙ୍ଗେ ମିଶି ରହିଲାଠୁ ସେମାନେ ଯେମିତ କରିବେ ଏ ମଣିଷ ମଧ୍ୟ ସେମିତ କରିବାକୁ ବାଧ୍ୟ । ଏକୁଟିଆ ରହିବାକୁ ସାହସ ନାହିଁ ବୋଲି ଏକାଠି ରହିବା ଗୋଟିଏ ସୁବିଧା ନା ଆଉ କ'ଣ ? ଜୀବନରୁ ଅଧେ ଲୋକକହିସାକୁ ଡରି ମଣିଷ ପ୍ରାଣପଣ କରି ପିଲାଗୁଡ଼ାଙ୍କୁ ପୋଷେ । ବାକି ଅଧିକ ଆଶାରେ ପୋଷେ; କାଳେ ତାର ଦୁର୍ବଳ ବୃଦ୍ଧାବସ୍ଥାରେ ପୁଅହୋଇ ପଚାରିବ, ପୋଷିବ, ପାଳିବ । ତା ଭିତରେ ଅବଶ୍ୟ ରହିଛି ମୋହ । 'ମୋର' ବୋଲି କହିବାର ଅଧିକାର ଯଦି ନ ଥାନ୍ତା, ଆଉ ଅନ୍ୟ ପଞ୍ଚଙ୍କ ପରି ଦାୟିତ୍ୱ ମଧ୍ୟ ନ ଥାନ୍ତା ତାକୁ ପୋଷି ପାଳି ବଞ୍ଚେଇବାକୁ । ମାତ୍ର ମାୟା କେମିତ ଜଡ଼ିଛି ମଣିଷକୁ ଯେ ସେଗୁଡ଼ାକୁ ଦେଖିଲେ ତ ମନ ଆପେ ତରଳି ଯାଉଛି ।···ଜଟିଆଟା ନୂଆ ଜାମାଟାଏ ପିନ୍ଧିଲେ କି ଭଲ ପିଠା ହେରିକା ଆସିଲେ, ବଉଁଶପାକ ଏକାଠି ବସି ଖାଇଲେ, କେମିତ ଗୋଟାଏ ଆନନ୍ଦ ଆସେ ନାହିଁ ନା ! ······ଆସିବ ନାହିଁ କେମିତଆ ମ ! ସେଗୁଡ଼ାକ ହେଲେ ପରା ଆତ୍ମାକୁ ଜାତ । କିନ୍ତୁ ଏତେ ଜ୍ଞାନୀ ଲୋକ ବୁଢ଼ା—ସେ କହୁଛନ୍ତି ଏସବୁ ମିଛ ! ଏଥିରେ ଯଦି ଥରେ ମଜ୍ଜି ଯାଇଛ ଆଉ ଉବୁରିବା କଷ୍ଟ । ତା ବୋଲି ସନ୍ନ୍ୟାସୀ ହୋଇଯିବାକୁ ତୁମକୁ କେହି କହୁ ନାହିଁ । ତା' ହେଲେ ତ ହାରିଯାଇ ସଂସାର ଛାଡ଼ିଦେଲ ବୋଲି ଜଣାପଡ଼ିବ । କିଛି ହେଲେ ଅବହେଳା ନ କରି ଗୃହୀ ଧର୍ମ କର । ମାତ୍ର ମନ ଥାଉ ନୀଳାଚଳରେ । କୁଟୁମ୍ବ କରିଛ । ତୁମ ଘରେ ସମସ୍ତଙ୍କର ତୁମ ଉପରେ ଅଧିକାର ଅଛି । ସେ

ଅନୁସାରେ ଯେ ଯାହା ଭାଗ ଜିନିଷ ନେବେ । ସମସ୍ତଙ୍କୁ ସମାନ ଅନୁପାତରେ ପୁଣି ନିଜକୁ ବାଣ୍ଟିଦେବାକୁ ହେବ । ବାହାରେ ବାହାରେ ଏ ଶରୀରଟାରୁ ଯାହା ଆଦାୟ ହେବ ସେତିକରେ କେବଳ ତାଙ୍କର ଅଧିକାର । କିନ୍ତୁ ସାବଧାନ ! ତୁମ ଆତ୍ମା ପାଖରେ ଯେମିତି ଏସବୁ ଯାଇ ପହଞ୍ଚି ନପାଆନ୍ତି । କୁଣିଆ ଯେତେ ଆସିଲେ ଯୁଦ୍ଧା ତୁମ ଘରଦ୍ୱାର ପିଣ୍ଡାରେ ବିଛେଇ ରାତିଏ ଶୋଇବେ ନା, ତାଙ୍କୁ ତ ଆଉ ଦାଣ୍ଡଘରେ ନେଇ ପୂରେଇବ ନାହିଁ ।

ଏସବୁ ସତ ଯେ ଆଜ୍ଞା, ମାତ୍ର ମନଟା ତ ଶରୀରଧର୍ମୀ ନା ! ସେଇଟା ଆଉ ସ୍ୱାଠୁ ଭିନ୍ନ କ'ଣ ହେଲା ? ମନରେ ତ ଆଗ ଏସବୁ ଆସନ ମାରି ବସିଛନ୍ତି ବୋଲି ସିନା ମନ ଚଳଉଛି ଏ ଶରୀରକୁ, ନ ହେଲେ ଜଡ଼ ଦେହ କ'ଣ ଆପେ କିଛି କରନ୍ତା ?

ବସିଗଲେ ବୁଢ଼ା ଟିକିଏ ଏଇଠି ସ୍ଥିରହୋଇ । ତା'ପରେ ଅଳ୍ପ ହସି କହିଲେ, "ସତ, ଯେଉଁ ମନକଥା ତୁମେ କହୁଛ ନା ସେଇଟା ସ୍ଥୂଳ ମନ—ସେଇଟା ଗୋଟାଏ ଇନ୍ଦ୍ରିୟ । କିନ୍ତୁ ଆଉ ଗୋଟାଏ ସୂକ୍ଷ୍ମ ଚେତନା ତୁମ ଭିତରେ ଅଛି । ତାକୁ ଚିତ୍ତ କହନ୍ତି । ସେଇଟାକୁ ଶୁଦ୍ଧ ରଖିବାକୁ ହେବ । ବାହାରେ ଇଆଡ଼େ ଯାହା ହେଉଛି ହଉ; ମାତ୍ର ଭିତରେ ଶାନ୍ତ ଥାଉ ।"···ଏଗୁଡ଼ାକ କ'ଣ ଏତେବେଳଯାଏ ମତେ ସମଝାଗଲା ? ମାତ୍ର ବୁଢ଼ା ଅସଲ ଗଞ୍ଜେଇ କହୁଛନ୍ତି । ଯେମିତି ପଣ୍ଡିତ ହେଲେ ଯାଇ ତାଙ୍କ କଥାର ଅର୍ଥ ବୁଝିବ ନା, ଏମିତି ଆମ ଭଳି ? ତୁଃ !···ଆଉ ଗୋଟିଏ ଭଲ କଥା କହିଲେ ବୁଢ଼ା । କହିଲେ, "ମଣିଷ ଭିତରେ ପଶୁ ସ୍ୱଭାବ ପୂରିରହିଛି । ସେ ଦୃଷ୍ଟିରୁ ମଣିଷ ଯେ ପଶୁ ସେ । କିନ୍ତୁ ଏତିକି ଖାଲି ପ୍ରଭେଦ ଯେ ବଣର ପଶୁ ଅମାଣିଆ ହୋଇ ହିଂସ୍ର ହୋଇଯାଏ । ଆଉ ମଣିଷ ମନର ପଶୁକୁ ପୋଷା ମନେଇବାକୁ ଜଣେ ଅଛି । ସେଇଟା ହେଲା ବିବେକ, ବୁଦ୍ଧି । ମାତ୍ର ଯେତେ ପୋଷ ମାନିଲେ କ'ଣ ହେବ—ପଶୁଟା ତ ଫେର୍ ପଶୁ । ତାକୁ ତା ଆହାର ଗଣ୍ଡାକ ନ ଯୋଗାଇଦେଲେ ସେଇଟା ଗର୍ଜିବ, ରହିଯିବ ଦେବ ନାହିଁ । ଗୋଟିଏ ଉଦାହରଣ ଦେଉଛି ଶୁଣ । ଗୋଠେ କ୍ଷେକଲ ଗୋରୁ ସକାଳୁ ଅଡ଼େଇନେଇ ଗୋପାଳ ଯେମିତି ତାଙ୍କୁ ଚରିବା ପଡ଼ିଆରେ ଛାଡ଼ିଦେଇ ନିଜେ ଗଛମୂଳେ ବସି ବଇଁଶୀ ବଜାଏ, ସେମିତି ସବୁ ସଂସାରର ଜଞ୍ଜାଳକୁ ମୁଠେ ଖାଇବାକୁ ଦେଇ ନିଜେ ଚିତ୍ତଶୁଦ୍ଧିରେ ଲାଗିଯାଅ । ସେଗୁଡ଼ାକୁ ଚରିବାକୁ ନ ଦେବା ଯେତିକି ଭୁଲ୍, ତାଙ୍କ ପିଛୁ ସର୍ବଦା ଲାଗି ରହିବା ମଧ୍ୟ ସେତିକି ଭୁଲ୍ ।"

ବାଃ ! ଏଇଟା ମନରେ ଗାରି ହୋଇ ରହିଲା । ବଡ଼ ସତ କଥା କହିଛନ୍ତି ବୁଢ଼ା । ସତ କଥା କହିଛନ୍ତି ବୁଢ଼ା ଏମିତି ସିନା ପଣ୍ଡିତ ହବ ! ଇଏ, ନଇଲେ ସେ ମାଳକଣ୍ଠିଆ । ରାଣୀ ଯାଆନ୍ତି ହାଟକୁ ନା କାଣୀ ଯାଆନ୍ତି ହାଟକୁ । ଛାଡ଼, ମାତ୍ର ବୁଢ଼ା ତାଙ୍କ ନିଜ କଥାରୁ ଉଦାହରଣ ସବୁ ସିନା ଦେଲେ, ଆମ କଥା କ'ଣ ସେ ଆଉ ବୁଝୁଛନ୍ତି କି ? କଉ, ଆମେ ପରା ହେଲୁ ସବୁଥିକି ନିଅଣ୍ଟିଆ । ସ୍ୱାଡ଼େ ପଇସା ବଳ ନାହିଁ, ମନ ବଳ ନାହିଁ, ବୁଦ୍ଧି ବଳ ମଧ୍ୟ କଣା । ଜନ ବଳ କଥା ଆଉ କ'ଣ କହିବା ? ସେ ଯାହା କହିଲେ ଗୋରୁ ଚରେଇବା କଥା, ଯାର ସେମିତିଆ ଚରିବୁଲି ଥିବ ସିନା ! ଯାର ନାହିଁ ସେ ତ ଏ ଶୁଖିଲା ପଡ଼ିଆରୁ ନେଇ ଆର ଶୁଖିଲା ପଡ଼ିଆରେ ଗୋଠ ପକାଉଥିବ—ତାକୁ ପୁଣି ବେଳ କାହିଁ ବଇଁଶୀ

ବଳେଇବାକୁ ?···ବଡ଼ କଷ୍ଟ ଆଜ୍ଞା, ଆମ୍ଭ ପାଇଁ । ଆପଣ ବୁଝନ୍ତୁ । ଅବଶ୍ୟ ଆପଣ କହିଲ ପରି ଅଭାବରେ ପ୍ରଭୁଙ୍କୁ ବେଶି ମନେପଡ଼ନ୍ତି । ଯେତେ ବେଶି ଜଞ୍ଜାଳ ଘେରିଯାଉଥିବ, ଯେତେ ଝିକଏ ଡେଇଁଥିବ ମଣିଷ, ତାକୁ ସେତେ ଅସହାୟ ବୋଧ ହେଉଥିବ ଏବଂ ମନ ଭିତରୁ ସେତେ ସେ ପ୍ରଭୁଙ୍କ ଉପରେ ନିର୍ଭର କରୁଥିବ । ମାତ୍ର ଆଖି ବୁଜିହୋଇଗଲେ ମାୟା ତାକୁ କେଉଁଠୁ ନେଇ କେଉଁଠି ଥୋଇବ ତାର ହିସାବ ନାହିଁ ।

"ମୋତେ ଟିକଏ ଉତ୍ତର ହୋଇଗଲା ଆଜ୍ଞା, ଆପଣ ଆତୁର ବସିଛନ୍ତି । ମୁଁ ଭାବିଲି ଘଣ୍ଟା ଖାଇ ଏକାଥରକେ ଚାଲିଆସିଲେ ଯାଏ । ଏ ଜାଗାଟାକୁ ଆଜ୍ଞା, ଏଡ଼େ କାଳର ପବନ, ଆଉ କହିବା କଥା ନାହିଁ । ଘଡ଼ିଏ ବସିଗଲେ ନିଦ ଝାଙ୍କି ଆସିବ ।···ଓ୍ୱହୋ, ହରି ହରି !"

ପିଣ୍ଡାର ଆର ପାଖକୁ କାନ୍ଥକୁ ଆଉଜି ବସିପଡ଼ିଲା ପାଟମାଳି ।

"ଆପଣଙ୍କ ଚଟିରୁ ଉତ୍ତର ଘରୁ କାଲି ସୁଦ୍ଧା ଆସିଯିବ ଆଜ୍ଞା ! ବାଟ ହେଉଛି— ଜଣେ ଚାଲିଯାଇ ଚାଲିଆସିବ । ହେଲେ ଡାକରେ ଚଠି ପଡ଼ିଲେ ସେଇଠି ପହଞ୍ଚୁ ପହଞ୍ଚୁ, ଦିନ ଦିନ ।"

"ସତହେ, ମନଟା ସମୟସମୟରେ ବଡ଼ ଘାଣ୍ଟି ହେଉଛି । ଏ ସଂସାରରେ କେହି କାହାର ନୁହନ୍ତି ଟି ! ମାତ୍ର ଏ ଯେଉଁ ମାୟା ଲଗେଇଛୁ ନା, ସେଥିରେ ଘାଣ୍ଟି ନ ହୋଇ ଆଉ ବାଟ ନାହିଁ । ବୋହୂଟାର ଏଣେ ଏ ଅବସ୍ଥା, ପୁଅ ଘରେ ନାହିଁ, ନହେ ଅଛନ୍ତି ସେ— ସେ ଆମ ଶଳା ଲେଖା ହେବେ—ସେ ବି ସେଇ ଅଳ୍ପ ବୟସ ଲୋକ ନା ! ତାଙ୍କୁ କ'ଣ ଜଣା ? ଏଥିରେ ମଣିଷ ଦି' ପଇସା ପାଇବ ବୋଲି ଧାଇଁଆସିଲା । ହଉ, ସବୁ ସେ ଧବଳେଶ୍ୱରଙ୍କ ଇଚ୍ଛା । ରଘୁନାଥଙ୍କୁ ପୁତ୍ର-ସମ୍ପତ୍ତି ଦିଅନ୍ତୁ, ତାଙ୍କରି ପାଖରେ ଆସି ସେ ବାଳପକେଇବ ।"

"ଏଇ କଥା ! ହେଲା ବୋଲି ଜାଣନ୍ତୁ । ଏଠି ତ କେହି କିଛି ମନାସି ଆଉ ବିଫଳ ହୋଇ ନାହିଁ !"

କିଛି ସମୟ କେହି ଆଉ କିଛି କହିଲେ ନାହିଁ ।

"ଅଚ୍ଛା ଆଜ୍ଞା, ମୁଁ ତ ମୂର୍ଖ ଲୋକ । ପଢ଼ାଲେଖା କିଛି ନାହିଁ; କେବଳ ଧବଳେଶ୍ୱରଙ୍କ ସେବା ହେଲା ମୋର ଧର୍ମ । ଗୋଟିଏ କଥା କାହାକୁ ପଚାରିବ ପଚାରିବ ବୋଲି କୋଉ ଦିନୁ ଭାବୁଛି, ପଚାରି ପାରୁ ନାହିଁ । ବୁଢ଼ାଙ୍କୁ ପଚାରନ୍ତି ଯେ, ଡର ମାଡ଼େ । ···କଥା କ'ଣ ବୋଇଲେ, ଯେତେ ଲୋକ ସବୁ ଏଠି ଆସି ଗଦାହୁଅନ୍ତି, ସମସ୍ତେ କ'ଣ ହେଲେ ଆଗରୁ ମନାସି ଅସିଥାନ୍ତି । ଗୁଡ଼ାଏ ଡାକହାକ ସେ ଗୁହାରି ଜଣାଇଯାଆନ୍ତି । ମୋତେ ଟିକଏ ବୁଝାପଡ଼େ ନାହିଁ । ମୁଁ ଏଠି ଆସି ତିରିଶ ବର୍ଷ ଉପରେ ରହିଲିଣି ଆଜ୍ଞା, ମୋର କେବେ ହେଲେ କ'ଣ ମନାସିବାକୁ ମନ ଡାକନାହିଁ । କାହିଁକି କେଜାଣି ଲାଜ ମାଡ଼େ ମୋତେ । ଠାକୁରଙ୍କୁ ତ ଦେଖିବ, ଆଉ ଦେଖୁ ଦେଖୁ ଗୋଟେ କ'ଣ ମାଗିବ ମ ? ତା ପୁଣି ଆଗରୁ ଠିକ୍‌ଠାକ୍ ଭାବି ଅସିଥିବ । ଇଏ କ'ଣ କଥା ଆଜ୍ଞା !"

"ଇସ୍, କେଡ଼େ ଗୁଣ କଥା ଲୋକଟା ପଗ୍ଭରିଦେଲା ହୋ !" ଭାସେ ଟିକଏ ଅଟିଗଲେ । ସେଇଠୁ ପାଟମାଳୀକୁ ଗ୍ଭହିଁ କହିଲେ, "ବୃଦ୍ଧା ସେଦନ କହୁଥିଲେ ଯେ ଗ୍ଭରିପ୍ରକାର ଲୋକ ଏଠାକୁ ଆସନ୍ତି—ଯା'ର ବିପଦ ପଡ଼ିଥିବ, ଯେ ଜାଣିବାକୁ ଓ ବୁଝିବାକୁ ଗ୍ଭହୁଁଥିବ, ଯେ କିଛି କାମନା କରୁଥିବ ଏବଂ ଯେ ଜ୍ଞାନୀ—ଏମିତି ହେଲେ ଗ୍ଭରିପ୍ରକାର । ପ୍ରଭୁ ସମସ୍ତଙ୍କ ମନକଥା ଜାଣନ୍ତି, ତାଙ୍କୁ ସେହି ଅନୁସାରେ ଫଳ ମଧ୍ୟ ଦିଅନ୍ତି । କହିଛି ପରା—'ଯାର ମନ ଯେଡ଼େ, ତାର ପ୍ରଭୁ ତେଡ଼େ' । ବାକି ଏଥିରୁ ପଛେ ଯାହା ପାଟିରୁଣ୍ଡ କରନ୍ତୁ, ସେଇଟା ଖାଲି ଅଭ୍ୟାସ ମେଣ୍ଟେଇବା କଥା—ସେଥିରେ କିଛି ଅର୍ଥ ନାହିଁ, ଲଭ କ୍ଷତି ମଧ୍ୟ ନାହିଁ ।"

"ଉଚିତ, ଉଚିତ ଆଜ୍ଞା, ଯାହା କହିଲେ ଆପଣ ।"

"ବୁଝିଲି ପାଟମାଳୀ ! ତମେ ଏକା ସୁଖୀ । ଆମ ଭଳି ଆଉ ହଜାରେ ପ୍ରକାର ଜଞ୍ଜାଳ ତୁମର ନାହିଁ । ତୁମେ ଏ ସଂସାରରେ ନ ପଶି ବଡ଼ ଭଲ କରିଛ । ତୁଚ୍ଛାଟାରେ ଖାଲି ଯାଣ୍ଡି ହୋଇଥାନ୍ତି ।"

"ନାହିଁ ଆଜ୍ଞା, ସେକଥା ଆପଣଙ୍କ ପରି ଜ୍ଞାନବନ୍ତ ଲୋକ କ'ଣ କହୁଛନ୍ତି ! ମୋର ହେଲା ମୂର୍ଖ । ମୁଁ କ'ଣ ଆଉ ଆପଣଙ୍କୁ ବଢେଇପାରିବ ? ହେଲେ ଆଜ୍ଞା, ସଂସାରରେ ନ ପଶିଲେ କ'ଣ ସଂସାର ଛାଡ଼ୁଛି ? ମୁଁ ତ ଟୋକା ବୟସରୁ ଏଇଠି ଅଛି, ମନରେ ପାପ ପଶି ନାହିଁ ବୋଲି କ'ଣ ମୁଁ କହି ପାରିବି ? ଅପାରଗ ଲୋକ ଆଜ୍ଞା, ଘର ସଂସାର କରିବା ତ ସହଜ ନୁହେଁ । ହେଲେ ଏକୁଟିଆ ରହିଲେ କ'ଣ ମନ ମାନିଲା ? ଶେଷକୁ ମୋର ଗୋଟିଏ ଭଉଣୀ ଲେଖା ହେବ—ତାର ପୁଅଟିଏ ଝିଅଟିଏ ଆଣି ପାଖରେ ରଖିଲି । ତାଙ୍କ ପାଇଁ ଯାହା ମୋ ସାଧ୍ୟ, ତାହା କଲି । ପୁଅଟି ପାଠ ପଢ଼ି ନୌକରି କଲଣି, ଝିଅ ଶାଶୁଘରେ ସୁଖରେ ଅଛି । ସଂସାର ନ ଥାଇ ମୋର ସଂସାର ଅଛି, ଜଞ୍ଜାଳ ଅଛି । ଜୀବ ଥିବାଯାକେ ଜଞ୍ଜାଳ ଥିବ । ମାତ୍ର ବୃଦ୍ଧାଙ୍କୁ ଏଗୁଡ଼ାକ କିଛି ଧରିନାହିଁ ପରି ଲଗୁଛି । ତାଙ୍କର ଥାଇ ମଧ୍ୟ ନାହିଁ । ସେଇଆ ହେଲା ଅସଲ କଥା ଆଜ୍ଞା ! ମନ ଭିତରୁ ଯେ ସଂସାର କଥା କାଢ଼ିଦେଇପାରୁଛି, ସେଇ ଏକା ସୁଖୀ । ବାକି ଆମ ପରି ଅଜ୍ଞାନୀ··"

ଆରେ ହେ ! ଏଇଟା ତ ଦେଖୁଛି ପଣ୍ଡିତଟାଏ । ଏଯାକୁ କ'ଣ ମୁଁ ମୂର୍ଖ ବୋଲି ଠଉରେଇଥିଲି ! ଦେଲା କି ମତେ ପାଠ ପଢ଼େଇ । ସତ କଥା କହୁଛି ଏଯାପ, ମନ ଭିତରୁ ସଂସାର କଥା କାଢ଼ିଦେବାକୁ ହେବ ।

କହିଲେ, "ଯାହା କହିଲ ପାଟମାଳୀ, ସତ—ବୁଝିଲି, ଖାଣ୍ଟି ସତ ।"

ବଡ଼ କଅଁଳ ଥଣ୍ଡା ପବନ ବୋହୁଥାଏ । ପାଟମାଳୀ କ'ଣ ମନକୁ ମନ ଆଉ ଦି' ଗ୍ଭରି ପଦ କହୁଥିବ, ତାପରେ କାନ୍ଥକୁ ଆଉଜି ଘୁମେଇଲା ।

ପାହାଡ଼ ଉପରେ ଲକ୍ଷେ ତାରା ।

ଅଚଳ ପାହାଡ଼ଟା ସତେ କ'ଣ ନ ସହୁଛି ! ଖରା-ବର୍ଷା-ଶୀତ ତା ପିଠିରେ କୁଢ଼େଇ ହେଉଛି ଶହ ଶହ ବର୍ଷ ହେଲା । ମାତ୍ର ଗର୍ଭ ତାର ପଲ୍ଲବ, ସେ ଫାଟିଯାଇ ତାର ଭିତରେ ସ୍ୱୟମ୍ଭୁଙ୍କୁ ସ୍ଥାନ ଦେଇଛି ।

ଏ ପୋଖରୀଟା ହେଲେ ଉଣା ! ଯେତେ ଯା'ର ପାଣି ଲୋଡ଼ା ତାଠୁ ନେଇଯାଉଛନ୍ତି । ଲହଡ଼ି ହେଲେ ଖାଲି ଉପରେ ନା, ଭିତର ପାଣିଟା କ'ଣ ଆଉ ହଲୁଛି କି ? ସେ ସବୁ ସ୍ଥିର ।

ମାସେ ଏ ଘରଟା ଭିତରେ ରହି ଏ ମସ୍ତିଷ ପଚେଇବ, ଘରଟା ପଡ଼ିରହିବ । ସେଇ ପ୍ରକାର ଏ ଜୀବନଟା । ଗୁଡ଼ାଏ ମାୟା ମୋହ ଏଥିରେ ଯୋଡ଼ି କାହିଁକି ଆଉ ତାକୁ ଜଟିଳ କରିବା ?

ପହରକିଆ ବିଲୁଆ ଭୁକିଲେ । ଗୃହଆଡ଼ୁ ଗୁମୁରି ଗୁମୁରି ସେଇ ଶବ୍ଦ ଦାସଙ୍କୁ ଆଉ ସ୍ଥିର ହୋଇ ବସିବାକୁ ଦେଲାନାହିଁ । ଦାସେ ଉଠି ଠିଆହେଲେ ।

ପାଟମାଳି ଗୋଡ଼ ଲମ୍ବେଇ କାନ୍ଥକୁ ଆଉଜି ଘୁଙ୍ଗୁଡ଼ି ମାରୁଥାଏ ।

"ହେ ପାଟମାଳି—ଯ ହେ, ଘରକୁ ଯ—ହଇହେ···ଶୁଣିଲ ? ଉଠ ।"

"ଓହୋ···ଦେଖିଲେ ! ଆଖିଟା କେମିତି ପଡ଼ିଗଲା । ଏ ପବନର ସବୁ ଗୁଣ ସେଇଆ ।···ହଉ ବେଳ ହେଲାଣି, ଯାଆନ୍ତୁ ଶୋଇଯିବେ ।"

ପାଟମାଳି ନିଦରେ ଟଳଟଳ ହୋଇ ତା ଘରେ ପଶି କବାଟ କିଳିଦେଲା ।

ଦାସେ ମନକୁମନ କହିଲେ—

"ପ୍ରଭୁ ହେ, ଏ ଅଜ୍ଞାନୀକୁ ପାରି କର ଜଗନ୍ନାଥ !

'ପତିତପାବନ ବାନା ଆଉ କେତେ ବେଳକୁ
ଭାସିଗଲି ଭବଜଳେ ନାବ ଦିଅ କୂଳକୁ ।'

ହଉ, ତୁମ ଇଚ୍ଛା ।"

# ନକୁଳ ଭାବ

"କ'ଣସବୁ ପିଲାଙ୍କ ପାଇଁ ଆଣିଲେ ଆଜ୍ଞା ! ସେ ଦ'ପହରର ସମୟରୁ ଗଲେ ଯେ ଆସି ରାତ ଘଡ଼ିଏ ହୋଇଗଲା । କଅଣ ଏମିତ କିଣୁଥିଲେ କି ?"

ଧବଳେଶ୍ୱରଙ୍କଠାରେ ବରଣ ହେବା ସନାତନ ଦାସଙ୍କ ଆଜି ସମାନ ମାସେହେଲା । ମହାଜନ ବେଶି ବେଳ ଷ୍ଟେକରେ ରହିପାରିବ ନାହିଁ ବୋଲି ସହଳ ଫଳଦାନ ଆଜି ସରିଗଲା । ଦାସେ ଦକ୍ଷିଣା ଗଣ୍ଡାକ ଧରି, ବସାରେ କ'ଣ ଗଣ୍ଡେ ଫୁଟେଇ ଖାଇଛନ୍ତି କି ନାହିଁ, ବାହାରିଲେ ମଦନପୁର ବଜାରରୁ ଜିନିଷପତ୍ର କ'ଣ ଦି'ଟା କିଣିବେ । ବାସ୍ତବିକ ବୁଲି ବୁଲି ଆସି ରାତ ଘଡ଼ିଏ ହେଲାଣି । ପାଟମାଳି ବସ୍ତିରୁ, ସେ ଯେମିତ ଆସି ପହଞ୍ଚିଛନ୍ତି, ଟ୍ରେଟେଇ ଟ୍ରେଟେଇ ତାଙ୍କ ବସା ଭିତରକୁ ପଶିଆସିଲା ।

"କ'ଣ ଆଉ କିଣିବା ? ଏଠି ବାବୁଭାୟା ହେଲେ ଯାଇ ପଶିପାରିବେ । ସ୍ୱାପ ଛୁଇଁଲେ ପଇସା । ଦାଳ ସତେ କେଡ଼େ ମହର୍ଗ ହେଲା ହୋ ! ଗାମୁଛା ଖଣ୍ଡେ ପାଞ୍ଚ ଟଙ୍କା । ଜାମା ଖଣ୍ଡେ ସାତ ଟଙ୍କା । କସ୍ତା ଖଣ୍ଡିକ ବାର ଟଙ୍କା କରି । କ'ଣ ଏଥିରେ କିଣିବ, କେମିତ ଚଳିବ କହିଲ ?"

"ଭଲ ଖାଣ୍ଟି ଜିନିଷ ମାତ୍ର ଯୋଗାଡ଼ କରି ଆଣିଛନ୍ତି ।...ଏଗୁଡ଼ାକ ସବୁ ଦୋହରା ବୁଣେଇ । ପାଣିରେ ପଡ଼ିଲେ ଆହୁରି ସୂତା ଫୁଲିବ । ଆଉ କ'ଣ ନଇଲେ ? ଜାଣି ମାଡ଼ି-ମକଚି ବର୍ଷେ ପିନ୍ଧିବ ସ୍ୱାକୁ । ଆଉ ସବୁ ଯାହା ମିଳୁଛି, ଖାଲି ଫାଳ...ବୁଢ଼ିଆଣୀ ସୂତା କାହିଁ ଲକ୍ଷ୍ୟ ହେବ !"

"ସେଥିରୁ ଗୁଡ଼େ କ'ଣ ଦେଖେଇଲେ ନାହିଁ କି ମତେ ? ତାକୁ ପିନ୍ଧିଲେ ତ ଦେହରେ ଲୁଗା ଅଛି ନା ନାହିଁ ମଣିଷ ଜାଣିପାରିବ ନାହିଁ । ପାଣି ପରି ସେଗୁଡ଼ାକ ସରୁ । ଅଷ୍ଟାଙ୍ଗ ଶରୀର ପଦାକୁ ଭେଦ ଦିଶିବ । ତାକୁ ପିନ୍ଧି ମହତ ହାରିବା କଥା ସ୍ୱାପ !"

"ସତ, ଯାହା କହିଲେ । ତାକୁ ପିନ୍ଧି ଭଲ କରି ଗୋଟେ ଛୁଙ୍କିଦେଲେ ଦଫଡ଼ା ହୋଇ ଧଡ଼ିରୁ ଚିରିଯିବ ପରା ! ସିଏ ପୁଣି ଅଧିକ ପଇସା—ଶୁଣିଃ ।"

"ତାକୁ ନବାଲୋକ ହେଲେ କ'ଣ କମ୍ ଅଛନ୍ତି ? ସବୁ ଦୋକାନରେ ପରା ଭିଡ଼ ହୋ ! ଏ ମୋଟାଲୁଗା ଦେଖିଲେ ତାଙ୍କ ନାକ ଟେକିହୋଇ ତାଳୁରେ ଲାଗୁଥାଏ । ସବୁ ପାତଳ ଦେଖି ଦେଖି ପଇସା ଗଣିଦେଉଥାନ୍ତି ।...କ'ଣ ଶୁଣିବ ? ହଉ ଛାଡ଼, ଯାହା ହେଲା, ହେଲା । ଟଙ୍କାଗୁଡ଼େ ପାଣିରେ ପଡ଼ିଲା ଜାଣ । ଉଠିବା—ବନ୍ଧାଛନ୍ଦା କରି ରଖିଦେଲେ

ପାହାନ୍ତିଆରୁ ଯିବା କଥା ।"

"ହେଲେ କା'ଲି ସକାଳୁ ଆପଣ ଯାଉଛନ୍ତି ନା ? ଆପଣ ମାନେ କାଲି ଏଇଠି ଥିବାରୁ ମଣିଷକୁ ମଣିଷ ପରି ଚିହ୍ନିଏ ଲାଗୁଥିଲା । ଏମିତି ଯୋଉ ଏକୁଟିଆକୁ ସେଇ ଏକୁଟିଆ । ହଉ, ସବୁ ତ ଭାଗ୍ୟ କଥା ।"

"ନୁହେଁ ଆଉ କ'ଣ ? ଦୈବୀ ଇଚ୍ଛା ନ ହେଲେ ଏ ମଣିଷ ହାତରେ କ'ଣ ହୁଅନ୍ତା ? ହଉ ହେଲା । ଏଇ ଧବଳେଶ୍ୱରଙ୍କ କୃପା ହେଲେ ଫେର୍ ଦେଖାହେବ । ଦେଖିଲ, ଖଣ୍ଡେ ଦଉଡ଼ି ଥିବ କି ତମ ବସ୍ତାରେ—ଏଗୁଡ଼ାକ ସବୁ ଏକାଠି ବାନ୍ଧନ୍ତେ ।"

"ଦେଖୁଛୁ ।"

"ଯାଃ, ଏଠି ପଳେଇବା ଏଥର । କେଉଁ ଯୁଗରୁ ପିଲାଗୁଡ଼ାଙ୍କୁ ନ ଦେଖି ମନଟା ଘାଣ୍ଟି ହେଲାଣି । ନଦେ ତ ଥିବେ ସବୁ କଥା ବୁଝିବାକୁ; ହେଲେ ବୋହୂ, ପିଲାଟାର କ'ଣ ହେଲା କ'ଣ ନାହିଁ ମଣିଷ ଜାଣିପାରିଲା ନାହିଁ । ...ଚୂନୁମା'ଟା ଯାପ ନପାରିଲା ମଣିଷ । ତା ଉପରେ ଏସବୁ ପଡ଼ୁଥିବ । ...ହଉ, ସବୁ ସେଇ ପ୍ରଭୁଙ୍କ ଇଚ୍ଛା ।"

"ଏଇଟା ହବ ନା ନାହିଁ ଦେଖିବେ ? ଆଉ ଗୋଟେ ଅଛି ଯେ ସେଇଟା ବହୁତ ମୋଟା ହେଇଯିବ ।"

"ହଁ—ଏଇଟା ଢେର୍ ସୁନ୍ଦର ହବ ହେ !"

"ମୁଁ ଆଜ୍ଞା, ଧରି ବାନ୍ଧିଦଉଛୁ, ଆଣନ୍ତୁ । ...ଏତିକି ନା, ଆହୁରି କ'ଣ ଅଛି ?"

"ନା, ଆଉ କୁଆଡୁ ଆସିବ ? ଲୋଟାଟା ଅଛି, ବାହାରପାଣି ହେବାକୁ ଯିବା । ସକାଳୁ, ସେ ମୁଣିଟାରେ ଥାନ ଅଛି, ପୁରେଇ ଦେଲେ ଯିବ ।"

"ଆଜି କ'ଣ ସେମିତି କରି ଖାଇଛନ୍ତି ନା ନାହିଁ ? ଏ ଓଳି ସେମିତି ଶୋଇବେ ? ...ମୁଁ ଆଣିଦଉଚି ଚୂଡ଼ା ଗଣ୍ଡେ—ଧୋଇ ଖାଇଦିଅନ୍ତୁ ।

"ନାହିଁ, ନାହିଁ, ଚୂଡ଼ାଚୂଡ଼ାଏ ରାତିରେ କାହିଁକି ଆଉ ଖାଉଥିବ ?"

"କାଲି ଏତେ ବାଟ ଚାଲି ଚାଲି ଯିବେଟି ! ନ ଖାଇ କେମିତି ଶୋଇବେ ? ...ଭଲ କଦଳୀ ଜଣେ ଆଜି ଆଣିଥିଲା, ସେଥିରୁ ଗଣ୍ଡେ ଆଣିଦେଉଚି । ଖଣ୍ଡେ ନବାତ ପକେଇ ଖାଇଦିଅନ୍ତୁ ।"

"ହଉ ଆଣ ତାହେଲେ । ତମେ ଯେଉଁ ମାର୍ଗରେ କହିଲଣି ସେଥିରେ କ'ଣ ନାହିଁ କରିହେଉଛି ? ତମଠୁ ହେଲେ ଦି'ଟା ଖାଇ ଯାଇଥିବା, ଆଉ ଦେଖାହେବ ନ ହବ !"

"ଏ କି କଥା ଆଜ୍ଞା ! ମୋର ପୁଣି ଗୋଟେ ଜିନିଷ କ'ଣ ? କେହି କାହାକୁ ଦଉ ନାହିଁ କି କେହି କାହାଠୁ ନଉ ନାହିଁ । ଈଶ୍ୱରଙ୍କ ଜିନିଷ ଆମେ ସମସ୍ତେ ବାଣ୍ଟି ଖାଇବା କଥା ।"

ଦାସେ ଗୋଡ଼ହାତ ଧୋଇବାକୁ ବାଡ଼ିଆଡ଼େ ଗଲେ । ସେ ସିନା ବାରିପାରୁ ନ ଥିଲେ, ତାଙ୍କୁ ସତେ ଖୁବ୍ ଶୋକ ହେଉଥିଲା । ହେଲା ଏବେ ଜଣେ ସ୍ନେହରେ ଗଣ୍ଡେ ଚୂଡ଼ା ଖାଇବାକୁ ଦେଲା, ତାକୁ କାହିଁକି ନାହିଁ କରିଦେବା ?

ହଠାତ୍ ମନେପଡ଼ିଗଲେ ଗଙ୍ଗାଧର ଶତପଥୀ । ତାଙ୍କର ସେ ତମ୍ବାତାର ପରି ଦେହ । ଝଣ୍ଟା ପରି ଏଡ଼େ ନାକ । ଦାସେ ତରବର ହୋଇ ସକାଳୁ ଗାଧୋଇ-ପାଧୋଇ ମହାଦେବଙ୍କ ପାଖେ ପହଞ୍ଚିଲାବେଳକୁ ବୁଢ଼ା ସେଇ କୋଣଟାରେ ପଦ୍ମାସନରେ ବସିଥିବେ । ଆଖି ଦୁଇଟାର ଦୃଷ୍ଟି ଯୁଗ ଭ୍ରୂଲତା ମଝିରେ ନିଶ୍ଚଳ ରହିଥିବ । ଦାସେ ଥମ୍‌କରି ଠିଆହୋଇ-ଯାଆନ୍ତି । ତାଙ୍କୁ ଦିଶେ, ପର୍ବତର ଆତ୍ମା ଯେପରି ତପସ୍ୟା କରୁଛି । କେତେବେଳକେ ନିଶ୍ୱାସଟିଏ ମାରି ଗୋଡ଼ ଚିପି ଚିପି ଯାଇ ପୂଜାଥାଳି ରଖନ୍ତି । ଅତି ସନ୍ତର୍ପଣରେ କିଛି ଶବ୍ଦ ନ କରି ତାଙ୍କ କାମ ଆରମ୍ଭ କରିଦିଅନ୍ତି ।

ଦାସେ ପାଦ ଧୋଇବାକୁ ନଇଁରହିଛନ୍ତି । ଏ ଭାବନା ମନରେ ହେଲାବେଳେ ହାତଟି ହାତ, ଗୋଡଟି ଗୋଡ଼ ରହିଯାଉଛି ।

"ଭଲ ପାଣି ମୁନ୍ଦାଏ ସେ ଆଡ଼ୁ ଆଣିଥାନ୍ତୁ ଆଜ୍ଞା, ଚଡ଼ାଟାକୁ ଧୋଇବେ ।"

ସ୍ୱପ୍ନରୁ ଉଠିଲା ପରି ଦାସେ ତରବର ଗୋଡ଼ ଧୋଇପକାଇଲେ ।

"ହଉ. ସେଇଠି ରଖିଦିଅ । ମୁଁ ଟିକିଏ ଅଣ୍ଟାପାଣି ହୋଇ ଆସୁଛି ।"

"ନବାତ ଟିକିଏ ନିଅନ୍ତୁ ହେବ ନା କ'ଣ ! ଯାହା ଥିଲି ଆଣିଦେଇଛି ।"

"ଓହୋ, ଯାହା ହେଲା, କ'ଣ ଚଳିଯିବ ନାହିଁ ! ସେଇଠି ଥାଉ ।"

ଦାଣ୍ଡିକବାଟ ଆଉଜେଇ ଦେଇ ପାଠମାଳି ଗ୍ଳେଟେଇ ଗ୍ଳେଟେଇ ଚାଲିଗଲା ।

ପିନ୍ଧା ଖଣ୍ଡିକ ଧୋଇ ଅଣ୍ଟାରୁ ଗାଧୋଇଲେ ଦାସେ । କିନ୍ତୁ ମନ ଭିତରେ ଯେମିତି ବସ୍ତ୍ର, ଲଜ୍ଜା, ଭୟ, ଭକ୍ତି ସବୁ ମିଶେଇ ଶତପଥୀଙ୍କୁ ସେ ବୁଝିବାକୁ ଚେଷ୍ଟାକରୁଛନ୍ତି ।

ଓଦା ଧୋତିଟାକୁ ଚପୁଡ଼ି ତା ଦେହରେ ମୁହଁ ପୋଛୁ ପୋଛୁ ଦାସେ ଘରକୁ ପଶିଲେ । କାନ୍ଥରେ ଦୁଇଟା କଣ୍ଟା ଆସିଲା ଦିନ ମାରିଥିଲେ, ସେଥିରେ ଟାଣି ଲୁଗାଟାକୁ ଶୁଖାଇଦେଲେ ।···ରାତି ଭିତରେ ଶୁଖିଯିବ ନାହିଁ କି ?

ମାସେ କାଳ ମଣିଷ ଏଇଠି ରହିଲା ଯେ ଏ ଭିତରେ ତିନି ଥର ମାତ୍ର ତାଙ୍କ ସାଙ୍ଗରେ ଆଳାପ ହୋଇଛି । ଆଚ୍ଛା, ଭଲା ସେ କ'ଣ ଏମିତି ଧ୍ୟାନ କରନ୍ତି ? ଆଉ କେମିତି ଏତେବେଳ ଧରି ଧ୍ୟାନ କରନ୍ତି ! ପଚାରିଲେ କ'ଣ ସେ କହି ନ ଆନ୍ତେ ! ମାତ୍ର ତାଙ୍କୁ ପଚାରି ଦେବାକୁ ଜଣା ହେଲେ ସାହସ ଲୋଡ଼ା !···ଛାଡ଼, ଅଦା ବେପାରୀର ଜାହାଜ ମୂଲରେ କ'ଣ ଥାଏ ? ବିଧାତା ତ ସ୍ୱାପ ମୂର୍ଖ କରି ଜନ୍ମ କଲା । ସଂସାରରେ ଘାଣ୍ଟି ହୋଇ ହୋଇ ପ୍ରାଣ ଯିବ ବୋଲି କପାଳରେ ଗାର କାଟି ଲେଖିଦେଲା । ଆଉ ଆଗକୁ ମନ ବଳେଇଲେ ଲାଭ କ'ଣ ? ସେ ଜାଣି ଜ୍ଞାନୀପୁରୁଷ । ସବୁ ଜାଣିଛନ୍ତି—ବୁଝିଛନ୍ତି, ଆତ୍ମାର କାରଣ କରୁଛନ୍ତି ବସି । ସଂସାରଜଞ୍ଜାଳ ତ ଆଉ ନାହିଁ । ଯା'ର ଏତକ ନ ରହିଲା, ସେଇ ତ ଭାଗ୍ୟବାନ୍ । ଆଉ ଗୁଡ଼ାଏ ଧନ, ଗୁଡ଼ାଏ ପୁଅଝିଅ ହୋଇଗଲେ କ'ଣ ଭାଗ୍ୟବାନ୍ କହିବା କି ?···କଓ, ସଂସାରର ଅଭାବ ମେଣ୍ଟିଯାଇ ଯାହାକୁ ଆତ୍ମାର ଚିନ୍ତା କରିବାକୁ ସୁବିଧା ମିଳିଲା, ସେହି ତ ଭାଗ୍ୟବାନ୍ ।···ବୁଢ଼ାଙ୍କର ଆଉ ସବୁ ଡୋରି ଫୁଗୁଳି ଗଲଣି; ଖାଲି ପଞ୍ଜୁରିଟିରୁ ଉଡ଼ିଯିବା କଥା । ଓଃ, ଭଲା କଳିଯୁଗରେ ଏ କର୍ମ ଇଏ କରିପାରିଲେ !! ମହାତ୍ମା

ପୁରୁଷ କହିବା ନା ସ୍ତ୍ରୀଙ୍କ !!

ଇସ୍, କେଡ଼େ ମିଠା ହୋଇଛି ଏ କଦଳୀଟା ହେ ! ଆଜି ଏ ଚୂଡ଼ା ଗଣ୍ଡାକ ହେଲେ ଭଣା ସରୁ ହୋଇଛି ! ପାଟମାଳି ସ୍ୱାଦ ଭଲ ଲାଗୁଛି । ହୁଃ—ଖାଇବି ନାହିଁ ତ ଆଉ କ'ଣ କରିବି ? ତା'ର ଆଗକୁ ଅଛି ନା ପଛକୁ ଅଛି । ଗ୍ରେଟା ହେଲେ ମଧ୍ୟ ପିଣ୍ଡ ଟାକୁ ତ ଫେର୍ ପ୍ରତିପାଳି ରଖିବ ।...ଆହେ, ତମେ ଗୁଡ଼େ ପଣ୍ଡିତ ହୋଇଗଲେ ସିନା ଶରୀରଟା ତୁମ ପାଇଁ ସ୍ଥିର ହୋଇଯିବ, ନଇଲେ ପେଟକୁ ଗଣ୍ଡେ, ପିଠିକୁ ଖଣ୍ଡେ ତ ସମସ୍ତଙ୍କର ଲୋଡ଼ା । ସେ ବିଚ୍ଛୁରି ଏବେ ତା ହାତ ଯେତେ ବାଟ ପାଇଲା, ଗଣ୍ଡେ ଆଣି ଖାଉଛି । ଆଉ ପାପ ତ କିଛି କରିପକାଉ ନାହିଁ !...ଭଲ କରୁଛି । ନ ମିଳିଲେ ନାହିଁ ସିନା, ମିଳିଲେ ପେଟକୁ ଗଣ୍ଡେ କାହିଁକି ଖାଇବ ନାହିଁ ହୋ ! ସେଥିରେ ଗୋଟେ କ'ଣ ମୋହ ଲାଗିଯିବ !

ଓଃ, ଭଲ ପାଗଟା ହୋଇଛି ଯେ, ଏଥିରେ ଟକ-ପା ନଡ଼ିଆ କୋରି ହୋଇ-ପଡ଼ିଥାନ୍ତା କି ! ଆଉ ଉପରୁ ଉପରୁ ଯଦି ସରମିଶା ଦହି କିଛି ପଡ଼ିଥାନ୍ତା । ବାଃ, ତେବେ ଯାଇ ଠିକ୍ ଧରିଥାନ୍ତା ।...ଏବେ ମଧ୍ୟ କିଛି ମନ୍ଦ ହେଉନାହିଁ ଯେ...

ଶତପଥୀ ମହାଶୟେ ବଡ଼ ଜ୍ଞାନୀ—ବଡ଼ ଉପଦେଶ ସବୁ ଦେଉଛନ୍ତି । ହେଲେ ଗୋଟେ କଥା । ସେ ଆମ ଭଳି ଏମିତି ଦରିଦ୍ର, ଏମିତି କୁଟୁମ୍ବୀ ହୋଇଥିଲେ କ'ଣ ଏସବୁ କରିପାରନ୍ତେ ନା ? ତାଙ୍କ ପାଇଁ ଭାଗ୍ୟ ସବୁ ବାଗେଇ ଦେଇଥିଲା ବୋଲି ସିନା !...କିଓ ନର୍ତ୍ତଶିର ଦଶ ପାବଚ୍ଛଠେଇ ତ ତୁମେ ଜନ୍ମ ହେଲ । ତେଣିକି ଆଉ ଘୃଣ ଧାପ କ'ଣ ଉଠନ୍ତ ନାହିଁ କି ? ଆମ ପରି ଓଦା ଭୂଇଁରେ ଠିଆ ହୋଇଥିଲେ ସେମିତି ମାଟି କାମୁଡ଼ି ପଡ଼ିଥାନ୍ତ—ପିଠିରେ ଦୁବ ଉଠିଯାଆନ୍ତା ।...ଆପଣ ଖୁବ୍ ପାରିଛନ୍ତି ଆଜ୍ଞା, ଆପଣଙ୍କୁ ନମସ୍କାର । ମାତ୍ର ଈଶ୍ୱର ଆପଣଙ୍କୁ କେବେ ହେଲେ ଗରିବ ନ କରନ୍ତୁ । କହିଲା ପରି—

"ଗରିବ କର ନ କରିବ ହରି,
ଗରିବ ଲୋକ ସବୁରି ବଇରି ।"

ତା ହେଲେ ତ ପେଟକୁ ପିଠିକୁ ଖଞ୍ଜି, ଖଞ୍ଜି ହେଲା ଅଣ୍ଟିବ ନାହିଁ ।...

'ହରି ଜଗନ୍ନାଥ !'

ଦାସେ ଉଠିଲେ । ହାତ ଧୋଇ ଆସି ବଡ଼ ସୁସ୍ଥ ମନରେ ବସିଲେ ପାନବଟୁଆ ଧରି । ଗୁଆ କଟା ଲଗିଥାଏ । ମନେପଡ଼ିଲେ ଟୁକୁମା' । ତାଙ୍କୁ ନେଇ ତ ଫେର୍ ଦାସେ ଉଦ୍ବିକଯାକ ପସାର କଲେ । ସେ ବିଚ୍ଛୁରି ମାଇକିନିଆ ଲୋକ, ତା'ର ଯେତେ କର୍ତ୍ତବ୍ୟ ସେ କରୁଛି ନା ! ଏତେଗୁଡ଼ େ ପିଲଙ୍କୁ ଏଡ଼େଟିରୁ ଏଡ଼େଟିଏ କଲା । ତା'ର ବା କ'ଣ ଦୋଷ ରହିଲା କଉଠି ? ତାକୁ ଏଇଲାଗେ ମାସ୍ଟର ଗୋଡ଼, ଜଞ୍ଜାଳର ଅସଲ ମଞ୍ଜି କହି ତ୍ୟାଗ କରିଦେବ ବୋଲି ଭାବିବା ମଧ୍ୟ ଉଚିତ କି ? କହିଦଉଛି ସିନା, ଆମେ ଆଉ କୁ'ଠି ତ୍ୟାଗ କରିପାରିବା ହେ !...ଆମେ ଯେମିତି ଜଞ୍ଜାଳରେ ପଡ଼ିଛୁ, ସେ ମଧ୍ୟ ସେମିତି ପଡ଼ିଛି ନା ! ତା'ର ତ ଉଦ୍ଦେଶ୍ୟ ନୁହେଁ ଯେ ଏଇ ଲୋକଟାକୁ ମାୟାରେ ପକେଇ ବାନ୍ଧି ଦେବ ବୋଲି । ସେ ବିଚ୍ଛୁରି ମାଇକିନିଆ ଲୋକ । ହାତ ଧରି ବିଭା ହେଲାଠୁ ତା'ର କର୍ତ୍ତବ୍ୟ ସେ କରୁଛି ।

ତା'ଠୁ ଏଇଲଗେ ବୁଡ଼େଇଯିବା କୋଉ ଧର୍ମରେ ଲେଖାହେବ ? ବଟ, ଜସ୍ମୀ, ଟୁକୁଆ ଫେର୍ ପିଲ ଅଛନ୍ତି । ତାଙ୍କର ମୁଣ୍ଡକୁ ହାତ ନ ପାଇଲ ଯାଏ ତ ମଣିଷ ଫେର୍ ଲଗିବ । କଜର କାରଣ ପାଇଁ ଏ ସମସ୍ତଙ୍କୁ ପର ବୋଲି ମଣିଷ କେମିତି ହେଲେ ଜ୍ଞାନ କରିବ ? ତାଙ୍କୁ ଉପଜାତ କଲାଠୁ ତ ଫେର୍ ତାଙ୍କ ପାଇଁ କିଛି କରିବାକୁ ହେବ ନା ନାହିଁ ! ନାଃ, କୁଟୁମ୍ବ କମେଇ ତାଙ୍କୁ ପର ବୋଲି ଜ୍ଞାନ କରିବା ପାପ ହେଉଛି । ତାଙ୍କୁ ଚଳେଇବାକୁ ଗୁଡ଼ାଏ କଷ୍ଟ ସହିବାକୁ ପଡ଼ୁଛି: ପଡ଼ୁ । ହେଲେ ଏ କଷ୍ଟ ପାଇଁ କ'ଣ ସବୁ ତେଜ୍ୟା କରି ସନ୍ନ୍ୟାସୀ ହୋଇଯିବ ! ଗ୍ଲୁଡ଼ ହେ, ସେସବୁ ଗୁଚ୍ଛା କଥା । କର୍ମରେ ଯାହା ଥିବ ନା ! ଏମିତି କହିଦେଲେ କ'ଣ ହେଇଯିବ ! ଆମେ ହେଲେ ଗୃହୀ । ସୁଖରେ ଦୁଃଖରେ କୁଟୁମ୍ବଟିଯାକ ଏକାଠି ରହିବାକୁ ହେବ । ପିଲଟିମାନ ପାରିଗଲେ ଟୁକୁମା'ଙ୍କୁ ସାଙ୍ଗରେ ଧରି ପଳେଇବି ତୀର୍ଥ । ଗଙ୍ଗାରେ ଟିକଏ ମୁଣ୍ଡ ବୁଡ଼େଇବି ବୋଲି କେତେକାଳୁ ମନ ଅଛି । ଯିବା, ବୁଲିଆସିବା । ସେଇଠୁ ପ୍ରଭୁଙ୍କ ଯାହା ଇଚ୍ଛା । ମାରିଲେ ମାରିବେ, ତାରିଲେ ତାରିବେ ।

ପାଟମାଳର ସଅପ ଖଣ୍ଡିକ କୋଣକୁ ଡେଉଁହୋଇଥାଏ । ତାକୁ ପକେଇଲେ ଦାସେ । ବନ୍ଧା ହୋଇଥିବା ଗଣ୍ଠିଟି ମୁଣ୍ଡଆଡ଼େ ଦେଲେ । ଅନ୍ଧାରେ କାଗଜପୁଡ଼ିଆରେ ଟଙ୍କା ପଣ୍ଡାକ ଟିକଏ ଦେଖିନେଲେ । କବାଟ ଶିକୁଳି ଦେଇ ଦୀପଟା ଜଳୁଥିଲ, ତାକୁ ଲିଭେଇଦେଲେ ।

କାଲି ଘରେ ପହଞ୍ଚିଲ ବେଳକୁ ଦନ ଦୁଇ ଘଡ଼ି ସକାଳ ହୋଇଯାଇଥିବ । ଟୁକୁଆଟା ଦାଣ୍ଡପିଣ୍ଡାରେ ଖେଳୁଥିବ । ପିଲଟା କେତେ ଶୁଖିଯାଇଛି ନା କ'ଣ !···ଏମିତି କ'ଣ ଗଲର ଗଲର କରି କହୁଛି ସେଇଟା ?···କ'ଣ କରେ ଜସ୍ମୀ ? ଭାଉଜର ଗୋଟିଏ କ୍ଷୀର ପୁଅ ହୋଇଛି ? ଆଚ୍ଛା, ଆଚ୍ଛା !···ସତେ ତ ଟୁକୁମା'ଟା ମଧ୍ୟ କେତେ ଝଡ଼ିଯାଇଛି ଯା ଭିତରେ ! 'ନିଅ ହେ, ଏ ଟଙ୍କାଟା ରଖିଦିଅ ।'···

ଦାସଙ୍କୁ ଗ୍ଲାଇନିଦ ମାଡ଼ିଆସିଲଣି । ବାଁ ପାଖ ମୁଣ୍ଡିଆଟାରେ ପୁଞ୍ଜାଏ ବାଲୁଆ ଭୁକ-ଲଗିଛନ୍ତି । ମନଟା ଦାସଙ୍କର ଛନଛନିଆ ଲଗୁଛି, ହେଲେ ନିଦ ହୋଇଗଲଣି ।

× × × ×

"ଆଜ୍ଞା !···ଦାସେ ଆପଣେ ! ଆଜ୍ଞା, ଚେତା ହୋଇଯାଆନ୍ତୁ ।" କବାଟରେ ଇଆଡ଼େ ଧଡ଼ଧଡ଼ ବାଡ଼େଇ ପାଟି କରି ଲଗିଥାଏ ପାଟମାଳି । ଭିତରୁ କେମିତିଆ ଗାଁ ଗାଁ ଶବ୍ଦ ଖାଲି ଶୁଭୁଥାଏ । "ଆଜ୍ଞା, ଉଠିପଡ଼ନ୍ତୁ ! ଉଠିପଡ଼ନ୍ତୁ !! ଓହୋ !" କବାଟରେ ଏଣେ ଧଡ଼-ଧଡ଼ ଦୁଲ୍‌ଦୁଲ୍ ଶବ୍ଦ । କେତେବେଳକେ ଯାଇ କବାଟ ଫିଟିଲି ।

"କ'ଣ ହେଲି କି ଆଜ୍ଞା ? ଆପଣଙ୍କୁ ଏମିତି ବାଉଳି ହେବାର ତ ମୁଁ କେବେହେଲେ ଶୁଣିନାହିଁ । ଓଃ, ଯେଉଁ ପାଟି ! ମୁଁ ଡାକୁଥିବି ଶହେ କି ଛକୋଡ଼ି ସରକା ।"

"ଗୋବିନ୍ଦ ! ଗୋବିନ୍ଦ !! କ'ଣ କହିବି ହେ ! ବଡ଼ ଭୟଙ୍କର ସ୍ୱପ୍ନଟାଏ ଦେଖିଲି । ବଡ଼ ଅଶୁଭ ସ୍ୱପ୍ନଟାଏ ।"

"କ'ଣ ସ୍ୱପ୍ନ ଦେଖିଲେ ?" କହି ପାଟମାଳି ମସିଣା ପାଖରେ ତଳେ ବସିପଡ଼ିଲା ।

ବାପେ ଯେମିତ ଗୋଡ଼ହାତ ଲମ୍ବେଇ ବସିଥାନ୍ତି, ଯେମିତ ଖୁବ୍ ଗୁଡ଼ାଏ ପରିଶ୍ରମ କରି ହାଲିଆ ହୋଇଯାଇଛନ୍ତି ।

"ମୁଁ ସ୍ୱପ୍ନ ଦେଖୁଛି ଯେ ବଡ଼ ଅନ୍ଧାରରେ ମୁଁ କୁଆଡ଼େ ଚାଲିଛି । ବାଟରେ ଗୋଟେ ନଈ ପଡ଼ୁଛି । ଓଃ, ସେ କି ନଈ ! କଳା ଝିମ୍ ଝିମ୍ ପାଣି । ମୋର କୁଆଡ଼କୁ ଆଉ ଆଖି ପାଉନାହିଁ ନା ହାତ ଗୋଡ଼ ବି ପାଉନାହିଁ ।···ମୋ ପାଖକୁ ଲାଗି ମୋ କାନ୍ଧ ଉପରେ ଓହଳି ରହିଛି ଝୁଲୁମା । ଦେଖୁ ଦେଖୁ କ'ଣ ନା ସମସ୍ତେ ମୋର ହାତଗୋଡ଼ ଜାବୁଡ଼ି ଧରିଛନ୍ତି । ମୁଁ ସେଥିପାଇଁ ଆଉ ଚାଲିପାରୁନାହିଁ । ପାଣିରେ ବୁଡ଼ିଯାଉଛି । ପୁଣି କଲ-ବଲରେ ଉପରକୁ ହାବୁକା ମାରି ଉଠିଆସୁଛି । ଯେତେ ଛୁଞ୍ଚାଉଁଲେ ମଧ୍ୟ ବଳୁଆ ଲଇ ପରି ସବୁ ମୋ ଦେହଯାକ ଗୁଡ଼େଇ ହୋଇଯାଇଛନ୍ତି । ନିଶ୍ୱାସ ରୁନ୍ଧ ହୋଇଗଲାବେଳକୁ ମୁଁ ସମସ୍ତଙ୍କୁ ପାଟି କରି ଗାଳି ଦେଉଛି, ମାତ୍ର କିଛି ଫଳ ନାହିଁ । ଏତିକବେଳେ ତମ ଆଲୁଅରେ ଜଣେ କିଏ ନାଆ ଧରି ଦୂରରେ ପାରିହୋଇଯାଉଛି । ଆମର ଏଇ ଶତପଥୀ ମହାଶୟଙ୍କ ପରି ଲାଗୁଛି । ତାଙ୍କୁ ମୁଁ ବଡ଼ପାଟିରେ ଡାକୁଛି । ସେ ମାତ୍ର ନ ଶୁଣିଲା ପରି ଚାଲିଯାଉଛନ୍ତି । ମୁଁ ଯେମିତ ଡାକି ଡାକି ହାଲିଆ ହୋଇଯାଉଛି । ପୁଣି ସମୁଦ୍ର ପରି ଘୂ ଘୂ ହୋଇ କଳାକଳା ଲହଡ଼ି ମାଡ଼ିଆସୁଛି । ତମସବୁ ଘୋଡ଼େଇ ହୋଇଯାଉଛନ୍ତି । ମୁଁ ଆହୁରି ଚିତ୍କାର କରି ଡ଼ାକୁଛି । ଓଃ, ବଡ଼ ଭୟଙ୍କର ସେ ନଈ ହୋ ! ସ୍ୱାପ ଦେଖନ୍ତ ମୋ ଦେହରୁ କେମିତ ଗୋଟେ ଝାଳ ବୋହିଯାଇଛି ।···ସେଇଠୁ ଲାଗୁଛି ଯେ ସେ ନାଆ ଭିତରୁ ବନଶୀ କଣ୍ଟାରେ ମାଛ ଟାଣୁଛି, ହସୁଛି । କାଳିଆ ହୋଇ ଲୋକଟା ଟାଣିଲାବେଳକୁ ଓଃ, ମୋ ଝୁଲୁଆଟା ପାଟିରେ ସୂତା ଧରି ଉପରକୁ ଉଠିଆସୁଛି । ପିଣ୍ଡରେ ପ୍ରାଣ ନାହିଁ । ଓଃ ! ହରି ଗୋବିନ୍ଦ ! ହରି ଗୋବିନ୍ଦ !!!"

"କିଛି ନାହିଁ ଆଜ୍ଞା, ଏସବୁରେ ଘରକୁ ଦେଖିଲେ ପରକୁ ହୁଏ । ଆପଣ ଯାଆନ୍ତୁ ଅଧିଆ ମୁହଁରେ ପାନ ଗଛଟେ ଉପାଡ଼ି ଫିଙ୍ଗିଦେବେ ।"

"ହଉ ଯିବା । କେତେ ରାତି ଆଉ ଅଛି କହିବଟି ! ମୋତେ ଆଉ ନିଦ ହେଲା ପରି ଲାଗୁନାହିଁ ।"

"ରାତି ଆଉ କାହିଁ ଆଜ୍ଞା ! ହେଇ ପରା ପାହାନ୍ତା ପହର ହେଲାଣି ।"

"ହଉ···ଏଥର ଉଠି ସଜ ହୋଇଯିବା ତା'ହେଲେ ।"

# ଜାତକ ସମସ୍ୟା

"ବୁଝିଲ କହ୍ନେ ଦାସେ, ଆଉ ଏଣିକି ମୋର ରହିବା ଲୋଡ଼ା ନାହିଁ । ଈଶ୍ୱରଙ୍କ ଆଶୀର୍ବାଦରୁ ବୋହୂ ପିଲାଟି ଉଦ୍ଧାର ହୋଇଗଲା । ସେଥିପାଇଁ ବଡ଼ ଅଡ଼ୁଆ ଲାଗୁଥିଲା ମୋତେ, କେମିତି ଗ୍ରହ ଘୂଞ୍ଚିଯିବ ବୋଲି । ଏଣିକି ନାତି କଥା ବୁଝ । ମୁଁ ମୋର ଯାଏ । ଘରକୁ ଚିଠି ଦେଇଥିଲି ମାସେ ରହିଯାଉଛୁ ବୋଲି । ଆସି ଦେଢ଼ ମାସ ସମସ୍ତ ହୋଇଗଲା ।"

"ହଁ ହେ ! ତମର ସବୁ କଥାକୁ ଖାଲି ନାଉଛ । କର୍ତ୍ତ, ପିଲାଟାର ଏକୋଇଶିଆଟା ଯାଉ—ଯିବ ନାହିଁ କି ? ଏବେ ତ ଏମିତି ହଉଚ, ଆଉ ଘରଦ୍ୱାର କରିବା ଦିନ ତ ଅଛୁ ! …ବସ ବସ ଏଇଠି । ଆରେ ବଟ, ବାପା, ତୋ ମାମୁଁ ପାଇଁ ସଅପଟା ଆଣିଦଉଛି ଏ ପିଣ୍ଡାକୁ । ମୁଁ ପିଲାଟାର ଏ ଟିପ୍‌ପଣାଟା ଲେଖିଦିଏ—ତାର ଜାତକଟା କରେଇଦେବା । ନୀଳକଣ୍ଠ ପଣ୍ଡିତ ପାଖକୁ ଟିକିଏ ଗଲେ ସେ କରିଦେବ ।"

ଦାଣ୍ଡପିଣ୍ଡାରେ ଗୋଟିଏ କୋଣକୁ ବସିଛନ୍ତି ଦାସେ । ନଡ଼ିଆ ଗୁଣ୍ଡଟା ଉପରେ ପାଞ୍ଜି ଫିଟାହୋଇ ପଡ଼ିଛି । ଆଉ ଖଣ୍ଡେ ହଳଦୀ ବୁଡ଼ା କନା ଭିତରେ ଗୋଟିଏ ତାଳପତ୍ର ଜାତକ ବନ୍ଧାହୋଇ ତା' ପାଖରେ ଥୁଆହୋଇଛି । ଖଣ୍ଡେ ସରୁ ଲେଖା ତାଳପତ୍ର ଦେହରେ ଦାସେ ପାଞ୍ଜିରୁ ଜନ୍ମ ମୁହୂର୍ତ୍ତ, ଦିନ, ବାର ଆଦି ଟିପିନେଉଛନ୍ତି । ଖାଇସାରି ଦ'ପହର-ବେଳେ ଏ କାମଟା କରିଦେଲେ ସୁବିଧା ଦେଖି ନୀଳକଣ୍ଠ ପଣ୍ଡିତଙ୍କୁ ଟିକିଏ କହିବେ ଜାତକଟା କରିଦେବାପାଇଁ ।

ସେଇଟା ଟିକିଏ ଗେ ପେଁ କରିବା ପରି ଦିଶୁଛି । କାହିଁକି, କ'ଣ ମୁହଁ ଦେଖି କାମ କରିବ କି ? ହଅକ ପଇସା ଦବା ନା, ମାହାଳିଆ ତ ଆଉ କରିଦେବ ନାହିଁ !—ଭାବୁଥାନ୍ତି ଦାସେ ଆଉ ଲେଖୁଥାନ୍ତି ।

"ଆଣିଲୁ କିରେ ବାପା ? ଦେ, ଏଇଠି ପକେଇଦେ । ବସ ହେ, ମୁଁ ଏଇଟା ଟିକିଏ ସାରିଦିଏ ।"

"ମୁଁ କ'ଣ କହୁଥିଲି କି, ଆସି ଏତେ ଦିନ ରହିଲି । ତମର ଅସୁବିଧା ପଡ଼ିଗଲା ବୋଲି ସିନା, ନହେଲେ ତ କେତେଦିନୁ ମୋର ଘୂଞ୍ଚିଯିବା କଥା ।"

"ହଉ ହେଲା, ଏବେ କ'ଣ ଆସି ପର ଘରେ ଅଛ କି ? ଯିବ, ଯିବ ହେ ! ପିଲାଟାର ଏକୋଇଶିଆ ଦିନ ସତ୍ୟନାରାୟଣ ପୂଜାଟାଏ କରିଦେବା । ତା ବାସି ତୁମେ ଯାଅ, ମୋର

ମନା ନାହିଁ । ଆଉ ଦିନ କେଉଁଟା ! ହେଲେ ଆଜି ହେଲା ମଙ୍ଗଳ । ବୁଧ, ଗୁରୁ, ଶୁକ୍ର, ଶନି । ରବିବାର ଦିନ ଏକୋଇଶିଆ । ମଝିରେ ଦିନ ଗୁଡ଼ାଟା ଆଉ ରହିପାରିବ ନାହିଁ ଯେ ଖାଲି ଏମିତି କେଉଁଛ ? ବଡ଼ ହୁଗୁଲା ଲୋକ ହେ ତୁମେ !''

''ସୋମବାରେ ମାଫ ଦିଲେ ଆଉ ତୁମ କଥା ଶୁଣିବି ନାହିଁ । ସେଇଦିନ ଯିବା କଥାର୍ଥ । ହଉ ହେଲା । କେମିତିଆ ଦିନ, ବାର, ବେଳା ବାହାରିଲା ପିଲାଟାର କହିବ ଟିକଏ, ଶୁଣିବା ।''

''ଆଉ ବାଛିଦେବାକୁ ନାହିଁ । ସୋମବାର ସପ୍ତମୀ, ମାହେନ୍ଦ୍ର ବେଳାରେ ଜନ୍ମ ହୋଇଚି ଟୋକା । ଭଲ ଜାତକ ଖଣ୍ଡେ ହେବାପରି ଦିଶୁଛି ।''

''ତମେ କଣ କରିଦେଉନ ! ତୁଚ୍ଛାରେ ଏବେ କୋଉ ସେ ନୀଳକଣ୍ଠ ପଣ୍ଡିତ କହୁଛ, ତା ପାଖକୁ ଧାଇଁବ ନା ? କଣ ଘରେ ବସି ଗଣିଦେଲେ ତ ଯାଆନ୍ତା ।''

''ଛି, ଛି, ହଇହେ, ସବୁ ହେଲା ବୋଲି ଶେଷକୁ ମଣିଷ ଜାତକ ମଧ୍ୟ ଲେଖିବ କହେ ? ଜଉତିଷଗୁଡ଼ାକ ପରା ଗ୍ରହପୁଜ । ତାଙ୍କ ମୁହଁ ଚାହିଁଲେ ଦୋଷ, ସ୍ନାପ ଏକୋଇଶ ଦିନ ଯାଏ ଅନ୍ନ ମିଳିବ ନାହିଁ । ସେଗୁଡ଼ା କ'ଣ ବ୍ରାହ୍ମଣରେ ଲେଖା ? ସେ କାମ ଆମ ଚୌଦପୁରୁଷରେ ନାହିଁ । ନୀଳକଣ୍ଠ ପଣ୍ଡିତ ବସିଛି ଏବେ ଗୁଡ଼ିଦେବ ବୋଲି । କେମିତି ହେବ ? ତା'ର ପରା ଏଇଟା ସାତପୁରୁଷି କାମ । ତାଙ୍କର ଜଉତିଷିଆ ଘର । ଏଣୁ ସେଗୁଡ଼ାକ ଉଣାପାଣିଆ ବ୍ରାହ୍ମଣ ନା !''

''ଏ ଜାତକ ବଡ଼ାଯାକ କ'ଣ ସବୁ ଆମର ଏଇ ପିଲାଙ୍କର ?''

''ହଁ, ସେଗୁଡ଼ାକ ବହୁଦିନର । ତା ଭିତରେ ମୋର ଯୋଡ଼ାଏ, ତମ ଭଉଣୀର ଯୋଡ଼ାଏ, ବାକି ପିଲାଙ୍କର ଗୋଟେ ଲେଖାଁ । ଫିଟେଇଦିଅ, ମୁଁ କହୁଛି···ହଁ, ଆଉ କାଢ଼··· ହିଁ, ସେଇଟା ମୋର । ସେଇ ଯୋଡ଼ାଯାକ ମୋର । ନନାଙ୍କର ତ ମୁଁ ଗୋଟିଏ ବୋଲି ପୁଅ । ଥରେ ପାଟପୁରକୁ ଗୋଟେ ବଡ଼ ଜଉତିଷ ଆସିଥିଲା । ଏଡ଼ିକି ବିଚକ୍ଷଣ ଯେ ଆଉ କହିବାକୁ ନାହିଁ । ଏମିତି ମୁହଁ ଦେଖି ଆଙ୍ଗୁଠି ଗଣିଦେବ, ଆଉ ଯାହା ଯାହା ଘଟିବ ସବୁ କହିଦେବ । ତା ହାତରେ ଖଣ୍ଡେ ଜାତକ କରେଇଲେ ନନା, ସେଥିପାଇଁ ଦୁଇଖଣ୍ଡ ଅଛି । ବୋହୂର ଜାତକରେ ମଧ୍ୟ ମନ ପାଇଲା ନାହିଁ । ବିଭାଘର ସରିଲା ପରେ ବସି ପାଟପୁରରେ ଆଉ ଖଣ୍ଡେ କରେଇଲେ ।''

''ଏ ନୂଆ ଖଣ୍ଡ କାହାର ହେ ?''

ସେଇଟା ରଖ । ଟୁକୁଆର ପରା ଜାତକ ସେଇଟା । ସେ ଆମର ଅଷ୍ଟମଗର୍ଭରେ ପୁଅ । ଆମ ଘରେ ସବୁଠୁ ତା ଭାଗ୍ୟ ତେଜ । ଈଶ୍ୱର ରଖିଥିଲେ ବଡ଼ଲୋକଟେ ହେବ । ତାର କୋଷ୍ଠୀ କାଟିଲାବେଳେ ପରା ନୀଳକଣ୍ଠ ପଣ୍ଡିତ—କେବେ ଟେକି କହିବ ନାହିଁ— କହିଲା—'ବୁଝିଲ ଦାସେ, ଏ ପୁଅଟା ତୁମର ଦୁଆରେ ଅଣି ହାତୀ ଝୁଲେଇବ ହେ ! ତାର ଦେଖ ଧନଟା ବଡ଼ ଗ୍ରହ କେମିତି ଢଙ୍ଗରେ ଅଛନ୍ତି । ବୃହସ୍ପତି ପଞ୍ଚମରେ ।' ତାକୁ ଈଶ୍ୱର ଆୟୁଷ ଦେଇଥିଲେ, ସେଇ ଫେର୍ ଏ ଘରଟାକୁ ଟେକିବ । ତମର ସବୁ ଆଶୀର୍ବାଦ

ଥାଉ ତ ।"

"ଭାଗ୍ୟରେ ଥିଲେ ସିନା ଲୋକ ଏଭଳି କୁଟୁମ୍ବ ଅର୍ଜନ କରିବ । ଏବେ ବୁଝିଲ ନା ଦାସେ—ଏ ବଡ଼ାଟା ବାନ୍ଧ ଯୋଉଦିଅ —ମୁଁ କହୁଛି । ଏବେ ଆମ ଗାଁରେ ଗୋଟେ ନୂଆ ଡାକ୍ତରଖାନା ଖୋଲିଛି । ସେଥିରେ କୁଆଡ଼ୁ ଆସି ଗୋଟେ ଅଫିସର ପହଞ୍ଚିଛି । ସେ କହୁଛି ଯେ ସରକାର ଘୋର ଚେଷ୍ଟାକରୁଛି ଲୋକସଂଖ୍ୟା କମେଇବାକୁ । କୁଆଡ଼େ ବହୁତ ଜନ୍ମ ହେବାରୁ ଦୁର୍ଭିକ୍ଷ ପଡ଼ୁଯାଉଛି । ସତ୍ତ୍ୱ କରି ଗାଁରେ ଗୁଡ଼ାଏ ଏମିତି ଗାଲୁ ଗପ ସେଦିନ ଗପିଲା । କିଏ କାହିଁ ତା କଥା ଟିକିଏ ଶୁଣନ୍ତା ? ଏଗୁଡ଼ାକ ସବୁ ସମାଜରେ ବାହାରୁନାହିଁ କି ?"

"ହଁ ସ୍ୟାପ, ମରଣକାଳେ ବିପରୀତ ବୁଦ୍ଧି । ପ୍ରକୃତ ନଷ୍ଟହେଲେ ଏମିତି ଗୁଡ଼ାଏ କିଏ କାହିଁକି କହନ୍ତା ? କରେ, ଜନ୍ମ ମରଣ କ'ଣ ତୁମ ହାତରେ ଅଛି ? ସେ ସବୁ ଆଗରୁ ଚିତ୍ରଗୁପ୍ତ ପାଞ୍ଜିରୁ ସବୁ ଠିକ୍ ହୋଇ ରହିଛି । ତୁମେ କହିଲେ ଜନସଂଖ୍ୟା କମିଯିବ ନା ବଢ଼ିଯିବ ?"

ତା ପାଇଁ ସବୁ କ'ଣ ସବୁ ଉପାୟ ବାହାର କରିଛନ୍ତି ।"

"ରଖନ୍ତୁ ଉପାୟ । ସ୍ୟାପ, ଭଣ୍ଡାଗୁଣ୍ଡା ହେଲଣି ଆଉ ମୁହଁକୁ କ'ଣ ଲାଜ ଥାଏ ?"

"ହଇରେ ସୁଦେଇ, ଟିକିଏ ଘରକୁ ଆସିଲୁ । ସେ ତଳ ଘରଟା ଆଡ଼େଇ ସଜାଡ଼ିବ ଯେ, ଶିକାଟାକୁ ହାତ ପାଉନାହିଁ । ଓଗ୍ରାରୁ ଫିଟେଇଦବୁ ଟିକିଏ ଆସିଲୁ ।"

ଟୁକୁମାଙ୍କ ପଛେ ପଛେ ଉଠି ଗୁଲିଗଲେ ସୁଦର୍ଶନ ନନ୍ଦେ ।

ଦିନକୁ ଦିନ କି କଥା ମଣିଷ ଦେଖିଲ ହୋ ! ବଡ଼ିଲ ସବୁ "କସ ପୁଣି ଦେଖା ନ ଯାଇ ଯେବେ ଥାଇ ଜୀବରେ ।" ଏଗୁଡ଼ାଙ୍କର ବୁଦ୍ଧି ଏଣିକି ଅଧର୍ମଆଡ଼କୁ ବେଶି ବେଶି ଚଳିବ । କଳି ସବୁ ଘୋର ରୂପ ଧରି ଆସିଲଣି । କଓ, ଜନ୍ମ କ'ଣ ନିୟନ୍ତ୍ରଣ କରିବ ତୁମେ ? ପୁଣି କ'ଣ ନା ତୁମେ ଯେତେ ଜଣ ଏବେ ବଞ୍ଚିଛ ସୁଖରେ ରହିବ, ଆଉ ଖାଇବ ବୋଲି ଆଉ କେହି ଜନ୍ମ ହେବେ ନାହିଁ ? ସ୍ୱାର୍ଥ ପାଇଁ କ'ଣ ଭ୍ରୂଣହତ୍ୟା କରିବ ? ଚଣ୍ଡାଳ ସ୍ୟାପେ, ଭାବିଛନ୍ତି ସେ ହିଁ ଜନ୍ମ ଦେଉଛନ୍ତି, ସେ ହିଁ ପାଳୁଛନ୍ତି, ପୋଷୁଛନ୍ତି । ଆରେ ନାହିଁ । ଯେ ଜନ୍ମ ଦେଉଛି ସେ ଆଉ ଜଣେ । ତାର ଇଚ୍ଛା ନହେଲେ କ'ଣ ତୁମ ବୁଦ୍ଧିରେ କିଛି ହେଲେ ହେଇପାରନ୍ତା ! ସେଇ ଜନ୍ମ ଦେଉଛି, ସେଇ ପାଳିବ, ପୁଣି ସେଇ ମାରିବ । ଅଜ୍ଞାନ ହେତୁରୁ ତୁମେ ସେସବୁ ବୁଝିବ ନାହିଁ । କ'ଣ ନା ଖାଇବାକୁ ଅଣ୍ଟିବ ନାହିଁ ବୋଲି ସମସ୍ତଙ୍କୁ ଅଧିଆଡ଼ୀ ରଖି ମାରିବ । କାହିଁ—ଏତେ ତ ଯନ୍ତ୍ର ତିଆରି କରୁଚ, ଭୂଇଁରୁ ବେଶି ଖାଇବାର ଉପୁଜେଇ ଦେଉନ ! ନିର୍ଲଜ୍ଜ ସ୍ୟାପେ !!

ହଇ ହୋ, ପିଲା ମୁଣ୍ଡକୁ ତେଲ ଯୋଗେଇପାରିବ ନାହିଁ ବୋଲି ତା ମୁଣ୍ଡକୁ କାଟି ଫୋପାଡ଼ିଦେବା ନ୍ୟାୟ ଏଇଟା ହଉନାହିଁ କି ?···କଓ, କେଉଁ ମହାପୁରୁଷ କେତେବେଳେ ଜନ୍ମ ହେବ ତାର କ'ଣ ଠିକଣା ଅଛି ? ତୁମେ ଅପାରଗ କ୍ରୋଡ଼େ ରହି

ତାଙ୍କୁ ସଂସାରକୁ ଆସିବାକୁ ଦେଉନାହିଁ । ତମ ପରି କୋଟିଏ ଥିଲେ କେତେ ନଥିଲେ କେତେ ! କ'ଣ ନା ଖାଦ୍ୟ ନଅଣ୍ଟ ହୋଇଯିବ, ରହିବାକୁ ଜାଗା ମିଳିବନାହିଁ !···ଛପନ କୋଟି ଜୀବଙ୍କୁ ଯେ ସ୍ଥାନ ଦେଇଛି, ତାଙ୍କର ଆହାର ଯୋଗେଇଛି, ସେ କ'ଣ ଏ ମଣିଷ ପିଲା ଗଣ୍ଡାକୁ ହତାଦର କରି ମାରିଦେବ ? ତୁମେ ସବୁ ପାଠଶାଠ ପଢ଼ି ଶେଷକୁ ଏଇଆ ବୁଝିଲ ?

ଆମେ ହେଲୁ ପୁରୁଣା କାଳ ଲୋକ । ଈଶ୍ୱରଙ୍କ ଇଚ୍ଛାରେ ଏବେ ମୋର ପାଞ୍ଚଟି ପୁଅ । ଯମଦଣ୍ଡ ପଡ଼ିଗଲା ବୋଲି ସିନା, ନହେଲେ ତ ଆଠଟା ପୁଅ ହୋଇଥାନ୍ତେ !···ମୁଁ ତାଙ୍କୁ ଜନ୍ମ ଦେଇ ପୋଷି ପାରୁ ନାହିଁ କହୁଛ ତ ? କଉ, ମୁଁ ପୋଷୁ ନାହିଁ ତ କ'ଣ ତମେ ଆସି ପୋଷୁଛ ?···ସେଇ ଲକ୍ଷ୍ମୀନାରାୟଣ ଏକା ତାଙ୍କୁ ପୋଷୁଛନ୍ତି । ନହେଲେ ଏବେ ତମେ ତମର ଗୋଟିଏ ପିଲାକୁ ଯେମିତି ଜାମା ଦେଉଛ ବା ଝୁନଚକଆ କରିଦେଉଛ, ମୁଁ କୁଳୁମୁଣ୍ଡୀ ହେବାରୁ ସେଇଟା କରିପାରୁ ନାହିଁ । କ'ଣ ହେଇଗଲା ସେଥିରୁ ? ମୁଁ ତା ବୋଲି ଗୋଟାଏ ଜୀବକୁ ଜନ୍ମ ହେବାର ଅଧିକାର ଦେବିନାହିଁ !···ହଁ, ସେମାନେ ସମସ୍ତେ ଯେ ବଞ୍ଚି ଏମିତି କ'ଣ ଗୁଡ଼ାଏ କରିପକେଇବେ ତା' ନୁହେଁ । ହେଲେ କାହାରି ଜୀବନ ଅସାର୍ଥକ ନୁହେଁ । ତାଙ୍କୁ ସବୁ ଜନ୍ମ ଦେବାରେ ମହାପ୍ରଭୁଙ୍କର କି ଇଚ୍ଛା ଯେ ପୂର୍ଣ୍ଣ ହେଉଛି, ତା ଆମେ ବୁଝିପାରିବା ନାହିଁ । କଉ, ଦେଖୁନ, ଆମ୍ବଗଛରେ କେବେ ଫଳ ଫଳିବ ବୋଲି ପାଞ୍ଚ ବର୍ଷ କାଳ ପାଞ୍ଚ ଲକ୍ଷ ପଟ କଅଁଳ ପୁଣି ଝଡ଼ିବ । ପାଞ୍ଚ ହଜାର ଡାଳ ମାଡ଼ିବ ।···ନା ଆକାଶରେ ଥାନ ଧରିବ ନାହିଁ, ଡାଳସାକ ହାଣିଦିଅ—ମଞ୍ଜିରେ ଛାଳିଗଛ ଚୂଳ ପରି ଗଣ୍ଡେ ଥାଉ । ସେଥିରେ ପାଞ୍ଚଟା ଆମ୍ବ ଧରୁ ପଛକେ ପୁଷ୍ଟ ହୋଇ ହେବ ତ ! କେତେ ଅକଳନ୍ତ ଗଛ, କେତେ ଅକଳନ୍ତ ଫଳ ତୁମେ ମାରୁଛ ଜାଣ ? ପ୍ରତି ଆମ୍ବ ଫଳଥିଲେ ସବୁ ଗୋଟିକେ ଗୋଟିଏ ଗଛ ହୋଇଥାନ୍ତା ! ଏତେ ତୁମର ଲୋଡ଼ା ନାହିଁ ? କଉ, ତୁମର ଲୋଡ଼ା ଗୋଟେ କ'ଣ ? କ'ଣ ତମ ପାଇଁ ସଂସାର ଚାଲୁଛି ନା ଚାଲିବ ?

"ତମର ଆହୁରି ଜାତକ ଗଣ୍ଡାକ ବନ୍ଧା ସରି ନାହିଁ ? କ'ଣ ଏମିତିଆ ଅଧା ବନ୍ଧାରେ ବସି ଭାବୁଛ ?"

"ହେଇ, ତମେ କହିବା କଥାଟା ଟିକିଏ ବସି ଭାବୁଥିଲି ।"

"ଆଉ ଏବେ ଭାବି କ'ଣ କରିବ ? ଭାବିଲା ବେଳେ ତ ଭାବ ନାହିଁ ।"

"କାହିଁକି ଭାବିଥାନ୍ତି ହେ ? ସେଗୁଡ଼ାକ କି ଭାବିବା କଥା ? ଯାହା ବିଧାତା ଗାର କାଟି ଭାଗ୍ୟରେ ଲେଖିଦେଇଛି ସେଇଟା ହେବ ନା ! ମରଣ ଆମ ହାତରେ ନାହିଁକି ଜନ୍ମ ମଧ୍ୟ ଆମ ହାତରେ ନାହିଁ । ଲକ୍ଷେ କୋଟି ଜୀବଜନ୍ତୁ ଫେର୍ ଜନ୍ମ ହେଉଛନ୍ତି ନା ନାହିଁ କହିଲ ! ତାଙ୍କର କ'ଣ ସଂଖ୍ୟା ବଢ଼ୁ ନାହିଁ ! ହେଇ, ଭଲ ମନେପଡ଼ିଲା । ଏଣିକି ନୂଆ ପାଠ ପଢ଼ୁଛନ୍ତି । ବଡ ତା ବହିରୁ ପଢ଼ୁଥିଲା, ପୁଣି ସମୁଦ୍ରରେ ଗୋଟେ ଜୀବ ଅଛି, ସେଇଟା ଅଣ୍ଡା ଦିଏ । ଯଦି ସବୁ ଅଣ୍ଡାରୁ ଛୁଆ ହୋଇ ବଞ୍ଚି ରହନ୍ତା ତେବେ ତିନି ବର୍ଷ ଭିତରେ ସମୁଦ୍ରରେ ଆଉ ଥାନ ଧରନ୍ତା ନାହିଁ । କୋଟି ସଂଖ୍ୟାରେ ବଢ଼ନ୍ତେ । ସେଥିପାଇଁ ବିଧାତା

ତାକୁ ଗୋଟିଏ ସୀମାରେ ରଖିଛୁ ନା ! ଜୀବ ମାତ୍ରକେ ସେମିତିଆ ଗୋଟିଏ ଲେଖାଁ ସୀମା ଭିତରେ ଅଛନ୍ତି । ମଣିଷ ଭିତରେ ଆଠ ଦଶଟାଠୁ କ'ଣ ଅଧିକ ହେଉଛୁ ? ହେଲେ କେଉଁଠି କେମିତିଆ ନା ! ଯଦି ସେଥିରେ ବେଶୀ ଅସମ୍ଭାଳ ହୋଇଯିବ, ତାର ବ୍ୟବସ୍ଥା କ'ଣ ସେ ଜନ୍ମ ଦେଉଛୁ କରି ଦେବ ନାହିଁ ! ଦେଖିବ ଯେ ଶେଷକୁ କଦଳୀ ଗଛ ପରି ଥରେ ଫଳିଲେ ଆଉ ଫଳୁ ନାହିଁ ।"

"ତମର ତ ଖାଲି ସେଇ ଏକବାଗିଆ କଥା । ତମେ ତମ ଆଗକାଳିଆ ଧାଡ଼ି ବଦଳେଇ ପାରିବ ନାହିଁ କି ଏ କଥା ତମେ ସମଝି ପାରିବ ନାହିଁ । ବସିଥା, ମୁଁ ପାନ ଗୁରି ଖଣ୍ଡେ ଭାଙ୍ଗି ନେଇଆସେ ।"

"କଥା ପ୍ରକୃତ । ଏମାନେ ଯାହା ସବୁ କହୁଛନ୍ତି ସେଇଟା ମଧ୍ୟ ଗୋଟେ ପ୍ରକାର ଠିକ୍ ନା । 'ହାତରେ ନ ଥାଇ ଧନ, ପୁଅ ବାହା କରି ମନ ।' ଗୋଟେ ପିଲା ପୋଷିବାକୁ ବଳ ନ ଥିବ, ଆଠ ପ୍ରାଣୀ ଉପକାତ କରି ବସି ଖାଲି ଭାଗ୍ୟ ନିନ୍ଦା କରିବା କୋଉ ବିବେକ କାମ ଆଉ ହେଲା ! ସବୁଗୁଡ଼ାକ ଅଯୋଗ୍ୟ ହୋଇ ଭିକ ମାଗି ବୁଲିବେ ସିନା ! ମାତ୍ର ସଂସାରୀ ହେଲାଠୁ ତ ନଷ୍ଟେ ପୁଅଝିଅ ହେବେ । ମାୟା ଲାଗିଛି । ସ୍ତ୍ରୀ ପୁରୁଷ ଆଉ ଗ୍ରୁଡ଼ବାଡ଼ ହେଇ ତ ରହିପାରିବେ ନାହିଁ ! ଭୋକ ଶୋଷ ମେଣ୍ଟାଇଲା ପରି କୁଟୁମ୍ବ ବଢ଼େଇବା ମଧ୍ୟ ଗୋଟିଏ ମୂଳ ପ୍ରକୃତି ନୁହେଁ କି ? ତାକୁ ତ ଆଉ କୌଣସି ପ୍ରକାରେ ରୋଧି ହେବ ନାହିଁ । କିନ୍ତୁ ଏମାନେ ହେଲେ କ'ଣ ନାକଗ୍ରୁଟା ଆଉ କରୁଛନ୍ତି ? ଘୁଷୁରି ପଲପରି ଏମିତି ତ ସାଲୁବୁ ବାଲୁବୁ ଏଣିକି ହେବେ ନାହିଁ । ଅନ୍ୟ ପଶୁଙ୍କ ପାଇଁ ସିନା ସବୁ ବ୍ୟବସ୍ଥା ବିଧାତା କରିଦେଇଛୁ, ମଣିଷ ତ ଫେର୍ ବୁଦ୍ଧି ଟିକିଏ ରଖିଛୁ । ସେଥିରେ ଈଶ୍ୱରଙ୍କ ଇଚ୍ଛା ଯେ ପ୍ରକାଶ ନ ପାଉଛି କିଏ କହିବ ? ମଣିଷକୁ ବୋଧହୁଏ ତା ନିଜ ହାତରେ ଏମିତି ଅଲ୍ପ ଅଲ୍ପ ମାରି ବିଲୋପ କରିଦେବା ସୃଷ୍ଟିକର୍ତ୍ତାଙ୍କ ଇଚ୍ଛା ।"

ହେଲେ କେଉଁଟା ଏଥିରୁ ଠିକ୍—ଇଆଡ଼େ ଦରିଦ୍ର କରି ଖାଇବା ପିଇବାରେ ନିଅଣ୍ଟିଆ ରଖି ଜୀବନ ସାରା ଛଟପଟ କରେଇବା ଅପେକ୍ଷା ମୂଳରୁ ଜନ୍ମ ନ ଦେବା ଭଲ— ସେଆଡ଼େ ପୁଣି ଆତ୍ମାଟାକୁ ଜନ୍ମ ନ ଦେଇ ତାକୁ ମଣିଷଜୀବନରେ ସାଧନା କରିବାକୁ ଦିଆ ହେଉନାହିଁ । ଧନୀ ଦରିଦ୍ର ତ ସବୁ ଦିନକୁ ଥିବେ । ଗରିବ ହୋଇ ମଧ୍ୟ ନିଜର କାରଣ କରିବ ତ ଫେର୍ ମଣିଷ ! ମଣିଷ ଜନ୍ମ କେଡ଼େ ଦୁର୍ଲଭ । ଶହ ଶହ ଜନ୍ମଧରି ସାଧନା କଲେ ସିନା ମଣିଷ ଯାଇ ସିଙ୍କି ପାଇବ । ଏଣୁ ଏ ମଣିଷ ଶରୀର ଦୁର୍ଲଭ । ଏଥିପାଇଁ ଦୁଃଖ କଷ୍ଟ ପାଆନ୍ତୁ ପଛେ ଦିଅ ଗ୍ରୁଡ଼ ସମସ୍ତଙ୍କୁ, ଜନ୍ମ ହେବାର ଅଧିକାର ଦେଇଦିଅ । ଏ ପାପ କଥା କ'ଣ, ଆଉ କୋଉ କଥା କ'ଣ, କଉଣସିଥିରେ ମୀମାଂସା ବୋଲି ନାହିଁ । ସବୁଥିରେ ଦିଆନିଆ ଅର୍ଥ । ଏଇଟା କରି ନଇଲେ ସେଇଟା କରି । ବୁଝିଲା ବେଳକୁ କେହି କିଛି ଜାଣନ୍ତି ନାହିଁ । ଗୋଟାଏ ଗୋଟାଏ ଖିଅ ଧରି ଖାଲି ପାଟିତୁଣ୍ଡ କରୁଛନ୍ତି । ସଂସାର ତ ମହା ଜଞ୍ଜାଳ । ଏଥିରେ ପଡ଼ି ଘାଣ୍ଟି ହେବାକୁ କାହାକୁ ସୁଖ ଲାଗୁଛି ? ନିଜେ ତ

କାଦୁଅରେ ପଡ଼ିଲ, ଆଉ ଗୁଡ଼ାକୁ ଆଣି ସେଥିରେ ପକେଇ ଚକଟିବାର କି ତାତ୍ପର୍ଯ୍ୟ ଅଛି ? ସେଥିରେ ଫେର୍ ଗୋଟିଏ ମହା ସମସ୍ୟା ଲାଗିଛି । ଶାସ୍ତ୍ର ପୁରାଣ ସିନା କହୁଛନ୍ତି ଯେ ମରଗଲେ ଆତ୍ମା ପୁଣି ଅନ୍ୟ ଘଟେ ପଶି କର୍ମଫଳ ଭୋଗ କରେ ବୋଲି—ମାତ୍ର ମନ କ'ଣ ମାନୁଛି କି ମରଗଲାଠୁ ସରଗଲା ନା ! ଆଉ ତେଣିକି କ'ଣ ଥାଏ ? ଯଦି ସେସବୁ କିଛି ନାହିଁ, ତେବେ ଗଲା କି ସବୁ । ଆଉ ଆତ୍ମା କୁଶଳ କ'ଣ କରିବ, ଜନ୍ମ ବା କାହିଁକି ହେବ ? ଗୁଡ଼, ବଡ଼ ଜଟିଳ କଥା ଏସବୁ । ଆମର ଏବେ ଏଥିରେ ମୁଣ୍ଡ ଖେଳେଇବାର କ'ଣ ଅଛି ? ଏଣୁ ଏଣିକି ଯେସବୁ ଆସିବେ ତାଙ୍କ ପାଇଁ ଏଗୁଡ଼ାକ ସମସ୍ୟା । ହଉ ହେ, ତୁମେ ଏବେ ଯାହା କହୁଛ ସେଇ କଥା ରହୁ । ଆମର ତ ଆଉ ବଳ ନାହିଁ ଯେ କହିଦେବୁ ଏଇଟା ଠିକ୍ ସେଇଟା ଭୁଲ୍ ବୋଲି !

"ତୁମେ ଏଇ ପାନଟା ନିଅ, ଏଥିରେ ବେଶି ଗୁଆ ଅଛି ।"

ସୁଦର୍ଶନ ନଦେ ପାନଟା ବଢ଼େଇଦେଇ ବସିଗଲେ । ସେଇ ଗୋଟିଏ କଥାରେ ପୁଣି ଖିଅ ଧରି କହିଲେ—"ଆମ ଗାଁ ନିଧି ମହାନ୍ତିର ଯାହା ହେଲା ତ ଶୁଣିଥିବ । ସବୁ କଥାରେ ତ ସେଇଟା ଜାଣିବାର ହେଇ ହମହମ ହେଉଥିବ । ବାହାରପଡ଼ିଲା ଅପ୍ରେସନ ହେବାକୁ । ସେତେବେଳକୁ ତାର ଯୋଡ଼ିଏ ପିଲା—ଗୋଟିଏ ପୁଅ, ଗୋଟିଏ ଝିଅ । ସେ ଯେତେବେଳେ ଫେରିଲା, ସମସ୍ତଙ୍କ ମୁହଁରେ ଖାଲି ତାରି କଥା । ନୂଆ ଅଫିସର ତାକୁ ଦିଲେ ଗୁଡ଼େ ନାହିଁ କି ଯେ ମଧ୍ୟ ଅଫିସର ପାଖରୁ ଘୁଞ୍ଚେ ନାହିଁ । ହଉ ହଉ କି କାଳଜର ପଡ଼ିଲା ଆସି ଯେ ତାର ଯୋଡ଼ିକଯାକ ପିଲା ସେଥିରେ ଉଠିଗଲେ ।"

"ଓଃ, ଦୈବୀଦଣ୍ଡ ପଡ଼ିଗଲା ଲୋକଟାକୁ !"

"ଆଉ କ'ଣ କରିବ ? 'ଆପଣା ହସ୍ତେ ଜିହ୍ୱା ଛେଦ, ତାର କେ ଅଛି ପ୍ରତିବାଦୀ !' ଗୁଡ଼ାଏ ଧାଁ ଦଉଡ଼ କଲା, ଛେଚ କଚ ହେଲା, ପଇସା ପାଣି ପରି ଖର୍ଚ୍ଚ କଲା । ହେଲେ କ'ଣ ହେବ, ନେଡ଼ା ଗୁଡ଼ କହୁଣୀରୁ ବୋହିଗଲାଠୁ ଆଉ ଜିଭ ଲମ୍ବେଇଲେ କି ଲାଭ ? ଏଡ଼େ ସୁନ୍ଦର ମଣିଷଟା ଏବେ କଳାକାଠ ପଡ଼ିଗଲାଣି । ତାକୁ ଦେଖିଲେ ଚହ୍ନି ପାରିବ ନାହିଁ ।"

"ମୂର୍ଖ ସ୍ୱାପ, ଏଥିରେ ମାତ୍ର ଅଖଡ଼ରେ ବଉଁଶ ବୁଡ଼େଇ ଦେଲା । ଆଉ ତ ଏ ଜନ୍ମରେ ପୁଅଝିଅ ମୁହଁ ଦେଖିବା ଯୋଗ ନାହିଁ; ସାତପୁରୁଷ ପାଣି ମଧ୍ୟ ବୁଡ଼ିଲା । ମହା ମାମଲତକାର ସେ ନିଧି ମହାନ୍ତି । ଆମର ବୟସ ହେବ । ଦି'ପଇସା ବାପ ଅମଳରୁ ଅଛି ବୋଲି ତାକୁ ମଣିଷଟାଏ ମାଛି ଜ୍ଞାନ ହେଲା । ସେ ଖାଲି କହିବ—କଲେକ୍ଟର ତାକୁ ପାଗ୍ରେଟି ନେଇ ଘରେ ଖୁଆଇଲା, କମିଶନର ତା ଜ୍ଞାତ । ଏମିତ ଖାଲି ଗପିବ ଯେ କାହିଁରେ କ'ଣ ! ପୁରୁଣା ବାହାପିଆ ସ୍ୱାପ ! ଗଞ୍ଜେଇ ଟିକିଏ ଲେଖାଁ ଖାଏ, ଖାଲି ଗପେ । ମାତ୍ର ଏବେ ତା'ର ସବୁ ବଦଳିଯାଇଛି । ଘରଟି ଭିତରେ ବସୁଛି; କାହାକୁ ହେଲେ ପଦେ କଥା କହୁ ନାହିଁ ।"

"ଲୋକଟା ଠକିହୋଇଗଲା ନା ? ମୁଁ ତା ବାପ ରତ୍ନାକରକୁ ଜାଣେ । ସେଇଟା ଭଲଲୋକଟାଏ ଥିଲା । ଦାନଧର୍ମ ଖୁବ୍ କରୁଥିଲା । ଏଇ ନିଧିଆ ଜନ୍ମ ହେବାକୁ ସେ କେତେ

ପଇସା ଖର୍ଚ୍ଚ ନ କରନ୍ତୁ ! ମାମୁଁ ଆମର ତା ପାଇଁ ଗୋପାଳ ସହସ୍ର ନାମ ବର୍ଷେକାଳ ଜପ କରନ୍ତିନ୍ତ । ଏତେ ବ୍ରତ ଉପାସ କରି ପୁଅ କ'ଣ ନା ଶେଷକୁ ପାଣି ଟିକିଏ ଦେବାକୁ ବରିଶରେ କେହି ରହିଲେ ନାହିଁ । ସବୁ ଭାଗ୍ୟ ହେ ନନ୍ଦେ ! ତୁମେ ସିନା କହିବ ମିଛ ବୋଲି, ପଛେ ଫେର୍ ମାନିଯିବ ଯେ !''

''ସତ, ସତ ! ଏତେ ସମ୍ପତ୍ତି ଆଉ କେଉଁଥିକି ଯୋଗ୍ୟ ହେଲା ? ପର ଘରୁ ଦେଇଲେ ପୁଅଟାଏ କରିବ । ତା ନାଁରେ ସବୁ ଲେଖିଦେବ । ଖାଲି ଲୋକାଙ୍କରକୁ କ'ଣ ନା ପୁଅ ! ନ ହେଲେ ଗୁଡ଼—ସେ କ ପୁଅରେ ଲେଖା !''

''ବୁଝିଲ କହେ ନନ୍ଦେ ! ବଡ଼ ବିଚିତ୍ର ଏ ସଂସାର । ଏଇ ରଘୁନାଥ—କା'ଲି ପରି ଲାଗୁଛି—ଜନ୍ମ ହେଲା ଯେତେବେଳେ, ନନା ସେତେବେଳକୁ ବୟସ ଥିଲା ଲୋକ, ଭାରି ଖୁସିଟାଏ ହୋଇ କହିଲେ, ଓହୋ ! କୁଳକୁ ମୋର ଭଗୀରଥ ପୁଣି ଜନ୍ମ ହେଲା । ସେ ପ୍ରଭୁ ରଘୁନାଥେ ଏହାକୁ ଆୟୁଷ ଦେଇଥାନ୍ତୁ । ଓଡ଼ଗାଁରେ ଯାଇ ବାଳ ପକେଇବ ।' କାଲି ପରି ଲାଗୁଛି, ମାତ୍ର ସମୟ କେଡ଼େ ବେଗି ଯାଉଛି ଦେଖ । ତା'ର ପୁଣି ଆସି ପୁଅ ହେଲା, ମୁଁ ତା ଟିପପ୍ପଣୀ ଲେଖିଲି । ଧନ୍ୟ ବୋଲିବା ନା ତାକୁ ଯେ ଏ ଲୀଳା ଲଗେଇଛି । ଆଖି ଆଗରେ କ'ଣ କେତେ ଘଟିଯାଉଛି । ଏ ପିଲାଗୁଡ଼ାକ ହୁ ହୁ ହୋଇ କେମିତି ବଢ଼ି ଯାଉଛନ୍ତି । ମଣିଷ ଖାଲି ତାଟକା ହୋଇ ଅନେଇ ରହିବା କଥା । କାଳଚକ୍ର ବୁଲୁଛି, ଆମେ ମଧ୍ୟ ସେଥିରେ ପୋକ ମାଛି ଭଳି ଲାଖି ହୋଇ ବୁଲୁଛୁ । ମଣିଷ କ'ଣ ଜନ୍ମରହସ୍ୟ ଭେଦିବ, ତାର କଳନା କରିବ ବା ତାକୁ ରୋଧିବ ! ପୁଳାଏ ଘାସ କେମିତି ଜାତ ହେଉଛି ବୁଝିବାକୁ ପୁଅ କାହିଁ ମୋତେ କହିଲ ଆଗ ?''

ନନ୍ଦେ ଶୂନ୍ୟକୁ ଗୃହିଁ ପାନ ଘେରେଇ ଲାଗିଥାନ୍ତି । କିଛି ସମୟ ଗଲା । ଦାସେ ବନ୍ଧାବନ୍ଧ କରି ସବୁ ଆଡ଼େଇ ରଖିଲେ । ଗାମୁଛା ଖଣ୍ଡ କାନ୍ଧରେ ପକାଇ ଉଠିବାର ଉପକ୍ରମ କରୁଛନ୍ତି, କହିଲେ—''ମୁଁ ଠିକରେ ଗୋଟିଏ କଥା କହୁଛି ଶୁଣ । ମଣିଷ ଭିତରେ ପାପର ଭାଗ ବହୁତ ବଢ଼ିଗଲାଣି । ଏଣୁ ଗୁଡ଼ାଏ ସଂହାର ହେବ । ତା ଦିନ ପାଖେଇ ଆସିଲା । ଯେଉଁ ବୁଦ୍ଧି ବଳରେ ସେ ସବୁ ଜୟ କରି ଆସିଥିଲା, ସେଇ ବୁଦ୍ଧିର ବ୍ୟାଘାତ ଘଟିବ । ବୋମା ଫୁଟାଇ ନିଜେ ନିଜକୁ ସେ ମାରିବ । ଏ ଆଡ଼୍ ଜନ୍ମନିରୋଧ କରି ମଧ୍ୟ ମାରିବ । କଳ୍କି ଅବତାର କ'ଣ ରୂପ ନେବେ କି ? ସେ ପରା ସେମିତି ଶୂନ୍ୟରେ ରହି ସବୁ ଗ୍ରାସ କରିଯିବେ । କୋକୁଆ ଭୟ ଯେମିତି ଯଦୁକୁଳକୁ ଖାଇଗଲା, ସ୍ଥାଙ୍କୁ ସେମିତି ଅଜଣା ଭୟ କାହିଁ ଆସି ଗ୍ରାସିଲାଣି । ଏଣିକି ଏଣିକି ସବୁ ବିପରୀତ ବୁଦ୍ଧି ଦେଖିବ ।''

ବଂଶୀ ଅଙ୍ଗୁଠି ଦେଖେଇ ଚେତେଇଲା ପରି ଦାସେ ଏସବୁ କହିଲାରୁ ନନ୍ଦଙ୍କୁ ଟିକିଏ ଅଡ଼୍ଆ ଲାଗୁଥାଏ ।

''ହେଇ, ଜୟୀ କେମିତିଆ ଟୁକୁଆକୁ କନ୍ଦଉଛି ଦେଖ ! ଏ ଛକ-ଜାମାଟା ପୁଣି ସେ ପିନ୍ଧିବ । ମୁଁ ମୋ ଖଣ୍ଡ କାଢ଼ି ପିନ୍ଧିଲି । ତା'ଟା ସେ ମଇଳା କରିପାରିଲାଣି । କହୁଛି ଏଇଟା ପିନ୍ଧିବ ବୋଲି ।''

ବଟକୁ କିଛି ସମୟ ଚାହିଁରହିଲେ ଦାସେ ।

"ହଉ ରେ, ସେଇଟା ସେ ଟିକିଏ ପିନ୍ଧିଥାଉ । ତା'ର ଛୁଟିଗଲେ ସେ ଫେର୍ ଦେଇଦବ ନାହିଁ ! ରେ, ଛାଡ଼ୁ ରେ । ଆରେ ବାପା ବଟ, ଦଉଡ଼ି ବାପା, ଏସବୁ ଟିକିଏ ରଖିଦେବୁ ଯା···ଗ୍ରହଲ୍ ହେ ନହେ, ଯିବା ଦୋକାନ ଆଡ଼ ହେଇ ବୁଲିଆସିବା । ଦହଲ କାମ ଛୁଡ଼େଇଦେଲେ ଫେର୍ ମନ୍ଦିରସେବାକୁ ଯିବାକୁ ହେବ ।"

# ଭାଗ୍ୟଂ ଫଳତି

"ନୀଳକଣ୍ଠ ତ୍ରିପାଠୀ ପୁଅ ଇନ୍ଦ୍ରମଣିର ବାହାଘର ବୈଶାଖ ଶୁକ୍ଳ ଦଶମୀ । ପୁରୀର ମହାପାତ୍ରଙ୍କ ଝିଅ ଇଲା ମହାପାତ୍ର ସାଙ୍ଗରେ ହବ ।"

"ଇଲା ନା ପିଙ୍ଗଳା ! ଏ କି ନାଁ ହେ !"

ଚଷମା ଉପରୁ ସନାତନ ଦାସେ ସ୍ତ୍ରୀଙ୍କୁ ଅଳ୍ପ ଅନେଇଲେ । ପୁଣି ପଢ଼ିଲେ, କାର୍ଯ୍ୟନିର୍ଘଣ୍ଟ—ମଙ୍ଗଳନ, ବରାନୁଗମନ ।···ଇସ୍, କେମିତିଆ ସବୁ ନିମନ୍ତ୍ରଣପତ୍ର ଇନ୍ଦ୍ରମଣି ଯୋଆଡ଼ୁ ଛପେଇ ଆଣିଛି ଟିକିଏ ଦେଖ ! ବା, କେଡ଼େ ସୁନ୍ଦର ହୋଇଛି !"

"କାହିଁ, କେମିତି ହୋଇଚ ମତେ ଟିକିଏ ଦବଟି ଦେଖେ ! ଯୋଡ଼ପାଡ଼ ଜୀବନରେ କ'ଣ ଅକ୍ଷରଟିଏ ଶିଖିଲି ! ସୁନାରେ ଗଢ଼ିଲା ପରି ଅକ୍ଷରଗୁଡ଼ାକ କେମିତି ଦାଉଦାଉ ଦିଶୁଛି । ଏଇଟା କ'ଣ ? କେମିତିଆ ପୂର୍ଣ୍ଣକୁମ୍ଭ ଲେଖାହୋଇଛି !"

"ଦେଖିଲାଣି—ଅବିକଳ ପୂର୍ଣ୍ଣକୁମ୍ଭ ପରି ! ହଇରେ ଭାଇଗ, ଯିବୁଟି ବାପ, ପାଣିଟାଳେ ଆଣିବୁ ପିଇବା । ତୁ ବଡ଼ଟିଏ ହୋଇ କ'ଣ ଦେଖୁଛୁ ମ !"

"ଅରେ ଚାହ ଟିକିଏ ! କ'ଣ ଦେଖେଇଦେବେ ଏଗୁଡ଼ାକ !" "ଓଁ ଶ୍ରୀ ଶ୍ରୀ ପ୍ରଜାପତୟେ ନମଃ···ମହାଶୟ !" ଟୁକୁମା' ବସିଥାନ୍ତି । ତାଙ୍କ ପଛପଟୁ ଲଇଁ ବଟ ପଢ଼ିପକାଉଥାଏ । ଜସ୍ମୀ ବାଁ ପଟୁ ଆଙ୍ଗୁଠି ଦେଖେଇ କହୁଲା, "ଏଇଟା 'ମ'—ହେଇଟି 'ଖ', ଖ ।"

ଟୁକୁଆ କୋଡ଼ ଭିତରକୁ ପଶିଆସି ଧରି ଟାଣିଲା କାଗଜଖଣ୍ଡକ !

"ଟୁକୁଆ, ମତେ ଟିକିଏ ଦେ'ରେ ! ଦବୁ ନାହିଁ, ଦବୁ ନାହିଁ ତ ? ହଉ, ତା'ହେଲେ ତୋ'ର ମୋର ଆଉ ସାଙ୍ଗ ନାହିଁ ।"

"ଦେ'ନା ଟୁକୁଆ, ଜସ୍ମୀକୁ ଜମା ଦେ'ନା । ଆ ମୋ ସାଙ୍ଗରେ, ଆମେ ଖେଳିବା, ସେଇଟାକୁ ଦଅଁ କରିବା ।"

ବଟ ଟୁକୁଆକୁ କାଖକରି ନେଇଗଲା । ଜସ୍ମୀ କାନ୍ଦି କାନ୍ଦି ତାଙ୍କ ପଛରେ ଗୋଡ଼ଉଥାଏ ।

"ଏଇଟାରେ କ'ଣ ପାଣି ଆଣିଲୁ ମ ? କାହିଁ, ଚେମ୍ବୁଟା କୁଆଡ଼େ ଗଲା କି ?"

"ପାଇଲି ନାହିଁ" କହି ଭାଇଗ ମଧ୍ୟ ଘର ଭିତରକୁ ପଳେଇଲା ।

"ହଇହେ, ଏମିତିଆ କ'ଣ ନିମନ୍ତ୍ରଣ କଲ ମ ? ନିଜେ ଆସି ଡାକିବ ନାହିଁ ? ହଳଦୀ ପିଠଉ ବାଣ୍ଟିବ ନାହିଁ ? ରଘୁ ବିଶ୍ୱାଳଘରକୁ ଆମର ଘରପିଛା କାଠିଏ ଲେଖାଁ ହଳଦୀ, ବେଳେ ଲେଖାଁ ପିଠଉ ପରି ବଣ୍ଟାହୋଇଥିଲା ! ଇଏ କ'ଣ ଆଉ ଏଡ଼େ ଥିଲା-

ଘର ? ରଙ୍ଗଢଙ୍ଗ କରି କାଗଜଖଣ୍ଡେ ଦେଲେ ହୋଇଗଲା ! ହଳଦୀ ପିଠଉ ପରି ଶୁଭ ! ମାଇକିନିଆ ତ କେହି ହାଣ୍ଡି ମଙ୍ଗଳାକୁ ଯିବେ ନାହିଁ ।"

"ଏଣିକି ପରି ସବୁ ନବ୍ୟ ଧରଣ ହେଲା – ତୁମ କାଳର କଥା ଆଉ ଅଛି ? ତମେ ତ ପିଲାଦିନ୍ୟା ଖାଣ୍ଟିହେଇଥିଲ । ଏସବୁ ହୋଇଛୁଟିଲେ ବୋହୂକୁ ଏକାଅଠରେ ଘାଟରେ ଲମ୍ବେଇ ଆଣିବେ । ଭଲକଥା, ନଇଲେ ସ୍ବାପ ବର୍ଷ ସଂଖ୍ୟା ଛଡ଼ି ବସିଥିବ ।…କହମନ୍ତି କ'ଣ ନୀଳକଣ୍ଠ ପଣ୍ଡିତ ଦେବ ନାହିଁ କି ? ଜାଣିବାର ଲୋକଟା, ସେ ଗୁଆ ପକେଇଦେବ କହୁଛ ? ଆମର କୋଉ କାଳରୁ ତାଙ୍କ ଘର ସାଙ୍ଗେ ଡକାହକା ଅଛି ! ବେଲ୍ଲର ମଧ ଢଆଁନିଆ ଅଛି । ଗୁଆ ସେ ନଷ୍ଟେ ଆସି ଦୁଆରେ ଦେଇଯିବ । ଆଉରି ପାଞ୍ଚ ଦିନ ଅଛି ସମସ୍ତ । ପୁଅ ସିନା ନୂଆ ପାଠୁଆ ହୋଇଗଲା, ବାପଟା ତ ଫେର୍ ଆମକାଳିକା ଲୋକ । ଲୋକାଚାରକୁ କ'ଣ ସେ ପକେଇଦେବ ? କେଜାଣି ?"

"ଏ ଦିନେ କ'ଣ ବେଲ୍ଲର ମିଳିବ ଯେ ବେଲ୍ଲର ଦେବ ? ପୂଜାଏ ନଡ଼ିଆକୁ ତ ଆସି ଦ' ଟଙ୍କା । ଗୋଟେ ବୋଇତାଳୁ ବାଡ଼ିରେ ଫଳିଥିଲା ଅଛି, ତାକୁ ଦେଇଦେବା । ବାଇଗଣ ବୋଟେ, ଖଣ୍ଡେ ଖମ୍ବଆଳୁ ହେଲେ ହେବ । ଏବଠୁ ଗୋଟେ ଗୋଟେ ଯୋଗାଡ଼ କରି ରଖିଲେ ଯାଇ ସେତେବେଳକୁ ସହଜ ହବ । ନଇଲେ ଧନ୍ଦ ହୋଇଯିବା ।"

"ହଉ ଦେଖିବା ।"

ସକାଳ ପହରୁ ମନ୍ଦିରରୁ ଫେରିଆସି ଦାସେ ଲାଗିଛନ୍ତି ସାରେ ତନ୍ନ ବସି ସଫା କରିବେ । ମହି ସୂତା କାଢ଼ିଦେଇ ଗୋଟି ଗୋଟି କରି ପଟ ପିଢ଼ା ଉପରେ ରଖୁଛନ୍ତି । ପାଖରେ ଥାଳିଆରେ ନଡ଼ିଆ ସଢ଼େଇ ଅଙ୍ଗାର, ଟିକିଏ ବଟା ହଳଦୀ ନଡ଼ିଆ ତେଲରେ ପାଗ ହୋଇ ରଖାହୋଇଛି । ସେଇଥିରେ ଟିକିଏ କନା ବୁଡ଼େଇ ପଟକୁ ନିର୍ମଳ କରି ସଫା କରିଦେଉଛନ୍ତି ।

"ଆଜି ଏସବୁ ରଙ୍ଗ ଲାଗିବ, ଶୁଖିବ; ତାକୁ ବାନ୍ଧି ରଖିବ ବୋଲି ଭାବୁଛ ?"

"ନାହିଁ ହେ, ଏ ଖଣ୍ଡିକ ପୋଥି ନିବୋଲଣା କରି ରଖିଦେବି । କାଲିକି ଫେର୍ ବାକିସାକ ସାରିଦେବା । ଦି'ଖଣ୍ଡ ପାନ ଭାଙ୍ଗିଆଣନ୍ତ ନାହିଁ ? ପାଟିଟା କେତେବେଳୁ ଆମ୍ବିଳ ଧରିଗଲାଣି ।"

"ପାନ ପରି ଆଜି ସକାଳୁ ନାହିଁ । କଡ଼େ ପାନ ପଥରଦାନ ଓପରଓଳି ଆସିଥିଲା । ଆଉ କେତେ ଯାଆନ୍ତା ?"

"ହଉ, ଦୋକତା ଡବାଟା ମୋର ଆଣ ଟିକିଏ । ମୋ ଅଣ୍ଟାରେ ସେଇଟା କେତେବେଳୁ ନାହିଁ ।"

"ତାକୁ ତ ଖୋଜି ଖୋଜି ଦିନ ଯାଇ ରାତି ପାହିଯିବ । ତୁମେ ତାକୁ ଠାଏ ରଖନ୍ତ ବୋଇଲେ ସିନା ମଣିଷ ଯାଇ ନେଇଆସନ୍ତା ।"

ସ୍ତ୍ରୀ ଟଳିଯିବାରୁ ଦାସେ ବସି ଭାବିଲେ, କ'ଣ କରିବ, ବେଲ୍ଲର ତ ଅବଶ୍ୟ ଦେବାକୁ ହେବ । ଏଣେ ମାସ ମୁଣ୍ଡାଳି । ପୁଅ ଦେବା ପଇସା ସରିଆସିଲାଣି । ନୀଳକଣ୍ଠର

ପୁଅ ବଢ଼ୁଥିବ୍ଚି, ଯେତେ ଯାହା ହେଲେ ସୁଦ୍ଧା ଆମେ ଯାଇ ଛୁଟ୍ଟା ହାତରେ ଠିଆ ହେବାଟା କ'ଣ ସୁନ୍ଦର ଦିଶିବ ? ସେ ତ ଫେର୍ ଏତେ ଜିନିଷ ସବୁ ଆଣି ରଘୁ ବଢ଼ୁଘରକୁ ମୋ ଦୁଆରକୁ ଆସିଥିଲା । ଆମକୁ କଷ୍ଟ ହେଲେ ତ ନେଇଯିବାକୁ ପଡ଼ିବ । ତା' ସାଙ୍ଗରେ ପିନ୍ଧା ଯୋଡ଼ ଦେଇପାରିବା ନାହିଁ—ନିଜ ପକ୍ଷ ଅନୁସାରେ ଫେର୍ ନେବା ତ ! ତାର ଭାଗ୍ୟ ଏଇଲାଗେ ବଡ଼ ତେଜ । ସ୍ୱାପ ବର୍ଷ ଦଶଶିଟା ଆଗରୁ ତାକୁ କେହି ପଗ୍ଭରିବାକୁ ନ ଥିଲେ । କାଶୀରୁ ଫେରି ଖାଲି କର୍ମ କାଣ୍ଡି ବୋଲୁଥାଏ, 'ପୁରୁଷ'କୁ 'ପୁରୁଖ' ବୋଲି ପଢ଼ୁଥାଏ । ଗାଁଟାଯାକରେ ତା'ର ବୋଲି ଗୋଟେ ହେଲେ ଯଜମାନ ନ ଥାନ୍ତି । ସମସ୍ତଙ୍କର ଭୟ, କାଳେ ବୈଦିକ ସୂତ୍ରରେ ବେଶି ସରଞ୍ଜାମ ଲୋଡ଼ାପଡ଼ିଯିବ ।···ତାକୁ ଏବେ ଦେଖ—ଭାଗ୍ୟ ଫିଟିଗଲା । ଜମିବାଡ଼ି, ପକ୍କାଘର କରି କେତେ ଲୋକ ହୋଇ ସେ କେତେ ମାନ୍ୟଚୁନ୍ୟରେ ଗାଁରେ ଚ଼ୁଲୁଛି । ବୁଢ଼ା ନାହାକ ପରି ଲୋକ, ଯାହାକୁ ଦେଖିଦେଲେ ଏ ମଣିଷ କରଛଡ଼ା ଦେଇ ଆଡ଼େଇ ହୋଇଯାଉଛି, ପୁଣି ପଣ୍ଡିତକୁ ଆସୁ ନମସ୍କାର ଯାଉ ନମସ୍କାର ଭୁଣିଦଉଛି । ପଣ୍ଡିତ ବଙ୍କା ବାଡ଼ିଟାକୁ ଥୋଡ଼ିରେ ଲଗାଇ ଆଶୀର୍ବାଦ କରିବ । ତା ପୁଅ ଇଞ୍ଜିନିଅର । ତାକୁ ଗାଁଟାଯାକରେ କେହି ଆଉ ତ୍ରୁଟି କରି ଦୁଇ ପଦ କହିବା ଭଲିଆ ନାହିଁ ।

ଏଇ ନୀଳକଣ୍ଠ—ବୟସରେ ଦାସଙ୍କଠୁ ଦୁଇବର୍ଷ ବଡ଼ ହେଲେ ହେବ, ନଇଲେ ନାହିଁ—ଏମାଠି ତାଙ୍କ ସାଙ୍ଗେ ପାଠ ପଢ଼ି ଯାଉଥିଲା । ସ୍ୱାପ, ବିଧା ମାଇଲେ ବିଷ୍ଟୁ ଆସୁନଥିଲା ଏଇଟାକୁ । ହାତ ବସିବ ବୋଲି ହଜାରେ ତାଳପତ୍ରରେ ମୁଣ୍ଡୁଳା ବୁଲେଇଥିବ । ତେବେ ମଧ୍ୟ ଅକ୍ଷର ଲେଖିବ ବରାଡ଼ି ଗ୍ଭମ୍ପୁଡ଼ିଲା ପରି । ମୁଣ୍ଡିଆରୁ ତିନି ବୋଝ ହେବ ଖଡ଼ି ଖଡ଼ି ଚଲେ ଘୋରିଥିବ । ପଣ ପଢ଼ିକା ତ ତା ହାତରେ ଜମା ହେଲା ନାହିଁ । ମାତ୍ର କେଉଁବାଗେ ଥରେ ଧରିନେଲା ସଂସ୍କୃତ ଯେ ପଣ୍ଡିତ ଗଲା ।··· ସେଦିନ ଟୋଲ୍କୁ ଆସିଲେ ଜମିଦାର । ଆମ ଦୁ'ଜଣଙ୍କୁ ଡକ୍ରାହେଲା । ମୋ ଯୋଗକୁ ପଡ଼ିଲା ତା ବେକରେ ଫୁଲମାଳ ଲମ୍ବେଇବା; ସ୍ୱାପ ନୀଳକଣ୍ଠ ଆ ବୋଲିଲା ଶ୍ଳୋକ । ସେଇଥିରେ ତ ଜମିଦାର ଭୋଳ ହୋଇ ବସିଲା କ'ଣ ଗୋଟେ କରିଦେବ ବୋଲି । ଟୋଲ ପଣ୍ଡିତେ ନାନା ବାଗରେ ବୁଝେଇଦେଲେ । ନୀଳକଣ୍ଠ ବୃତ୍ତି ପାଇଗଲା ମାସିକ ଗ୍ଭରିଶ ଟଙ୍କା । ନଇଲେ ଏତେ ଟଙ୍କା ପ୍ରତି ମାସରେ ଦେଇ ସେ ନା ତା ବୋପା ପଢ଼ିଥାନ୍ତା କାଶୀରେ ପାଠ !··· ତା' ପରେ ମୁଁ ଯେତେ ଶ୍ଳୋକ ବୋଲିଲେ ମଧ୍ୟ କ'ଣ ଆଉ କିଏ ଶୁଣିବା ଲୋକ ଅଛି ନା ବୃତ୍ତିଦେବା ଲୋକ ଅଛି ? ଟିକିଏ କ'ଣ ପଢ଼ିଦେଇ ନନାଙ୍କ ଯଜମାନିଆ କର୍ମରେ ଲାଗିବାକୁ ହେଲା । ତା ବାପ ଗୋପାଳ ତ୍ରିପାଠୀ ଆସି ଆମ ଦୁଆରେ କେତେ ଦିନ ବସିଥିବ । ଲକ୍ଷ୍ମୀନାରାୟଣ ମନ୍ଦିରରେ କିଛି ପର୍ବାଣି ହେଲେ ତାକୁ ନନା ଡାକୁଥିଲେ । ସେଇଟା ତା'ର ସଦାବେଳେ ଆଶା ଥାଏ । ଦେଖୁ ଦେଖୁ କ'ଣ ନା ତା'ର ପୁଅ ହେଲା ବଡ଼ ପଣ୍ଡିତ, ଥିଲାଲୋକ—ଆମେ ଯେଉଁ ପୂଜକକୁ ସେଇ ପୂଜକ ହୋଇ ରହିଗଲୁ । ମୁଁ କ'ଣ ସେ ଧାଡ଼ି ଧରିଥିଲେ ହେଇନଥାନ୍ତା କି ? ସେ ପରି ହବ ନାହିଁ । ଗ୍ରହ ସଞ୍ଚାର ପରି ହେଲା ମୂଳ ।

ସେଇ ଯଦି ବିଦ୍ୟାପରକୁ ଟେକିଦେଲା, ଟେକିଦେଲା; ନଇଲେ ଯେତେ ବାଡ଼େଇ ହେଲେ ବି ହୁଉଥାଅ ପଇସାକର କାମ ନାହିଁ ।"

ଏ ଚନ୍ଦ୍ରମଣିଟା ହେଲେ ଡୁଣ୍ଡା କପାଳିଆ ? ସେ ପରିଶ୍ରମ କରି ପଢ଼ିଥିଲା ମାତ୍ର । ହେଲେ ବିରାଡ଼ି କର୍ମକୁ ଶିକା ଛିଡ଼ିବା ନ୍ୟାୟ ହେଲା ନା ! ସ୍ତ୍ରୀ'ର ପରୀକ୍ଷା ସରିଲାବେଳକୁ ବୃତ୍ତି ଆସି ମିଳିଗଲା । କାହିଁ କୁଆଡ଼ୁ ସବୁ ଯୋଡ଼ାଯୋଡ଼ି ହୋଇଗଲା । ଆମ ରଘୁଟା ହାତରେ ତ ହେଲା ନାହିଁ । ଜନପୁରୁଷରେ କୂଳ ବାଜୁଙ୍ଗା ଯାହା କହନ୍ତି ସତ । ମାତ୍ର ସେ ଏତେ ପଢ଼ି ଏବେ କ'ଣ ହୋଇଛୁ, ଆଉ ରଘୁ ନ ପଢ଼ି କୋଉ ଖୋଜେ ରହୁଛୁ ? ଆମର ଏତେବଡ଼ କୁଟୁମ୍ବଟାକୁ ସେ ଫେରେ୍ଟଙ୍କା ଦଉଛୁ ନା ନାହିଁ ! ସେଥିକୁ ଭାବିଲେ କ'ଣ ହେବ ? ଭାଗ୍ୟଠୁ ପରା ବଡ଼ କେହି ନାହିଁ ! ମୋର ବଳ ବୟସ ଥିଲା, ପଢ଼ିଥିଲେ କ'ଣ ରଘୁକୁ ପଢ଼େଇନଥାନ୍ତି ! ସ୍କୁଲରେ ଦେବି ବୋଲି ଭାବିଲାବେଳକୁ ଗ୍ରହାଗ୍ଲର ସ୍ୱାପ, ସେ ଝିଅଟା ମଲା । ସନ୍ତାନ ମରିବା କଷ୍ଟ ଆମର ସେଇ ପ୍ରଥମ । ଗଲା କ ସବୁ ଭଣ୍ଡୁର-ହୋଇ । ଶେଷରେ ରଘୁ ପଶିଲା ଟୋଲ୍‌ରେ । ସେଠି ହେଲେ କ'ଣ ସେ ମନଯୋଗ ଦେଲା ? ଏମିତି ହେଜ ହେଁଜ ହୋଇ ସମସ୍ତ ନଷ୍ଟକଲା । ତା ଦେଖାଶିଖା ବାକିଗୁଡ଼ାକ ମଧ୍ୟ ପାଠରୁ ଖେର ବାହାରିଲେ । ସ୍ତ୍ରୀଙ୍କୁ କ'ଣ କହିବା ? ଆମଠୁ ସାତ ସ୍ତ୍ରୀନ ଲୋକ ଯାଇ ଯେଉଁ ପିଅନ କାମ କଲେ, ଆମ ପୁଅ ମଧ୍ୟ ସେଇ କାମ କରି ପଇସା ପଠେଇଲା, ଆମେ ଖାଇଲୁ । ଗୁଡ଼ କ'ଣ କରିବା !

ଚନ୍ଦ୍ରମଣି ପାଠଶାଠ ପଢ଼ି ଆସି ବଡ଼ଲୋକଟିଏ ହେଲା । ତାକୁ ଲକ୍ଷ୍ମୀ ଧନୀଘରେ ମଧ୍ୟ ବିଭାହେଲା । ଶଶୁରଘରୁ କେତେ ସନ୍ମାନ ପାଇବ । ଆମ ପରି କିଏ ଅଛି ? ଆରେ ଯାଃ···ଏଥିରେ ମନରେ ଗୋଟେ କଷ୍ଟ କଲେ କ'ଣ ହେବ, କି ଭାଗ୍ୟ ନିନ୍ଦା କଲେ କ'ଣ ହେବ ?···ପୁଣି କଲିକତିଆ ବାଜାବାଲା ଆସି ମଦନପୁରରେ ଅଛନ୍ତି, ସେ ଆସିବେ । ମଟରରେ ପଟୁଆର ହୋଇ ପୁଅ ଯିବ । ଖଣ୍ଡେନଯାକ ଗାଁକୁ ନିମନ୍ତ୍ରଣ ହୋଇଛି । ସେଆଡ଼େ ଚନ୍ଦ୍ରମଣିର ସାଙ୍ଗ ଅଫିସର, ଅମଲାସବୁ ଆସିବେ । ଭାରି ଟେକଟାକରେ ବିଭାଘରଟା ହେବ ।

ହୁଁ ହଉ, ସବୁବେଳେ କ'ଣ ସବୁ କଥା ଅଛି ? ନାଆ ଉପରେ ଗଡ଼ି, ଗଡ଼ି ଉପରେ ନାଆ, ଏମିତି ଚାଲିଛି ନା ! ତା'ର ଭଲ ଦିନ ଆସିଛି ବୋଲି ଆମେ ସହନପାରି ଗମ୍ଭୁ ଗମ୍ଭ ହେଲେ ହବ ! କରେ କହିଲା ପରା, 'କାଳଷ୍ଟ କୁଟିଳା ଗତିଃ ।' କେତେ-ବେଳେ ମଣିଷର କ'ଣ ହେବ ତା କିଏ କହିବ ? କ'ଣଟାଏ ହୋଇଯିବ, କ'ଣ ସବୁ କରିପକେଇବ କହିଲେ କ'ଣ ହୋଇଯିବ ? ସେ ବିନା ସେଆଡ଼ୁ ସ୍ଥିର ନହେଲେ ମଣିଷ ହାତରେ କ'ଣ ଅଛି ସେ କରିବ ! ଯଦି ଭାଗ୍ୟରେ ଗାର କଟା ହୋଇଯାଇଛି, ତାକୁ ମେଣ୍ଟାଇବାକୁ ପୂଅ ନାହିଁ, ସେ ଅବଶ୍ୟ ହେବ । ତା ସକାଶେ ବଳେ ବଳେ ସବୁ ଖଞ୍ଜି ହୋଇଯିବ । ଆଉ ଯଦି ନାହିଁ ତ ନାହିଁ—ଯେତେ ପାରିବାର ଲୋକ ହେଲେ ମଧ୍ୟ ତାକୁ ନ ମାନି ବାଟ ନାହିଁ । ଦଶରଥ ପରା କ୍ଷତ୍ରୀ । କ'ଣ ଇଚ୍ଛା କରିଥିଲେ ଏ ପୃଥିବୀଟାକୁ

ଟାଲି ଦେଇ ନଥାନ୍ତେ, ନା ତାଙ୍କର ଭାଗ୍ୟଚକ୍ର ପଗ୍ ଲେଖାସରିଛ—ସେ ସତ୍ୟ ପାଳି ପୁଅକୁ ବଣକୁ ପଠେଇବେ, ସେଥିରେ ତାଙ୍କର ପ୍ରାଣ ଯିବ । ଆମେ କହିବା ଆମ ଚେଷ୍ଟାରେ ସବୁ ହବ । ଇନ୍ଦ୍ରମଣି ପାଠ ପଢ଼ିନଥିଲେ, ପରିଶ୍ରମ କରିନଥିଲେ କ'ଣ ଭାଗ୍ୟ ଫିଟିଥାନ୍ତା ? ଆରେ ସେ ନୁହେଁ । ତା'ର ଭାଗ୍ୟରେ ଥିଲା ବୋଲି ସେ ସେଇ ଢଗରେ ପରିଶ୍ରମ କଲା, ପାଠ ପଢ଼ିଲା, ସବୁ ହେଲା । ସେ ସୃଷ୍ଟିହଁ ଥିଲେ ସୁଦ୍ଧା ମୂର୍ଖ ହୋଇପାରନ୍ତା ନାହିଁ କି ମଦନପୁରରେ ପିଅନ ହୋଇପାରନ୍ତା ନାହିଁ । ଭବିତବ୍ୟ ହେଲା ସବୁଠୁ ବଡ଼, ସେଇଠି ସମସ୍ତଙ୍କ ପାଇଁ ଭାଗ ଭାଗ ଯୋଗାଡ଼ ହୋଇ ରହିଛି ।

"ଏଇ ନଅ, ବୋଉ ଦୋକତା ଡବା ପଠେଇଲା ।"

"ଆରେ ପଳଉଛୁ କୁଆଡ଼େ ଜମ୍ବୀ···ଆରେ, ବୋଉ କ'ଣ କରୁଛି କ ?"

"କେଜାଣି ।"

"ଚଣ୍ଡାଳ, କ'ଣ ଅସୁ ଜନ୍ତୁ !"

ଦୋକତାରୁ ଟିକିଏ ଲେଡ଼ରେ ଝାଡ଼ି ଝାଡ଼ି ପୁଣି ଚନ୍ଦ୍ରାର ଖିଅ ଧରି ଦାସେ ମୌନ ହୋଇ ବସିରହିଲେ । ଆଚ୍ଛା, ମଣିଷ ଆଖିରେ ସବୁ କଥାରେ ପାତର ଅନ୍ତର ହଣେ ନାହିଁ କି ? ମଣିଷ ଯାହା ପାଏ ତାଠୁ ସବୁବେଳେ ଅଧିକ ପାଇବା କଥା ବୋଲି ସେ ଭାବୁଥାଏ । ତାକୁ ଲାଗେ ଯେ ତା ଭଳିଆ କମ୍ବା ତାଠାରୁ ଊଣା ଲୋକଗୁଡ଼ାଏ ଅହେତୁକ ଅନୁଗ୍ରହ ପାଇଯାଇଛନ୍ତି । ଈର୍ଷା ହୁଏ, ଅସନ୍ତୋଷ ହୁଏ, ମାତ୍ର ଏସବୁରେ ତ ମନରେ ଆଉ ସମାଧାନ ହୋଇପାରେ ନାହିଁ । ନିଜକୁ ବୁଝେଇବାକୁ ତ ଫେର୍ ଉପାୟ ଲୋଡ଼ା । ଭାଗ୍ୟ ବୋଲି କହିଦେଲେ ଅଧେ କଥା ତୁଣ୍ଡି ଗଲା । ସେଥିରେ ଯାହା ଅସମାନ ଭଳି ଦିଶିଲେ ମଧ ତାକୁ ମାନିବାକୁ ବାଧ୍ୟ ନା ! ତା ଯଦି ନ ଧରିଲା ତେବେ କହିବା କର୍ମଫଳ । ଯାହା ନିଜେ କରିଛ, ତାହାର ଫଳ ଜନ୍ମ ଜନ୍ମ ଧରି ଭୋଗ କରିବ । ଯଦି ସେଇଟା ମଧ ମନକୁ ନ ପାଇଲା, ତେବେ ବାକୁ ସ୍ୱର୍ଗଲୋକ ଅଛି । ତମର ଯଦି ଗୁଡ଼ାଏ ଯୋଗ୍ୟତା ଅଛି ଆଉ ତୁମେ ଏଇଠି କିଛି ପାଇଲ ନାହିଁ ବୋଲି ଭାବୁଛ ତୁମ ପାଇଁ ସ୍ୱର୍ଗପୁର ଥୁଆହୋଇଛି ।···

ଗରିବଙ୍କୁ ସଦାସର୍ବଦା ଗରିବ ରହିବାକୁ, ମୁଣ୍ଡପୋଡ଼ କଷ୍ଟ ସହିବାକୁ, ଆଉ କାଳେ ଅନ୍ୟ ଥିଲାବାଲାଙ୍କୁ ଈର୍ଷା କରିବେ ଏଇ ଭୟରେ କ'ଣ ଆଉ ତାକୁ ଭାଗ୍ୟ ଭାଗ୍ୟ କହି ବନ୍ଦୋବସ୍ତ ଦେଇଛନ୍ତି କି ? କେଜାଣି, ଏସବୁ ଗୂଢ଼ କଥା କିଏ ଠିକ୍ ଠିକରେ ଜାଣିଛି ।

ମାତ୍ର କ'ଣ ଭାଗ୍ୟ ନାହିଁ ବୋଲି କହୁଛ ? ଭାଗ୍ୟ ଅଛି ନା ! ଟୋକାଟାକଳିଆ ବୟସରେ କାହାର ବିଶ୍ୱାସ ରହେ ନାହିଁ ଭାଗ୍ୟ ଉପରେ; କିନ୍ତୁ ପଛେ ଫେର୍ ମାଡ଼ ଖାଇ ଖାଇ ଆପେ ବିଶ୍ୱାସ ହୋଇଯାଏ ।···କିଓ, ସେ ସାଆନ୍ତଘର ଝିଅଟା କାହାର କ'ଣ କରିଥିଲା ? ତାକୁ ଯେତେବେଳେ ଦେଖିବେବାକୁ ଆଣିନ୍ତେ, ଓଃ, ନିଆଁ ଜଳିଲା ପରି ଟୋକାଟା ଖାଲି ଜଳୁଥାଏ । ଏମିତି ସୁନ୍ଦର ଝିଅ ନାହିଁ ନ ଥିବ । ତା ବରଟା ହେଲା ଊଣା ପସନ୍ଦ ମଣିଷଟା ! ପଞ୍ଚ ହାତ ଭେଣ୍ଡା । ଟିକିଏ ଯାବନା ହେଲେ କ'ଣ ହେବ, ଦେହରୁ ମାଂସ ଖସି ପଡ଼ିବ । କିନ୍ତୁ କ'ଣ ହେଲା ? ଦିନ ସାତଟା ଭିତରେ ସବୁ ସରିଗଲା ନା ! ସାଆନ୍ତଙ୍କୁ

ଯେତେ କହିଲେ ମଧ୍ୟ ସେ ଆଉ ଝିଅକୁ ବୁଢ଼ଆ କରେଇଲା ନାହିଁ । ସ୍ୱାକୁ କ'ଣ କହିବ ? ସାରା ଜୀବନଟା ହା ହା ହୋଇ ତାର କଟିବ ନା ନାହିଁ ?

ଏମିତି କାହା ମୁଣ୍ଡରେ ବଜ୍ର ପଡ଼ୁଛି ତ କାହା ମୁଣ୍ଡରେ ହୀରା ସୁନା ଜଳସ ଛାଳୁଛି । କିଏ ପର୍ବଣ ଦାନ ଯଜ୍ଞ କରି ପୁଅଝିଅ ମୁହଁ ଦେଖୁନାହିଁ ତ କା'ର ଘରେ ଅନାଦରରେ ଗୋଟେ ପିଲା ବଢ଼ୁଛନ୍ତି । କ'ଣ ସ୍ନେହସବୁ ଲାଗିଛି ? କିଏ ସ୍ୱାକୁ କରୁଛି ? ମତେ କାହିଁକି ଲାଗୁଛି ଯେ ମଣିଷ ଭ୍ରମ । ହାତରେ ସ୍ୱାପ କିଛି ନାହିଁ । ସବୁ କଳ ମୋଡ଼ିଲା ପରି ଜଣେ କରଉଛି ।

ଭାଗ୍ୟ ବୋଇଲେ, ଏବେ କ'ଣ ସେଇ ବିଧାତା ତ ଫେର୍ ଯାହା ଲେଖିଦେଉଛି ସେଇଟା ନା ଆଉ କିଛି ? କୁମ୍ଭାର କଞ୍ଚା ମାଟିକୁ କୁମ୍ଭାଳଚକ୍ରରେ ପକେଇ ହାଣ୍ଡି ଗଢ଼ିଲାବେଳେ ତଳେ ପାଣି ପକେଇ ଲେଡ଼ା ମଡ଼େଇଦିଏ । ଦୁଇ ଟିପ ସଜାରେ ମାଟି ଚିପି ଉପରକୁ ଟେକିଆଣେ । ମଝି ମାରି ଚକଟେଇ ଦିଏ । ତଳୁ ନାଳୁ କାଟିଲା ପରି ସୂତାରେ ହାଣ୍ଡିଟାକୁ କାଟି କାଢ଼ିଆଣେ । ସେ ଶୁଖିବ ପୋଡ଼ାହେବ, ବିକିବାବେଳେ ଠଣା ଠାଇଁ ଠାଇଁ ଦୁଇ ଥର ମାରିଦେଇ କହେ 'ଏଇଟା ଦୁଇ ସେର ଚାଉଳ ଫୁଟିବ···ଏଇଟା ସେରେ ଛିନପା ।' ଗ୍ରେଟ ହାଣ୍ଡିଟି ସେତେବେଳେ ଆହୁରି ଗ୍ରେଟ ଦେଖାଯାଏ । କେତେ ପୋଡ଼ ଖାଇଛି ପରୀକ୍ଷା କରିବାକୁ ଦୁଇ ଥର ଟିପିଲେ ସେଇଟା ଆଉ ଖଁଉ ଖଁଉ ହୋଇ ବାଜେ ନାହିଁ । ସେଇଟି ତ ପାଏ ଜଣା । କିନ୍ତୁ ତାର କ'ଣ ଗ୍ରହ । କୁମ୍ଭାରର ଇଚ୍ଛା ଯାହା ହେଲା ସେ ତାହାହିଁ କରିବ ନା ! ସବୁ ହାଣ୍ଡିକୁ ମଧ୍ୟ ସମାନ କଲେ ଚଳିବ ନାହିଁ । ସେମିତି କିଏ ଆସି ରଜାଘରେ ଜନ୍ମ ହେଲା ତ କିଏ ଭିକମଗା ଘରେ । କିଏ ଏମିତି ବୁଦ୍ଧି ନେଇ ଜନ୍ମ ହେଲା ଯେ ଗ୍ରହିଁଦେଲେ ତାର ପାଠ ହୋଇଗଲା । କିଏ ପୁଣି ସ୍ୱାପ ଏଡ଼ିକ ମୂର୍ଖ ଯେ ଛେଳି ଜଗିବାକୁ ମଧ୍ୟ ଯୋଗ୍ୟ ନୁହେଁ ।

କେବଳ ଆୟୁଷ ନୁହେଁ । ସବୁ କଥାରେ ଯେଝା ମାଣକ ନେଇ ସେ ଜନ୍ମ ହେବ । ସିଧା ଧାଡ଼ି ଧରି ଜୀବନଟିଯାକ ବଞ୍ଚିବା କଥା, ତାକୁ ଅନ୍ୟଥା କେହି କରିପାରିବେ ନାହିଁ । ମଝିରେ ମଝିରେ ଲାଗିବ ଯେ ଜଗୁଆଳି କେହି ନାହିଁ, ମନଇଚ୍ଛା ଚାଲିଯାଅ । ସେଇଠି ପଡ଼ିବ ଚଡ଼କ । ଏକା ମାଡ଼କେ ପୁଣି ଆସି ନିଜ ରାସ୍ତା ଧରି ଚାଲ । ମଝିରେ ମଝିରେ ଚେତେଇ ଦେବାକୁ ହେବ ଯେ କାହାର ସୀମା କେଉଁଠି ! କାହାକୁ ଭିଡ଼ି ଆଣିବ ଅଙ୍କାବଙ୍କା ରାସ୍ତା ଉପରକୁ, ଆଉ ହଠାତ୍ କାହା ତଣ୍ଟିରେ ହାବୁକା ମାରି ନେଇ ଦେଖେଇଦେବ ତା'ର ଏତେ ଓସାର ରାଜଦାଣ୍ଡ । ଅସଲ କଥା ହେଲା, ଏସବୁ ଭିତରେ ସେଇ ଜଣେ । ତାକୁ ମାନିବାକୁ ହେବ । ସେ ଆମକୁ ଯାହା ଦେଇଛି ସେତିକରେ ସନ୍ତୁଷ୍ଟ ରହିଲେ ତ କାମ ସରିଲା । ଆଉ ଛଟପଟ ହେବାକୁ ପଡ଼ିବ ନାହିଁ । ମୋର ଅଳପ ହେଲା, ତାର ବହୁତ ହେଲା, ଗୁଡ଼ାଏ ଭାବିବା ପିଲାଦିନର ଅଭ୍ୟାସ । ଯେଉଁ ଟିକକ ମିଳିଛି ତାକୁ ନେଇ ସନ୍ତୋଷରେ ଭୁଲେଇ ଦିଅ—ସେଇ ଯଥେଷ୍ଟ ।

ନିଶୁଣୀର ତଳକୁ ଯେତେ ଉପରକୁ ସେତେ । ତଳକୁ ଚାହିଁଲେ ଊଣା ଊଣା ଦିଶିବ, ଉପରକୁ ଚାହିଁଲେ ଅଧିକ ଅଧିକ । ଏଥିରେ କିଏ କେଉଁଠି ସବୁ ଅଛି । ସବୁଠାରୁ ଉପରେ କେହି ନାହିଁ କି ସବୁଠୁ ତଳେ ମଧ୍ୟ କେହି ନାହିଁ । ଜଣେ ଧନ ବାଗେ ଉପରେ ଥିଲେ ଜନ ବାଗେ ତଳେ ଥିବ । ଏମିତି ମିଶେଇ-ଗୋଳେଇ ସବୁ ବଣ୍ଟା ହୋଇଛି । ସେମିତି ବୁଝିଲେ ଊଣା ଅଧିକ ଯାହା ଦିଶୁଛି ସେସବୁ ଭ୍ରମ । ସୁଖ ଦୁଃଖ ମାହା ମିଶେଇଲେ ସମସ୍ତେ ସମାନ । ଯେ ତେଣୁ ତଳକୁ ମୁଣ୍ଡ ବୁଲେଇ ନେଲା ତା' ପାଇଁ ଉଚ୍ଚ ନୀଚ ଆଉ ନାହିଁ । ତାକୁ ସବୁଥିରେ ସନ୍ତୋଷ । ସେଇଟା ହେଲା ଅସଲ ମୂଳ । ଇଚ୍ଛାମୟ ଜଗନ୍ନାଥ, ସବୁ ତାର ଖେଳଘର ନା !

''ତମର ସେ ଖଣ୍ଡିକ ଆହୁରି ସରିନାହିଁ ? ବସିଥା ।''

''ହେଇ ସରିଲା ତ !'' —ସ୍ତ୍ରୀଙ୍କ କଥାରେ ଚମକିଲା ପରି ଦାସେ ପତ୍ରରେ ବେଗି ବେଗି ଚନ୍ଦନ ଲଗେଇ ଲାଗିଲେ ।

''ଚାଲ, ଖାଇପକେଇବ । ଆଜି ମୋର ସୋମବାର, ମୁଁ ଆମିଷ ଖାଇବି ନାହିଁ । ଭୋଗଟିକ ଖାଇଦେବି । ତୁମ ପାଇଁ ସେ ବୋହୂପିଲାଟା ଆଉ କେତେବେଳ ଉପାସରେ ବସିଥିବ ? ଚାଲ ।''

''ହଉ, ଏ ପତ୍ରଟା ସାରିଦିଏ । ତୁମେ ବାଢ଼ି ଦିଅ ଯାଅ । ମୁଁ ଆସିଲି ତ ।''

''ରଘୁ ସେ ଦଳେଇଘର ଟୋକା ହାତରେ କହି ପଠେଇଛି ...।''

''କ'ଣ ?''

''ତା' ମା ମଟି ବାଡ଼ିଆଡ଼େ କହୁଥିଲା, ସେ କୁଆଡ଼େ ହାତରେ ଘାଣ୍ଟ ଖାଇବାକୁ ବଡ଼ ହରବର ହଉଛି । ଏ ମାସ ଆସି ପୁଅ ମାଇପଙ୍କୁ ନେଇଯିବ । ସେଠି ପୁଣି ଭଡ଼ାରେ ଖଣ୍ଡେ ଘର ନେଇସାରିଲାଣି ।''

''ପିଲାଟା ସାନ ଅଛି । କାହିଁକି ଇଲାଗେ ନେଇ ହଇରାଣ ହବ ? ଆଉ ଦି'ମାସ ଯାଇଥିଲେ ହୋଇ ନଥାନ୍ତା ? ଏ ଖରାରେ ଏତେ ଟିକେ କୋଳପିଲାକୁ ଧରି କୁଆଡ଼େ ନେବ ? ପାଣି ପଡ଼ିଲେ ମୁଁ ନିଜେ ନେଇ ଛାଡ଼ିଦେଇ ଆସନ୍ତିନି ?''

''ତୁମ କଥାରେ କ'ଣ ଆଉ ଅଛି ? ମୁଁ ଆରଥରଠୁ ଜାଣେ, ଏ ଟୋକାକୁ ସହଜ ମଣିବ ନାହିଁ । କ'ଣ ତ ମନ୍ତ୍ର ଫୁଙ୍କି ଦେଇଛି ଯେ ଗଲାବେଳକୁ ଫୋପାଡ଼ିଲା ପରି କଥାମାନ ଖାଲି ରଘୁ କହୁଥାଏ । ତୁଚ୍ଛାରେ ରାଗିଯାଉଥାଏ । ଟୁକୁଆଟା ପାଖକୁ ଗଲେ କରଛଡ଼ା ଦେଉଥାଏ । ଆଉ ତୁମେ କହିଲେ ସେ ଶୁଣିବ ?''

''ହଃ, ତତେ ସ୍ୱାପ ସବୁ ଜଣା ।''

''ନଇଲେ ତୁମ ପରି ? ସବୁ କଥାକୁ ଖାଲି ଭେଳିକି ଲାଗିଲା ପରି ଚାହିଁ ଥିବ, କିଛି ବୁଝି ପାରୁ ନ ଥିବ ।''

ବଞ୍ଚିଆ ଆସି ପାଞ୍ଚିକଣ ପଦ୍ମଫୁଲ ଦାଣ୍ଡଘରେ ।

"ଷ୍ଟାଉଜ କହିଲା, ଷ୍ଟାତ ବଡ଼ା ହୋଇଗଲା ।"

"ହଉ ଚାଲ, ମୁଁ ଯାଉଛି, ଏଇଟା ଏମିତ ବାନ୍ଧଦବ । ଥାଉ ନହେଲେ ଏମିତ । ଟିକଏ ପିଲାଙ୍କୁ ଦେଖିଥିବ, ଯେମିତ କେହି ଲାଗିବେ ନାହିଁ ଏଥିରେ । ଉଠିବା···ଓଃ ! ନାରାୟଣ, ହରି, ଜଗନ୍ନାଥ !"

# ପରଲୋକ

"କାହା ମୁଣ୍ଡରେ ଶାଗୁଣା ବସିଛି କେଜାଣି, କଏ ସେଇଟାକୁ ଘରେ ବୋହି କରି ନେଇ ଥୋଇବ ? ଓ-ହୋ-ହୋ, ଏଡ଼ିକି କଥାଗିଳା ସେ ଟୋକଟା ! ନାହିଁ ନ ଥିବା କଥା ଆଣି ଘଡ଼ିକେ ଫାନ୍ଦ ଥୋଇଦେବ । ସେ' ତ ଆଜିହୁଁ ଏଡ଼େ, ବଳ ବୟସ ହେଲେ ସେ ବା କ'ଣ ନ ହେବ ?"

ତଳ ଘରୁ ପାନବଟା ଧରି ଉପର ପିଣ୍ଡା ଆଡ଼େ ଏମିତି ଗୁଣେଇ ଗୁଣେଇ କହୁ ଆସୁଛନ୍ତି ହିଁ କୁମା' । ରାତି ପ୍ରାୟ ଘଡ଼ିଏ । ପିଲେ ସବୁ ସକାଳ ଖାଇଦେଇ ଦାଣ୍ଡଘରେ ବସିଛନ୍ତି । ଦାସେ ବଡ଼ ଖଟିରେ ବସି ଦାନ୍ତ ଖୁଣ୍ଟୁଥାନ୍ତି । ସମସ୍ତେ ରାତିରେ ଭାତ ଖାଇ-ସାରିବା ପରେ ଯାହା ଗାଈରୁ ମାକୁରୁ ହେଉଥାନ୍ତି, ସେ ତାହା ଶୁଣୁଥାନ୍ତି ।

"କିଏ କହେ ?"

"ସେଇ 'କୁମ', ହରି ପଣ୍ଡା ଝିଅ ।"

"ଓ ! ହରିଆ ପଣ୍ଡା ଝିଅଟି ! ବାପଟା ତ ସ୍ୱାପ ଆହାନ୍ତକଥା ଯେ କହିଲେ ନ ସରେ । କାହିଁ, କ'ଣ ହେଲା କି ?—ମତେ ଦିଅ, ମୁଁ ଗୁଆ କାଟୁଛି । ଆଜିର ସେ ବରମପୁଣ୍ଟି ପୁଡ଼ ଝଇଟା ଆଣିଛ ନା ?"

"ମତେ ଟିକିଏ ଦେବରେ ଜାସ୍ମୀ ! ମୁଁ ହେଇ ଅଳପ ଶୁଙ୍ଘିବି ଏ । ···ଇସ୍ , କି ବାସ୍ନା ହେଉଛି ଲୋ ! ବୋଉ, ମୁଁ ଟିକିଏ ଖାଇବି କିଲୋ ଏଇଟାରୁ ?"

"ମୁଁ ହିକିଏ ?"

"ବୋଉ, ମତେ ଏଁ ।"

"ଘ ଖାଇ ଘ ଖଇରରୁ ମେଞ୍ଚେ ଲେଖାଁ, ଅଲକ୍ଷଣିଆ ନାଗମୁହାଁ ପଞ୍ଝା ।"

"ଆରେ ରଃ, ରଖ୍ ସେ ବଟା ଭିତରେ ଖଇର ।"

"ଥରେ ତ ଶୁଙ୍ଘିଲୁ ବାପୁଛି, ଆଉ କେତେ ଥର ଶୁଙ୍ଘୁଛୁ ?···ହିଁ କ'ଣ ହେଲା ସେ କୁମ କଥା ?"

"ସେ ଆସିଥିଲା ଘରକୁ ଆମର ବୁଲି । ଅସିଲୁ ତ ଅଥି ହେଇ ଠାଏ ବସିବୁ, କଥାବାର୍ତ୍ତା ହେଇ ଯିବୁ । ଏ ଘରେ ପଶି, ସେ ଘରେ ପଶି, ଏ ପେଡ଼ିରେ କ'ଣ ଅଛି, ସେ ବାକ୍ସରେ କ'ଣ ଅଛି—ଏମିତି ଗୁଡ଼େ କାହିଁକି ପଚାରିବୁ ?"

ସେମିତି ଗୁଡ଼େ ଥାଆନ୍ତି । କାହା ଶୀ ଦେଖିପାରବେ ନାହିଁ । ସେଗୁଡ଼ାକ ହାଇଫଟିଆ ଆହାନ୍ତକଥା ପଞ୍ଝା । ସେମିତି ସେ ହରିଆ ପଣ୍ଡା ।"

"ଶୁଣ ଆଗ କଥାଟା ! ଶୋଇବା ଘରକୁ ପଶିଗଲି । ଅଧକଧ ତା' ଆଖି ଖାଲି ବୁଲୁଥାଏ । ସେ ଘର କଣକୁ ତ ନେଲି ଟଣଙ୍କଟା ଥୁଆହୋଇଚ···"

"ସେଇଟା ଟଣଙ୍କ ନୁହେଁ ମ ବୋଉ, ଟ୍ରଙ୍କ୍—ଟ୍ରଙ୍କ୍ ର୍ ଅଙ୍କ ।"

"ଦେଖିଦେଲି ତ ଥୁଆ ହେଇଚ୍ଛି, ବସିପଡ଼ିଲି ତା ପାଖରେ । ତାକୁ କେତେ ସାଉଁଳି, କେତେ ଆଉଁସିପକେଇଲି । ପଚାରିଲି, ଏଇଟା କା'ର ? କହୁଥାନ୍ତି ତୋ ବୋପାର ନୁହେଁ ବୋଲି, ଖାଲି କହିଲି, ଆମର ପଗ୍—ରଘୁ ପଠେଇଚ । କହିଲା, ଆମର ସ୍କାଠ୍ ଆଉର ବଡ଼ଟେ ଥିଲା—ସେଇଟା ବ ଅବକଲ ଏମିତଆ ନେଲୀ ଆଉ ବଡ଼ ଟାଣ । ଏଇଟା ତ ଲକ ଲକ ହଉଚ । ଆମର ସେଇଟା ବନନାମୀ ଶାଶୁଘରକୁ ନେଇଗଲା । ନନା କହିଛନ୍ତି ଆଉ ଢ'ଟା···ନାଇଁ ନାଇଁ ଗୃରଟା ଆଣିବେ ।"

"କହି ଦେଲ ନାହିଁ, ଆବେ ସ୍ୟା···ତମ ମୁହଁରୁ ସବୁ ଜଣାପଡ଼ୁଚ୍ଛି । ଗ୍ଵରଟା ନା ଆଠଟା ! ସ୍କାପ ଖାଲି ପୋଲି ପଡ଼ୁଚ୍ଛି ।"

"ଆଉ ଶୁଣ, ତାଲଟାକୁ ମୋଡ଼ିପକାଉଥାଏ, ମୋଡ଼ି ପକାଉଥାଏ । କହିଲି, ସ୍କା ଭିତରେ କ'ଣ ରଖିଛ ? ଚଗ୍ କନାଯାକ ଭର୍ତ୍ତି କଣଚ ନା ! ଚଗ୍ ଲେଙ୍କଡ଼ା ଏଠି ସେଠି ନ ପକେଇ ଗୋଟେ କୁଠି ମାଡ଼ିଦେବା ଭଲ ।"

"ମୁଁ ଆଉ କ'ଣ କହନ୍ତି ? ସେଇଠ୍ ଦେଖିଦେଲି ରଘୁର ଖାଲି ବାସ୍ନା ତେଲ ଶିଶିଟା କାନ୍ଥକୁରେ ଡେଗହୋଇଚ । ତାକୁ ଆଣି ଶୁଙ୍ଘିପକେଇଲି । କହିଲି, ଏମିତଆ ତେଲ ଆମ ଖଇନା ଲଗାଏ । ଆଉ କୁ ତେଲ ହେଲେ ସେ ଲଗେଇବ ନାହିଁ । ଆମ ଖଇନା ଲଗାଇବା ତେଲ ସ୍କାଠୁ ବେଶି ବାସ୍ନା ହେବ । ଏଇଟା ଟଙ୍କେ ବାରଣା ନେଇଥିବ ତ । କହି ଦେଇଥାନ୍ତି ଠୋ ଠା ଢ' ପଦ । ହେଲେ କାହିଁକ ଆଜ ବାପଘରେ ଅଛି, କାଲି ଶାଶୁଘରକୁ ପଳେଇବ—ଗ୍ରୁଡ଼ ତାର ପ୍ରକୃତ ତ ସେମିତ !"

"ରଖିଥ ହେ, ତମର ଖାଲି ପଛବୁଦ୍ଧି । କହିଦେଇଥିଲେ ସେ ଟୋକଟା ଜବର ହୋଇନଥାନ୍ତା ! ତାର ତ ଭଲହୋଇଥାନ୍ତା । ଆଉ ଗୋଟେ ଗାଁରେ ସେ ଯାଇ କ'ଣ ଚଳପାରବ ? ହଉ ଗ୍ରୁଡ଼, ତାଙ୍କର ସମ୍ପତ୍ତିଙ୍କର ବୁଦ୍ଧିଟା ତ ସେତକ !···ଇସ୍, ଖଙ୍ଗିଲି ପାନ ପତଟା ଆଉ ମୋଡ଼ନ । ମତେ ଦଅ ସେଉଟା, ମୁଁ ଖାଇ ଦେଉଚ । ପାକଲ ପାନଟା ନା, ବଡ଼ ଭଲ ଜନଷ । ଆଜ ବୁଢ଼ା ପଗ୍ ନଙ୍କେ ବାଛି ବଳେଇ ବଳେଇ ଅଧକଢ଼େ ଢାଗାରେ କଢ଼େ ଦେଇଚ ।"

"ନନା, ମତେ ଟିକଏ ଗୁଆ ଦଅ ।"

"ନାଇଁ, ଗୁଆଗୁଡ଼ାକ କଫ ଢାତ କଣବ । ନେ, ଏଇ ଟିକଏ ଖା । ଗୁଡ଼େ ଏବଠୁ ଏମିତ ଅମଲ ହୋଇଗଲେ ହୁଏ କ ? କହନ୍ତି ପଗ୍—'ଶହକେ ସୁପାରି ହଜାରକେ ପାନ ।' ଶହେ ଟଙ୍କା ପାଇବା ଲୋକ ଗୁଆ ଟିକଏ ଖାଇବ, ହଜାରେ ବାଲି ଯାଇଁ ପାନ ଖାଇବ । ଆମେ ସବୁ ପିଲବେଳୁ ଅଭ୍ୟାସ କରିଦେଇଛୁ ବୋଲି ନା ! ନ ହେଲେ ଖାଇବା କଥା ନୁହେଁ ।"

"ଖାଇନା ଖାଇନା ବୋଲି ସେ ଟୋକ ଖାଲି ଗୋଳି ପିଇପକାଉଥାଏ । ସେ ହରି ପଣ୍ଡା ପୁଅଟା ଏବେ କ'ଣ କରୁଛି କି ?"

"ସେ କ'ଣ କରିବ କଉ ? ତା ହାତରେ କ'ଣ ହବ ଯେ ସେ କରିବ ? କାଲି ହାଟ କରି ଫେରିଲାବେଳକୁ କିଏ ତ କହୁଥିଲା ସେ ପୁଣି ଯୁଦ୍ଧକୁ ପଳଉଚ । ଯିବ ନାହିଁ ! ସେ ପରା ରଘୁଠଉଁ ଆଉରି ଦି ବର୍ଷ ବଡ଼ । ରଘୁର ଆସି ପୁଅ ହେଲା । ଏବେ ଈଶ୍ୱର କଲେ ଆଉ କ'ଣ ହବ । ସେଇଟା ସେମିତିଆ ଅଭିଆଡ଼ା ରହିଛି । ବାପ ମାପ ଅଲାଜୁକ । ଏ ବୟସରେ ତୋ'ର ବର୍ଷକୁ ଗୋଟେ ଲେଖାଁ ପିଲା ହେଉଛନ୍ତି । ଘରେ ଭେଣ୍ଡା ପୁଅକୁ ବାଘ ନଦେଇ ରଖିଛୁ ।"

"ହଇହେ, ସେ ଯୁଦ୍ଧକୁ ସତେ ପଳେଇବ ! ମା'ଟା କିଛି କହୁନାହିଁ ! ବଡ଼ପୁଅ ଯେ ପିଣ୍ଡକଣ୍ଠା ସେ କମିତି ସମ୍ଭାଳି ଘରେ ରହିବେ ? ରଘୁ ତ ହେଇ ବାଟ ଛ' କୋଣରେ ଅଛି ଯେ ଏ ମଣିଷ ମନ ମାନୁନି, ପୁଣି କୋଉ ରାଜ୍ୟରେ ଯୁଦ୍ଧ ହେଉଛି ଯେ ସେ ପୁଅକୁ ସେଠିକି ପଠେଇ ଦଉଛନ୍ତି !"

"ଯୁଦ୍ଧ ପରା ଚୀଇନାରେ ହେଉଛି । ସେଇଟା ଯାଇ ହେମାଳୟ ପାଖରେ ।"—ବଟ ସବୁ ଜାଣିବା ଭଙ୍ଗୀରେ କହିଲା ।

"ଫେର୍ ତ ଏ କାଳଯୁଦ୍ଧ ଗୁ'ଠି ଥିଲା ଆସିଲାଣି ଯେ ମହରଗ ଧନ ଆସୁଛି । କେମିତି ଚଳିବା କେଜାଣି ?"

"ଚୀଇନାର ସୈନ୍ୟମାନେ ବଡ଼ ବଡ଼ ବନ୍ଧୁକସବୁ ଧରି ଯୁଦ୍ଧ କରୁଛନ୍ତି । ଆମର ତ ସେସବୁ ନାହିଁ । ଆମେରିକା, ଇଂଲଣ୍ଡ ଆମକୁ ସାହାଯ୍ୟ କରୁଛନ୍ତି ।"

"ହଃ, ଚୀଇନା ଲୋକ ମୁଁ ଗୋଟେ ଦେଖିନି କି ? ସେଇଟା ମଦନପୁରରେ ହାଡ଼ ଦାନ୍ତସବୁ ଲୋକଙ୍କର ଖଞ୍ଜେ । ମାଙ୍କଡ଼ ଖିଙ୍କାରିଲା ପରି କଥା କହେ । ସେଇ ସ୍ୱାପ ଚକୁଳିଆ-ମୁହାଁ କ'ଣ ଯୁଦ୍ଧ କରିବେ ମ ! ତାଙ୍କ ମୁହଁ ଦରଣ୍ଡିଲେ ସ୍ୱାପ ନାକ, ପାଟି, ଆଖି କିଛି ହାତକୁ ବାରି ହେବ ନାହିଁ । ସେ ଯୁଦ୍ଧ ଫୁଦ୍ଧ କିଛି ହେବ ନାହିଁ ଗୁଡ଼େ ଏମିତିଆ ହରି ପଣ୍ଡା ପୁଅ ଶହେ ପଣ୍ଡା ପରି ନର୍ମ୍ମଳିଆ ଭେଟା ବୁଲିଲା ପରି ଯାହା ବୁଲୁଛନ୍ତି, ତାଙ୍କୁ ଖାଇବା ପିନ୍ଧିବାକୁ ଆଗ ଗଣ୍ଡେ ମିଳିଯିବ । ମଦନପୁରରେ ପରା ସବୁ ସାଇବ ସିପାହି ଆସି ବସିଛନ୍ତି ଯେ ଯିବ ତାକୁ ଯୁଦ୍ଧରେ ଭର୍ତ୍ତିକରିବାକୁ ।"

"ସେଇଟା ଆମ ସ୍କୁଲରେ ମାଷ୍ଟରମାନେ କଥାହେଉଥିଲେ । ସେଇଠି ରିକ୍ରୁଟିଂ ଅଫିସ ଖୋଲିଛନ୍ତି ପରା ! ସେଇଠି ଯାହାକୁ ବାଛିବେ ତାକୁ ପଠେଇଦେବେ ଟ୍ରେନିଂ ପାଇବାକୁ । ବୋଉ, ମୋର କାଲି ଚାନ୍ଦା ତାରିଖ । ଦେଶରକ୍ଷା ପାଣ୍ଠିକୁ ଚାନ୍ଦା ମାଗୁଛନ୍ତି ।"

"କିରେ, ଏବେ ପରା ଦେଇଥିଲୁ ? ଜୟନ୍ତୀ ରୁ ମିଶି କ'ଣ ଆଠଣା ପଇସା ଦେଇଆସିଛ, ଆଉ ଫେର୍ କ'ଣ ?"

"ତୋ ମାଷ୍ଟରଙ୍କୁ କହିଦେବୁ, ନ ହେଲେ ମୁଁ ଯାଇ କହିବ ଯେ ଆମେ ଆଉ ପଇସା ଦେଇପାରିବୁ ନାହିଁ । ଆମେ ଓଳିଏ ଖାଇଲେ ଓଳିଏ ଉପାସ ରହୁଛୁ । ଆମେ ଏମିତି ଥରକୁ ଥର ପଇସା ଦେଲେ ଶେଷର ହୋଇଯିବୁ ନାହିଁ ! ସତେ, ହେଲେ ମଣିଷ କେତେ ପଇସା ଏମିତି ଗାଈ ଦୁହିଁଲା ପରି ଆଣି ଦେବ ! ଦଳେଇ ଘର ବସିଥିଲା ପିଲାଙ୍କୁ ପଢ଼େଇବ ବୋଲି, ହାରିଗଲା । ଏ କ'ଣ ସହଜ ପଡ଼ୁଛି ! ତାଙ୍କ ଲୁଗାପଟା ପୋଥିପତ୍ରର ଖର୍ଚ୍ଚ ତୁଲେଇବାକୁ ତ ଆଗ ନାକ ଶୁଣ୍ଡି ଆଣି କାନ ଶୁଣ୍ଡି ଆଣି ହେଇ ବସିବାକୁ ପଡ଼ିବ । ତା ଉପରେ ହଜାରେ ଚାନ୍ଦା ।"

"ଏଇଟା ଗଣେଶ ଚାନ୍ଦା ପରି ନୁହେ । ଏଇଟା ସରକାର ଉଠଉଛି ଆମର ଯେଉଁ ସୈନ୍ୟମାନେ ଯୁଦ୍ଧକରୁଛନ୍ତି ତାଙ୍କୁ ସାହାଯ୍ୟ କରିବା ପାଇଁ ।"

"ଆରେ, ସରକାର ଉଠେଇଲାରୁ କ'ଣ ହୋଇଗଲା ସେଇଠୁ ! ଆମେ କ'ଣ ଥାଇ ଦେବାକୁ ନାହିଁ କରୁଛୁ ? ଆମ ପାଖରେ ନାହିଁ, ଆମେ କୋଉଠୁ ଆଣି ଦେବୁ ?"

"ସମସ୍ତେ ଦଉଚନ୍ତି···ଉଁଉଁ··· ।"

"ବରଗୁଡ଼ ମାଛ ଧରିଲା ପରି କ'ଣ ଗାଉଁ ଗାଉଁ ହଉଚୁ କରେ ? ଏତେବେଳୁ ଉଚ୍ଛନ୍ନ କାହିଁକି ଏମିତି ହଉଛୁ ବା ? ଦେବା ବେଳ ତ ଅଛି । ଦେଖିବା···କେତେ ପଇସା ଯେ ?"

"ଚାରଣା ।"

"ହଉ ଦବ । କାଲି ସ୍କୁଲକୁ ଗଲାବେଳେ ନେଇଯିବୁ ।···ହେଇ ତୋ ହାତ ପାଖେ ଦୋକତା ଡବାଟା ଅଛି ଟିକିଏ ବଢ଼େଇ ଦବୁଟି ଲେ ।"

"ହେଃ···ଭୁମାପଡ଼···ହେଃ···ରହ ରହ, କିଏ ଦାଣ୍ଡ ପିଣ୍ଡାରେ ଅଛି ।" ଟୁକୁମାଙ୍କ ଫୁସୁଫୁସ୍ କଥାରେ ସବୁ ଚୁପ ହୋଇଗଲେ । କିଛି ସମୟ ଗଲା । ଖସ୍ ଖସ୍ ହେଇ ଶବ୍ଦଟାଏ ହେଲା, ଦାସେ ଗଳା ଖଙ୍କାରି ଡାକଲେ—"କିଏସ୍ ?···କିଏସ୍ ?" କିଛି ଉତ୍ତର ପାଇଲେ ନାହିଁ । ଟୁକୁଆ ପାନବଟା ଡେଇଁ ବୋଉ କୋଡ଼ରେ ଯାଇ ବସିପଡ଼ିଲା । ଜସ୍ମୀ, ବଟ ଦାସଙ୍କ ପାଖକୁ ଘୁଞ୍ଚି ଆସିଲେ । ଆର ଘରୁ ଖଇତ ଦୁମୁ ଦୁମୁ ହୋଇ ଦୌଡ଼ିଆସିଲା ।

"କ'ଣ ବୋଉ, କିଏସେ ଖସ୍ ଖସ୍ ହେଉଚ ?"

"ରହ, ପାଟିକରନା ।"

ମା ପୁଅଙ୍କ ଫୁସୁରୁ ଫୁସୁରୁ କଥା ଦାସଙ୍କୁ ସୁଖ ଲାଗିଲା ନାହିଁ—"ଓହୋ, କାହିଁକି ଏମିତି ଏଇଟା ଧାଇଁଚହେ ! କରେ, ତୁ ଅଣ୍ଡିରା ଛୋକାଟି ! କ'ଣଟାଏ ଖସ୍ ଖସ୍ ଟିକିଏ ହେଇଗଲା ବୋଲି ଉଡ଼ଗୁଡ଼ଉଛୁ । ସେ କିଛି ନୁହଁ, କୁକୁର ବଲେଇ କ'ଣ ହେଇଥିବ, ମଣିଷ ହୋଇଥିଲେ କଥା କହନ୍ତା ନାହିଁ ?"

"ନାଇଁ ହେ, ସଫା ମଣିଷ ଚାଲିଲା ପରି ଶୁଭିଲା । ସଁ ସଁ ହେବାର ମଧ୍ୟ ମୁଁ ଥରଟେ ଶୁଣିଛି ।"

"ହଃ, ଏଇ ସଂଜବେଳୁ ଖାଲି ଚୋର ତମ ଘରେ ପଶିଯାଉଛନ୍ତି ! କଉ, ତମ ଘରେ ଚୋର କାହିଁକି ପଶିବ ?"

"ଗ୍ରେର ନୁହେ ହେ, ସେ ଆଉ କ'ଣ ହେଇଥିବ ।"

"ଆଉ କ'ଣ ଭୂତ ?"

ପିଲଏ ଡେନ୍ଗୁଲ ପରି ଗୋଟେ କଣକୁ ଲଗିଗଲେଣି । ଛନଛନଆ ଆଖିଗୁଡ଼ାକରେ ପଲକ ପଡ଼ୁନାହିଁ ।

ଏତିକବେଳେ ପୁଣି ସେମିତି ଶବ୍ଦହେଲା ।

"ହେଇ ହେଇ, ଶୁଣ ।"

"ଓହୋ, ଦଗୁଟି ଭାଇଗ, ସେ କଣରୁ ମୋ ବାଡ଼ିଟା ।"

"ଯାଆନା ହେ ! କାଲି ରାତିରେ ତ ଦଳେଇ ଘର ବୋହୂ ବାଡ଼ିଆଡ଼େ ପ୍ରସାକରି ଯାଇଥିଲା । କ'ଣଟାଏ ତା' ଆଗରେ ଭୁସ୍ ଭୁସ୍ ହୋଇ ଧାଇଁଗଲା । ମନରେ ତା'ର ଭୟ ପଶିଗଲା ଯେ ଆଜି ତାକୁ ଜର ଛେଡ଼ୁଚି । ଖାଲି ବାଉଳୁ ଗୁଉଳୁ ହଉଚି । କବାଟ ଫିଟେଇ ଦିଅ ନା । ଟିକଏ ଚାହିଁ ଫାଙ୍କରେ ।"

ଦାସେ ଅଳପ ଟିକଏ ଚାହିଁଛନ୍ତି କି ନାହିଁ ଖୁବ୍ ହସିଲେ ଏବଂ କବାଟ ଫିଟାଇ ଠେଙ୍ଗାଟାକୁ ତଳେ ବାଡ଼େଇ କହିଲେ, "ହସ୍ ଯା-ବାଘୁଆ-ଯା-ଚ୍ଛିଲଯା । କୁକୁରଟାକୁ ଏତେ ଭୟ ! ସେ ସ୍ୱାପ କାନମୁଣ୍ଡାରୁ ଉକୁଣି ରାମ୍ପୁଛି । ସ୍ୱାଙ୍କ ଶୁଭିଲା ପାଦଶବ୍ଦ କେତେ, କଥାବାର୍ତ୍ତା କେତେ । ଛିଃ !"

"ହଉ, କବାଟ କିଲଦେଇ ଆସ ଭିତରକୁ ।···ଏଇଟା ସିନା କୁକୁର, ଦଳେଇ ଘର ବୋହୂ କ'ଣ କୁକୁର ଦେଖିଥିଲା ! ସେ ସୋରଷିଆ ଗଛଟାରେ ଗୋଟେ ବାସ କରୁଛି ନା !"

"ହଁ, ବାସକରୁଚି ! ଖାଲି ମନର ଭ୍ରମ । କାହିଁ ମୁଁ ତ କେବେ କିଛି ଦେଖି ନାହିଁ । ଦିନେ ଅବଶ୍ୟ କେମିତିଆଟା ଲଗିଲା । ମୁଁ ବାଡ଼ିଆଡ଼େ ଯାଇଛି । ଗୁପଗୁପୁଆ ଜହ୍ନ ପଡ଼ିଛି । ମତେ ଲଗିଲା ଯେ ସକାଳ ହୋଇଗଲା ବୋଲି । ମୁଁ ଚାରିଆଡ଼କୁ ଚାହୁଁଛି । ଶୁଭିଲା, କଏ ଗୋଟେ ସେମିତିଆ କୁନ୍ଥଉଛି । ଏଇ ବାଡ଼ିଟା ମୋ ହାତରେ ଥାଏ । ଏଇଟା ପାଖରେ ଥିଲେ ତ କିଛି ଭୟ ନାହିଁ । ଗତବର୍ଷ ହରିହାଟରେ ଯେଉଁ ଯଜ୍ଞ ହୋଇଥିଲା ସେଇ ଯଜ୍ଞକୁଣ୍ଡର ପୋଡ଼ା ପଇସା ସ୍ୱା ମୁଣ୍ଡରେ ମରାହେଇଚି—ହେଇ ଦେଖ । ସ୍ୱାକୁ ଦେଖିଲେ ତ କେହି ଡାଆଣୀ ଗୋସାଣୀ ପାଖରେ ପଶିପାରିବେ ନାହିଁ । ମୁଁ ମଧ୍ୟ ପାଟି ଶୁଣାଇଲି । ଟିକଏ ବନ୍ଦ ପଡ଼ିଗଲା; ମାତ୍ର ଫେର୍ ଯୋଉଟାକୁ ସେଇଟା । ଟେକାଟାଏ ଗୋଟେଇ ସେ ଭିତରକୁ ପକେଇଲି । ଭୁସ୍ ଭୁସ୍ ହେଇ କ'ଣଟାଏ ସେଇ ଗଛ ଆଡ଼େ ପଳେଇଲା । ମତେ ଲଗିଲା ସେ ଗଛ ପାଖରେ ଯାଇ ସେଇଟା ସେଇଠି ଲୀନ ହେଇଗଲା ।"

"ଦେଖିଲ, ଜଣା ହେଲେ ସାହସିଆ କଥା ତମେ କରୁଛ ? ବାହ୍ମଣ ବୋଲି ସିନା ସେ ପାଖକୁ ଆସିଲା ନାହିଁ—ନ ହେଲେ ତାକୁ ଏମିତି ଟେକା ପକେଇ ପାରିଥିଲେ ସେ ଛାଡ଼ିଥାନ୍ତା କି ?" ସେତେବେଳକୁ ପିଲାଙ୍କ ନିଦ କୁଆଡ଼େ ଗୁଡ଼ା ପଳେଇଲାଣି । ଗୋଟେ ଲୟରେ ଚାହିଁରହିଛନ୍ତି, ଶୁଣିଲଗିଛନ୍ତି ।

"ସେମିତିଆ ଆଉ କେବେ କରିବ ନାହିଁ । ତାଙ୍କ ଭିତରେ ମଧ୍ୟ ଅମଡ଼ାଚଣ୍ଡୀ ଗୋଟେ ଗୋଟେ ଅଛନ୍ତି, ସେ କାହାକୁ ମାନିବେ ନାହିଁ । ମୁଁ ଶୁଣିଛି ପରା, ମୋ ଆଉ ଆଖିରେ ଦେଖିବା କଥା । ଅମୁଖ୍ୟ ଭୂତ ଖାଲି ସୁ ସୁ ପବନରେ ପହଁଚିଯିବ । ତୋଳି ପରି ମୁଣ୍ଡ, ତଳକୁ ସରୁ । ଭୂଇଁରୁ ଅଢ଼େଇ ଗୃଖଣ୍ଡ ଗୁଡ଼ ସେଇଟା ଯାଉଥିବ । ତା ହାଗୁଡ଼ରେ ପଡ଼ିଗଲେ ଆଉ ରକ୍ଷାରକ୍ଷଣ ନାହିଁ । ସେ ଗୋଟାପୁଛା ଗିଳିଯିବ ।"

"ଶୁଣିବା କଥା ତ ! ହେଇ ତୁମ ନିଜ କଥା ଦେଖନ୍ତୁ । ଆଉ କିଏ କହିଲେ ଯିନା ଭାବିବା ଯେ ମିଛ କହୁଛି ବୋଲି ।"

"ମୋ କଥା ଛାଡ଼ । ମୁଁ ତ ସାକ୍ଷ୍ୟ ଲକ୍ଷ୍ୟ ପ୍ରତ୍ୟକ୍ଷରେ ଦେଖିବା କଥା ।"

ଘରେ ଭୂତ କଥା ପଡ଼ିଲେ ଏ ପ୍ରସଙ୍ଗଟି ଚୂକୁମା ନିଶ୍ଚୟ କହିବେ । ପିଲେ ଶୁଣି ଶୁଣି ସବୁ ମନେରଖିଛନ୍ତି, ହେଲେ ଆହୁରି ଶୁଣିବାକୁ ମନ ।

ବଟ କହିଲା, "ତୁ ନିଜେ ଦେଖିଛୁ ନା ବୋଉ ! କେମିତିଆ ଦେଖିଲୁ ?" ଚୂକୁମା ଭୁଲିଯାଆନ୍ତି ଯେ ସେ ସେହି କଥାକୁ ପଚିଶ ଥର କହିଚନ୍ତି । ପିଲେ ମଧ୍ୟ ଭୁଲିଯାଆନ୍ତି ଯେ ସେମାନେ ତାକୁ ପଚିଶ ଥର ଶୁଣିଛନ୍ତି ।

"କ'ଣ କହିବିରେ ପୁଅ, ମୁଁ ଯାହା ଦେଖିଛି ଏବେ ମଧ୍ୟ ଦେହରେ ଶୀତ କଣ୍ଟା ମାରିଯାଉଛି । ମୋର ସେତେବେଳକୁ ଭୂଆସୁଣୀ ସମୟ । ଘରେ ତୋ ନନା ନଥାନ୍ତି । ରଘୁଟି ପିଲା । ଶାଶୁଙ୍କର ତ କାଳ ହୋଇଯାଇଥିଲା । ଶଶୁରେ ଏଇ ଦାଣ୍ଡଘରେ ଶୋଉଥିଲେ । ମୁଁ ପାହାନ୍ତିଆରୁ ନ ଉଠିଲେ ତ ନଚଳେ—ବାସିଆଡ଼ତ କିଏ କରିବ ? ବ୍ରାହ୍ମଣଘର ବୋହୂ, ଫର୍ଚ୍ଚା ହୋଇଗଲେ ଆଉ ଦାଣ୍ଡରେ କେହି ଦେଖିବେ ନାହିଁ । ପୁଅକୁ ନେଇ ଶୋଇଥାଏ । ନିଦଟା ଗୃଉଁକିନା ଭାଙ୍ଗିଗଲା । ଗୃରିଆଡ଼ ଆଲୁଅ । ଉପରକୁ ଗୃହିଁଲି କହ୍ନପକ୍ଷ । ତୂଳା ଭିଣିଲା ପରି ମେଘ । ସଫା ପାହାନ୍ତିଆ ପରି ଜଣାପଡ଼ୁଥାଏ । ସିଠୁ କ'ଣ କଲି ନା ଆମର ଏଇ ଯେଉଁ ଚକା ଗଗ୍ରାଟା ତାକୁ ଧଇଲି । କାଠି ଖଣ୍ଡେ ପାଟିରେ ପୂରାଇ ବାଡ଼ ବାଟେ ବାହାରିଲି ପୋଖରୀକୁ ଯିବ । ହଜ ପୋଖରୀଟା ଏଠୁ କେତେ ବାଟ ! ଆମ ବାଡ଼ରେ କୂଅ ନ ହେବା ପର୍ଯ୍ୟନ୍ତ ମୁଁ ଯାଉଥିଲି ହରବୋଳ ସେଠିକି ଗାଧୋଇବାକୁ । ଏ ବାଟେ ସିନ୍ଧୁର ଘରଠୁ ପୋଖରୀଯାଏ ଘରଦ୍ୱାର କିଛି ନଥିଲା । ଦ ଆଢ଼େ ଜଙ୍ଗଲି ବଣ । ମଝିରେ ଗୃଲିବା ପାଇଁ ଧାରେ ବାଟ ।"

"କୋଉଠି ଦେଖିଲୁ ଭୂତ କହୁନୁ !"

"ଆରେ କହୁଛି ପରା ! ସେମିତି ମୁଁ ଦାଣ୍ଡରେ ଠିଆ ହେଇଚ ମତେ ନିଗୁଟିଆ ନିଗୁଟିଆ ଲଗିଲା । ବାହାରିଲଣି ତ, କେମିତି ବୁଢ଼ପଡ଼ ବାହାର ଆସିଲେ ଯାଏ । ସିନ୍ଧୁର ଘର ସଲଖ ହେଇଚ, ଧୋବ ଫର୍ ଫର୍ ଲୁଗା ଖଣ୍ଡେ ପିନ୍ଧି ତାଙ୍କର ବାର କନ୍ଧିକୁ ଭୁସ୍‌କିନା ବାହାରିପଡ଼ିଲା ।"

"ସେଇଟା ଭୂତ ନା ?"

"ଆରେ ଶୁଣ୍ । ମହିରେ ଏଇଟା ଗୋଟେ ଖବ ଖବ ହଉଥିବ । ସେ ତ କହୁଛୁ ରୁମାପଡ଼ ଶୁଣିବ, ମହିରେ ସେଇଟା ଭୂତ, ସେଇଟା ପ୍ରେତ—ଏମିତ କାହିଁକ ହଉଚ୍ ?"

"ମୁଁ ଯେମିତ ତାକୁ ଦେଖିଲ, ଭାବିଲ ସେ ସିଦ୍ଧୁଆ ଘର ବୁଢ଼ୀ ବାହାରିଲଣି ପୋଖରୀକୁ । ରାତ ପାହିଲଣି । କଥା ତ କହିବ ନାହିଁ । ଓଢ଼ଣା ଟାଣି ଦାନ୍ତରେ ଚାଲିଲ । ମନରେ ଭୟ ବୋଲ ଏତେ ଟିକେ ନାହିଁ । ଖାଲ ମତେ ଲାଗୁଥାଏ ଯେ, ମୁଁ ସିନା କଥା କହିବ ନାହିଁ, ବୁଢ଼ୀ ତ ମତେ ଟାଣ୍ଟି କଥା କହନ୍ତା ! ଆଉ ସେ ବାଟ ଛାଡ଼ି ଏମିତ ଅବାଟରେ କାହିଁକ ଚାଲିଛି ! ସେ ଖାଲି ସେ ଜଙ୍ଗଲ ବଣ ଭିତରେ ଭିତରେ ମୋର ସଲଖା ଚାଲିଥାଏ ।"

"ମତେ ଡର ମାଡ଼ୁଚ ବୋଉ !"

ବଟ ଜେମ୍ବୀକୁ ଥଆର କହିଲା, "ଏଇଟା କ'ଣ ସତ ଯେ ଡରୁଚୁ ! ଏଇଟା ଗପ କଥାଣୀ ।"

"ଏମିତ ମନ ଭିତରେ ଟିକଏ ପାପ ଛୁଇଁଥାଏ, ହେଲେ ଡର ଆଉର ମାଡ଼ ନାହିଁ । ଗରାଟାକୁ ହୁଡ଼ା ଉପରେ ରଖିଦେଇ ବାହାରପାଣି ଗଲ । ସେଇଟା ଆଉ ଦଶିଲା ନାହିଁ । ସେଇଠି ମତେ ମାଡ଼ ପଡ଼ିଲା ପର ଲାଗିଲା । ଜଣା ସେତେବେଳକୁ ସାଇଁ ସାଇଁ ଗଲୁଚ୍ଛ । ଉଠିପଡ଼ିଲ । ଦାନ୍ତ ଆଉ ଘଷିବ କ'ଣ—ଢଉଟା ଟଣ ଫୋପାଡ଼ିଦେଲ । କେମିତ ବୁଡ଼ପଡ଼ ଗରାଟାକୁ ବୁଡ଼େଇ—ଲୁଗା ଆଉ ବୁପୁଡ଼ ନାଇଁ—ସେମିତ ଓଦା ସରସର ଆସି ହୁଡ଼ା ଉପରେ ଠିଆହେଲ । ଆରେ ବାବୁ, ସେଇଠି କୁଠି ଥିଲା, ଫେର୍ ବାହାଡପଡ଼ିଲା । ଗଲାବେଳକୁ ଯାହା ବାଁ ହାତେ ଯାଉଥିଲା ଆସିଲା ବେଳକୁ ପଡ଼ିଲା ଡାହାଣ ଆଡ଼େ । ଡାହାଣଆଡ଼୍ ଓଢ଼ଣାଟାକୁ ଟାଣି ଦେଇଥାଏ, ଖାଲି ଧାଇଁଲା ପର ଚାଲିଥାଏ । କଣ୍ଢେଇ ଟିକଏ ଚାହିଁଲ, ସେମିତ ଧୋବ ଫର୍ ଫର୍ ହୋଇ ସେ ମଧ ଚାଲିଛି । ସାଇ ପାଖ ହୋଇଆସିଲା । ଟିକଏ ବଳ ମଧ ଆସିଲା । ମନକୁ ମନ କହିଲି, ଏଥର ଆଉ ଭୟ ନାହିଁ । ଠିକ୍ ସିଦ୍ଧୁଆ ଘର କଣ୍ଢଠେଇ ହେଇଚ, ମଡ଼ମଡ଼ ମଡ଼ମଡ଼ ହୋଇ ତ ପଶିଗଲା । ମତେ ଲାଗିଲା ମୋ ଉପରକୁ ମାଡ଼ିଆସିଲା । ଗଛ କାଟିଲା ପର ସେଇଠି ତ ପଡ଼ିଗଲ । ଆଉ କ'ଣ ହେଲା ମୋତେ ଜଣା ନାହିଁ । ଚେତା ବୁଡ଼ିଗଲା । ସେଇଟା ଗୋଟେ ସେଇଠି ଅଛି । ସେମିତ ଖାଲି ସେ ଡରାଏ । କାହାର କିଛି କରେନାହିଁ । ନ ହେଲେ ତ ଯେମିତ ତା ହାବୁଡ଼ରେ ପଡ଼ିଥିଲ, ଆଉ ପ୍ରାଣ ପାଇ ନଥାନ୍ତ ।"

"ସେଠୁ କ'ଣ ହେଲା ବୋଉ !"—ପଗ୍ଭରିଲା ବଟ । ବୋଉର ଚେତା ବୁଡ଼ିଯାଇଛି, ଆଉ ଆଗକୁ ନ ଶୁଣିଲେ ତା ମନ ଅସ୍ଥ ଧରୁ ନାହିଁ ।

"ମୁଁ ତ ଚେତା ବୁଡ ସେଇଠି ପଡ଼ିଗଲ । ଇଆଡ଼େ କ'ଣ ହେଇଚ ନା ବୁଢ଼ା ନାଥକୁ ଧର ବୁଲଉଛନ୍ତ । ସେ ଟୋକା ଖାଇବ ବୋଲି ରଡ଼ୁଚ ·ଯେ ହାତରେ ଗୋଡ଼ରେ ରଖେଇ ଥୁଆଇ ଦଉନାହିଁ । ଶକ୍ତରେ ତାକୁ ବୁଝଉଛନ୍ତ, ଇଆଡ଼େ ମୋ ଉପରେ ରାଗ ଯେ କହିଲେ ନ ସରେ । 'ଏତେ ରାତ ଅଛି, ଟୋକ ଗଲା କାହିଁ ? ରହ ଆସୁ ତାକୁ ମୁଁ ଦଉଚ

ଆଜ ।' ଏତିକବେଳେ ଏଇ ଦଳେଇଘରର ବୁଢ଼ୀ ଦାଣ୍ଡରୁ ବାହାର ପାଟି ଶୁଭିଲା, 'କଣ ହେଲା କି ଦାସେ ଆପଣେ ?' 'ଦେଖ ହେ ବୋହୂ,ପିଲାଟା କୁଆଡ଼େ ଯାଇଛି ଏତେ ରାତିରୁ । ଘରେ ଗସ୍ତଟା ନାହିଁ । ଗାଧୋଇଗଲା ପରି ଦଶୁଛି । ମୁଁ ଏବେ କେତେବେଳୁ ଏ ପିଲାଟାକୁ ଧରି ବୁଲୁଛି । ଫେରିଆସନ୍ତା ନା ନାହିଁ ?'

'ସେଇଟା କାନରେ ପଡ଼ିଲାରୁ ମୁଁ ଆପଣଙ୍କୁ କହିବ ବୋଲି ପଶି ଆସିଲି । ମତେ ଲାଗିଲା ବ୍ରାହ୍ମଣଘର ବୋହୂ କୁଁଠି ପଡ଼ିଗଲେ ବୋଲି । ଝଣ୍ ଝାଣ୍ ହୋଇ କଏ ଗୋଟେ ପଡ଼ିଗଲା ଏ ସିନ୍ଦୂର ଘରଆଡ଼େ ।' ମୋ ଦେହରେ ସେତେବେଳକୁ ଅଳଂକାର ଭର୍ତ୍ତି । ପଡ଼ିବାରେ ଶବ୍ଦ ନିଶ୍ଚେ ହୋଇଥିବ । ଦଳେଇବୁଢ଼ୀ ସାଙ୍ଗରେ ସମସ୍ତେ ଆସିଲେ । ଦେଖିଲେ ମୁଁ ଠାଏ ପଡ଼ିଛି ତ ଗସ୍ତ ଠାଏ ପଡ଼ିଛି । ମତେ ସେଇଠୁ ଟେକି ଘରକୁ ନେଇଆସିଲେ । କେତେବେଳକୁ ଚେତା ଆସିବାରୁ ମୁଁ ସବୁ କହିଲି । ଶଶୁରେ ଗୁଡ଼େ ଗାଳିଦେଲେ । ସେଇ ଦିନଠୁ ପଡ଼ିଲି ଯେ ଜରରେ ଛଅମାସ କାଳ । କେତେ କଷ୍ଟରେ ବଇଦ ଗୁଣିଆ କରି ଯାଇ ଦେହ ବାଟକୁ ଆସିଲା ।"

"ସେଇଟା ଖାଲି ଆଶଙ୍କା ହେଇଗଲା । ନଇଲେ ସେ ଯଦି ଶୁଣିଥାନ୍ତା କ'ଣ କ୍ଷତି କରିବ ବୋଲି, ସେଇ ପାଣିରେ ତ ବୁଡ଼େଇ ଦେଇଥାନ୍ତା, ଆଉ ଏତେ ବାଟ କାହିଁକି ଆଣିଥାନ୍ତା ?"

"ଦେଖ ମ ବୋଉ, ଟୁକୁଆ କେମିତିଆ ତଳରେ ଶୋଇପଡ଼ିଲାଣି ।"

"ହେଁ; ଟୁକୁଆ ତଳରେ ଶୋଇଗଲା, ତୁମେ ସବୁ ଖାଲି ଭଲଲୋକ । ଯା, ସବୁ ଶୋଇପଡ଼ିବ ଯା । ରାତି ହେଲା, ଖାଇକରି ଆଉ ବସନ୍ତ ନାହିଁ । ଭାତଯାକ ନାଲ-ହେଇଯିବ । ସ୍ୱାଙ୍କୁ ସବୁ ନବଟି, ଉଠ, ନେଇ ଶୁଆଇଦିଅ ।"

"ଆମକୁ ଡର ମାଡ଼ିବ ।"

"ଡର କାହିଁକି ମାଡ଼ିବରେ ! ବୋଉ ତ ସାଙ୍ଗରେ ଥିବ । ସ୍ୱାଙ୍କୁ ଖାଲି ଡର ମାଡ଼ୁଯାଉଛି । ଯା, ସବୁ ଉଠ । ଶୋଇପଡ଼ିବ ଯାଅ ।"

"ଟୁକୁଆକୁ ଟିକିଏ ଧରିବୁରେ ଭାଇଗ, ମୁଁ ଏଠୁ ଉଠେ । ଖଟ ଶେଯ ତ ପଡ଼ିଛି । ଚାଲ, ଚାଲ ସବୁ ।"

"ଏଠି ଏ ଆଲୁଅଟା ଟିକିଏ ଥାଉ । ତୁମ ଶୋଇବାଘରେ ଗୋଟେ ଜଳୁଥିବ ତ, ଏଇଟା କାହିଁକି ଫେର୍ ଟେକିନଉଚ ? ଥାଉ ।"

ଆଲୁଅ ପାଖକୁ ନେଇ ବଙ୍କା ବାଡ଼ିର ଅଗଟାକୁ ଦାସେ ଟିକିଏ ନିରେଖି ଚାହିଁଲେ । ଗୋଟେ ଖିଲ ସ୍ୱାପ ଏଥିରୁ ହୁଗୁଳି ଗଲାଣି । ଯଜ୍ଞପୋଡ଼ା ପଇସାଟା କେତେବେଳେ ଝଡ଼ିପଡ଼ିବ । ତେତିଶ କୋଟି ଦେବତାଙ୍କୁ ଆହୁତ ଦିଅ ହେଇଛି ସେ ଯଜ୍ଞରେ । ଏଇଟା ପାଖରେ ଥିଲେ ଡାଆଣୀ ଗୋସାଣୀଙ୍କୁ ଆଉ କି ଭୟ ! ସେ ତ ସ୍ୱା ପାଖ ପଶିବେ ନାହିଁ । ମାତ୍ର ସେତେ ଲୋକ ଯେତେ କଥା କହନ୍ତି ପଛେ, ସେଗୁଡ଼ାକ ସବୁ ଅଧେ ସତ, ଅଧେ ମିଛ । ଗୁଡ଼ାଏ ଭୂତ ସ୍ୱାପ ମଣିଷ ମନରୁ ଉପକାତ ହୋଇଯାଆନ୍ତି । ସେଦିନ ଏମିତି

ଶୁକୁପକ୍ଷେ ରାତରେ ବାଡ଼ପଟେ କିଏ ଦେଖିଆସି କହିଦେଲା ଯେ ମିସ୍ତ୍ରାଣୀ ବୁଢ଼ୀ ଲୁଗା କାଢ଼ି ଧୋଇଦେଇଚି, ଆଉ ଲଙ୍ଗଳା ହୋଇ ବସି ଖାଲି ଝାଙ୍କି ହଉଚି । ଆମେ ମଧ୍ୟ ଅଳସରେ ଅଧାନିଦରେ ତା କଥାରେ ପଡ଼ି ଧାଇଁଲୁ । ସତକୁ ସତ ଖଣ୍ଡେ ଦୂରରେ ଲୁଗାଟା ଥୁଆ-ହୋଇଥାଏ, ଆଉ ବୁଢ଼ୀ ହାତ ଗୋଡ଼ ହଲେଇ ଝୁଙ୍କି ହଉଥାଏ ।...ଖରାଦିନ, ସମସ୍ତେ ଦାଣ୍ଡରେ ଖଟ ପକେଇ ଶୋଇଥାନ୍ତି । ଜଣେ ସେଇଠି କହିଲା, ଦେଖିଲେ ହୁଅନ୍ତା ବୁଢ଼ୀ ଶୋଇଚି ନା ନାହିଁ ! ଯାଇ ଦେଖିଲା ବେଳକୁ ବିଚ୍ଛିତ୍ତ ବୁଢ଼ୀ ଅଚେତ ହୋଇ ଶୋଇଚି । ତା ହେଲେ ସେଇଟା କିଏ ? ସୁନ୍ଦରୀ ଘରର ଟୋକାଟା ହେଲେ ଭଣା ସାହସିଆ ! ବାଡ଼ଆଡ଼େ ଖଣ୍ଡେ ଠେଙ୍ଗା ଧରି ପଶିଗଲା । ଦେଖିଲା ବେଳକୁ କ'ଣ ନା—ପିଲା ଖଜୁରି ଗଛଟା ପବନରେ ଦୋହଲୁଛି, ଆଉ ପାଖ ଘରେ ଚୂନ ଲଗେଇ ସେଇ ଚୂନହାଣ୍ଡିଟାକୁ କିଏ ସେଇଠି ଓଲଟେଇ ରଖିଦେଇଛି । ସମସ୍ତେ ବୁଝିକି ହସିଲେ । ମାତ୍ର ସେ ଟୋକାଟା ସାହସ କରିନଥିଲେ ସେଇ କଥାଟା ଏବେକୁ କେତେ ଫେଣେଇ ହୋଇସାରନ୍ତାଣି ।

ମାତ୍ର ଝୁକୁମା' ଯାହା ଦେଖିଲା ସେଇଟା କ'ଣ ? ଜମା ସେସବୁ ନାହାନ୍ତି ବୋଲି ମଧ୍ୟ କହିହେବ ନାହିଁ । ସେମାନେ ସବୁ ଅଛନ୍ତି-ଯେ, ହେଲେ ଆମକୁ ଯେମିତିଆ ଅଂଧାରୁଆ ନିଛାଟିଆ ଜାଗା ଭଲ ଲାଗେ ନାହିଁ, ତାଙ୍କୁ ମଧ୍ୟ ଆଲୁଅ ଜାଗା, ଗହଳି ଜାଗା ସୁଖ ଲାଗୁ ନ ଥିବ । କେତେବେଳେ କେମିତି ହାବୁଡ଼ିସିବା କଥା । ଆଚ୍ଛା, ମଲାମାନଙ୍କେ କ'ଣ ମଣିଷ ଏଇ ପ୍ରେତ ହୋଇ ବୁଲିବ । ସେମିତିଆ ହେଲେ ତ ଏବ ସୁଦ୍ଧା ଯେତେସବୁ ମଲେଣି ହନ ହ'ପନ୍ଦରେ ଭେଳା ଭେଳା ହୋଇ ପ୍ରେତ ବୁଲୁଥାନ୍ତେ । ସେ ଲୁହେ ଯେ, କର୍ମଫଳକୁ ଗ୍ରହି ପଶୁଯୋନି ପରି ପ୍ରେତଯୋନିରେ ଆତ୍ମା ସନ୍ତୁଳୟାଏ । ସେଦିନ ଧବଳେଶ୍ୱରଙ୍କଠି ଏଇ ପ୍ରସଙ୍ଗରେ ପଣ୍ଡିତେ ଭଲକଥାଟିଏ କହିଲେ—"ଏ ପିତୃପୁରୁଷଙ୍କୁ ସବୁ ପିଣ୍ଡ ଦେବା କଥା, ଯାହା ଲୋକେ କରୁଛନ୍ତି, ସେଇଟା ଖାଲି ବିଶ୍ୱାସଉପର କଥା, ନ ହେଲେ ତା ପାଇଁ ପ୍ରମାଣ କିଛି ନାହିଁ । ଆମର ସବୁ ବିଶ୍ୱାସ ଯେ ପିତୃଲୋକ ଅଛି । ସେମାନେ ସନ୍ତୁଷ୍ଟ ହେଲେ ବଂଶବୃଦ୍ଧି ଘଟେ । ସେଥିପାଇଁ ସବୁ ବର୍ଷକୁ ଥରେ ବାପ ନଥିଲା ପୁଅ ବାପ, ଗୋସେଇଁବାପଙ୍କୁ ପିଣ୍ଡ ଦିଏ । ଯଦି ମଲା ପରେ ସବୁ ସରିଯାଉଥାନ୍ତା ମଣିଷ ବଞ୍ଚିପାରନ୍ତା ନାହିଁ । ତାକୁ ଭୟ ଖାଇଯାଆନ୍ତା । ଏଣ୍ଡ ମରିଗଲେ ମଧ୍ୟ ସମ୍ପର୍କ ରହିବ, ଆସ୍ତେ ଆସ୍ତେ ସାତପୁରୁଷ ଗଲେ ଯାଇ କଟିଯିବ । ଏଇଟାରେ ମନରେ ଟିକିଏ ଆଶା ହୁଏ ନା ନାହିଁ ? ନହେଲେ ତ ବଞ୍ଚିବା ମହା କଠିନ ହୋଇଯାଆନ୍ତା ।"

"ସତ ଯେ ଆଜ୍ଞା, ଆପଣଙ୍କ କହିବା କଥା ହେଲା । ଆମେ ସବୁ ମନ ବୁଝେଇବାକୁ ଗୋଟେ ଏମିତିଆ ପିତୃଲୋକ ସୃଷ୍ଟି କରିଚେ । ନହେଲେ ପ୍ରକୃତରେ ତ ମରିଗଲାଠୁ ତେଣିକି ଆଉ କିଛି ନାହିଁ । ମାତ୍ର ନାହିଁଟା କହିଦେବାକୁ ମଧ୍ୟ ସେମିତିଆ ପ୍ରମାଣ ଦରକାର । ଅସଲ କଥା ହେଲା—ଏସବୁ ବିଷୟରେ କେହି କିଛି ଜାଣନ୍ତି ନାହିଁ । ତା ଭିତରୁ ଅଧେ ବିଶ୍ୱାସ କରନ୍ତି, ଆଉ ଅଧେ ବିଶ୍ୱାସ କରନ୍ତି ନାହିଁ । ଖାଲି ଏଗୁଡ଼ାକ ବିଶ୍ୱାସର କଥା ତ—ଆରେ ଆମେ ତ ହାତୁରେ ବ୍ରହ୍ମ ବିଶ୍ୱାସ କରୁଚେ । କହିଲା ପରି, 'ଏହି ସ୍ତମ୍ଭରେ ଦେଲେ ମନ,

ଏ ଗ୍ରନ୍ଥେ ଅଛୁ ଭଗବାନ ।’ ସ୍ୱପ୍ନରୂପରେ ପିତୃପୁରୁଷ ଅଛନ୍ତି ନା; ନହେଲେ ମହାପ୍ରଭୁ ନିଜେ କହିଥାନ୍ତେ ଅର୍ଜୁନଙ୍କୁ ‘ପିତୃପୁରୁଷ ମଧ୍ୟେ ମୁହିଁ···ଅର୍ଯ୍ୟମା ନାମଟି ବୋଲଇ ।’ ଆପଣ ସବୁ ଜ୍ଞାନବନ୍ତ ଲୋକ ଆଜ୍ଞା ! ଆପଣ କେଉଁ ମାର୍ଗେ କୋଉ କଥା କହିବେ ଆମେ କ’ଣ ବୁଝିବା ? ଆମର ମାତ୍ର ସିଧାସଳଖ କଥା । ଆମ ସତେଇଶି ପୁରୁଷ ଏ କଥା କରି କିଛି ସ୍ୱର୍ଗ ହୋଇଯାଇ ନାହାନ୍ତି । ଆମେ ମଧ୍ୟ ଏଥିରୁ ବାହାର ହୋଇଗଲେ କିଛି ସୃଷ୍ଟିଟାକୁ ଟାଳି-ଦେବା ନାହିଁ । ଆମେ ଆଉ ପିତୃପୁରୁଷେ ନାହାନ୍ତି କହି ତାଙ୍କ ପିଣ୍ଡଗଣ୍ଡାକ ପକେଇଦେବୁ ନାହିଁ ।’’ ଆରେ ହେ, ଦେଖିଲ ପଅର ଧନ ତ ଦଶମୀ ।

“ହଇହୋ, ଟିକଏ ଇଆଡ଼େ ଶୁଣିବ କି ?’’

‘‘କ’ଣ ବଲୁଚ ?’’

‘‘ଆହୋ, ଟିକଏ ଆସ ।’’

ଟୁକୁମା’ ଆସି ଟିକଏ ବିରକ୍ତ ହୋଇ ପଚାରିଲେ, ‘‘କ’ଣ ବଲୁଚ ଯେ ?’’

‘‘ପଅରଧନ ପରା ନନାଙ୍କ ଶ୍ରାଦ୍ଧ ।’’

‘‘ମୁଁ ଜାଣିଚି, କ’ଣ ହେଲା ସେଇଠୁ ?’’

‘‘ନାଇଁ କିଛି ନାହିଁ ଯେ—ପଣସପତ୍ରଗଣ୍ଡେ ସାଆନ୍ତର ଗଛରୁ ଆଣିବାକୁ ହେବ—କଦଳୀପତ୍ର ଗୁଡ଼ାଏ ଲୋଡ଼ା ଶ୍ରାଦ୍ଧପତ୍ର ପାଇଁ । କାଲି ଭିତରେ କଲେ ସିନା ହବ !’’

‘‘କରିବ ନାଇଁ କି ? ତୁମର କିଛି ନାହିଁ, ଦେଖ ମୁଁ ଆଗରୁ କହିଦେଉଛି—ସେତେବେଳକୁ ଫେର୍ ଡେଉଁଥିବ ।’’

‘‘ଆରେ ସତେ ତ ! କାଲି ଯାଇ ସେଥିରୁ ଆଗ ଗଣ୍ଡେ କେଉଁଅଡ଼ୁ ଯୋଗାଡ଼ କରିବାକୁ ହେବ । ହଉ, କାଲି କଥା ତ ଅଛି । ପିଲେ ଶୋଇଲେଣି ? ···ଉଠିବା । ବସି ଭାବୁଥିଲି ଯେ···’’

‘‘ରଖିଅ, ତୁମର ତ ସବୁ କଥାରେ ଖାଲି ଭାବନା !’’

# ବେଦୀତଳ ମା'

"ମୁଁ କହୁନ ତୁମକୁ—ଏ ମାସର ଆସି ସତର ଦିନ ଗଲାଣି । ସେ ଆଉ ଟଙ୍କା ପଠେଇବ ନାହିଁ । ସେତେବେଳେ କଥାଟା ସିନା ଖଙ୍ଗ୍‌ରୁ ଲାଗୁଥିଲା, ଏବେ ବୁଝିଲ ତ ? ମୁଁ ସବୁ ଜାଣେ । ମୁଁ ତ ଉଡ଼ଗଲା ଚଢ଼େଇର ପର ଗଣି ଥୋଇଦେବି—ସେ କ'ଣ ମତେ ଲୁଚେଇବ ବା ?"

"ତତେ ଯ୍ଵାପ କ'ଣଟା ଜଣା ? ହେଇ ପତ୍ର ଲେଖିଛୁ, 'ନନା, ଏ ମାସ ଟିକିଏ ସାନପୁଅ ଦେହ ଅସୁଖ ନେଇ ଖର୍ଚ୍ଚାନ୍ତରେ ପଡ଼ିଗଲି । ଟଙ୍କା ଆଉ ପଠେଇ ପାରିବି ନାହିଁ; କୌଣସି ପ୍ରକାରେ ଚଳିଯିବ ।' ପିଲାଟା ଦେହ ସେଇଠି ଅସୁଖ ହେଇଚି ସେ କଥା ବୁଝିବାକୁ ନାହିଁ, କ'ଣ ନା ଟଙ୍କା ନ ପଠେଇଲା ବୋଲି ଦୋଷଟେ କରିପକେଇଲ !"

"ହଁ—ପିଲାଟା ଦିନ ଆଉ କ'ଣ ଏମିତିଆ ଖରାପ ହେଇଯାଇଛି ? କାଟରା ଶ୍ରେଣୀ ପର୍ବ ହେଇ ପଅନ୍ଦରଦିନ ନା କା' ଆଗଦିନ ଦେଖି ଆସି କହୁଥିଲା—'ତମର ଦି' ନାତିଙ୍କି ଦେଖି ଆଇଲି—ସେ ଦାଣ୍ଡରେ ଖେଳୁଥିଲେ । ବୋହୂକୁ ଦେଢ଼ଟଙ୍କାର ନୂଆ ପାଣିକାଚ ପିନ୍ଧାଇଦେଲା ।' ଆଉ ଦେହ କ'ଣ ଖରାପ ହେଇଗଲା ! ଯିଏ ନାହିଁ କରିବ ଦବା ପାଇଁ, କୋଉ ଖୋଇରେ ହେଲେ ସେ ନାହିଁ କରିଦବ ।"

"ହଉ ହେଲା, ନ ଦବ ତ ନାହିଁ—ସେଥିକି କ'ଣ ଓର ପଡ଼ିଛୁ କି ? ସେ ସିନା ଏବେ ଗୃହୀର କଲା—ମୁଁ ତ ଫେର୍ ଲକ୍ଷ୍ମୀନାରାୟଣଙ୍କ ଦୟାରୁ ଗୁଳାସି ବର୍ଷସରିକି ଏତେ ବଡ଼ କୁଟୁମ୍ବଟା ଟେକେଇଆଣିଲି ! ଗୁଡ଼, ତାକୁ ଯେବେ ପଇସା ନଅଣ୍ଟ ପଡ଼ୁଛି ସେ ଏବେ ତା ପିଲାଙ୍କୁ ନେଇ ଚଳୁ । ସେ ଆନନ୍ଦରେ ରହିଲେ ଆମର ସନ୍ତୋଷ । ପଞ୍ଚାବନଟି ଟଙ୍କା ତ କ'ଣ ଦରମା, କେତେ ଆଉକୁ ହେଲେ ସେଇଟା ଅଣ୍ଟିବ କହୁନ !"

"ଆଉ ଅର ତ ତା' ତୁଣ୍ଡରେ ମେ କହୁଥିଲା, 'ବୁଝିଲୁ ବୋଉ, ଦି'ପଇସା ଉପୁରି ଅଛି । ଧରିବସିଲେ, ଦିନ ଭିତରେ ଟଙ୍କା ଗୃରି ପାଞ୍ଚରୁ କମ୍ ନାହିଁ । ନଇଲେ କ'ଣ ପଞ୍ଚାବନ ଟଙ୍କା ଦରମାରୁ ପଚିଶ ଟଙ୍କା ପଠେଇଦଉଥାନ୍ତି ?'—ପୁଅ ମାଇପ ଥିଲେ ବୋଲି ପଚିଶ ଟଙ୍କା ମାହମୁଣ୍ଡାଲିକି ମାସମୁଣ୍ଡାଲି ବାହାରିଆସୁଥିଲା । ଇଲାଗେ ଆଉ ଏଠି କିଏସେ ଅଛି କି—ସେ ଟଙ୍କା ପଠେଇବ ? ସେ ଆଉ ଦବ ନାହିଁ, ମୁଁ ଏଇ କାନ୍ଥରେ ଗଣ୍ଠି ପକେଇ କହୁଚି । ନ ହେଲେ ମୁଁ ଏବେ କୁଆଡ଼ି ତାକୁ ଡରିଯାଉଚି । ମୋର ତ ଆଉ କାଖରେ କୋଡ଼ରେ ହେଇ ପାଞ୍ଚଟା ନାହାନ୍ତି ଯେ ଲଇଁ ପଡ଼ିବ ଆଲୋ ବାପ ଲୋ କ'ଣ କରିବ ବୋଲି । ଟୁକୁଆଟାକୁ ତ ଏ ବୈଶାଖକୁ ସାତ ପୂରି ଆଠ ଗୃଲିବ । କ'ଣ ଦି' ଅକ୍ଷର ପଢ଼ିଦେଲେ ତାର ମୁଣ୍ଡକୁ ହାତପାଇଯିବ । ଏବେ ତ ଆଉ ଆଗ ପରି ଚୂଡ଼ା, ଗୁଡ଼ଲା ଧରି

କନଆଁ ଖୋଜା ନାହିଁ । ଡଅଁ ରଖିଥିଲେ ପାଦତଳେ ଆଣି ଗଣ୍ଡା ଗଣ୍ଡା କନଆଁ ଯାଚବେ । ତାଙ୍କ ମନକୁ ବାଛୁ ସବୁ ବଶ ହୋଉଥାନ୍ତୁ ତେଣିକ ।"

"ସେଥିରେ କ'ଣ କଥା ଅଛୁ କ ? ମୋର ତ ଆଉ ହାତଗୋଡ଼ ପଡ଼ି ଯାଇ ନାହିଁ । ତାକୁ ମଣିଷ କଲ, ଏଗୁଡ଼ାଙ୍କ କ'ଣ କରିପାରବ ନାହିଁ ? ମୁଁ ଭାବୁଚୁ କ'ଣ କ ରଘୁନାଥ ପର ପୁଅ କ'ଣ ଶେଷକୁ ଏମିତ କରିପାରବ ?"

" ଭାଇନା କ'ଣ ଚିଠି ଦେଇଚ କ ବୋଉ, କ'ଣ ଲେଖିଚ ?"

ଭାଇଗ ବାପ ଭଲଆ ଖୁବ୍ ମଜବୁତ୍ ଭେଣ୍ଡାଟାଏ ହେଇଗଲାଣି । ମହିରେ ମହିରେ ପୂଜାପାଠ ମଧ୍ୟ ଶିଖିଗଲାଣି । କେବେ କେମିତ ବାପଙ୍କ ମନ ନ ଲାଗିଲେ ପୁଅକୁ ଲକ୍ଷ୍ମୀ-ନାରାୟଣ ମନ୍ଦିରକୁ ପଠାଇଦଅନ୍ତି । ରଘୁନାଥ ତ ଚାକିରି କଲା । ଏଣିକ ଭାଇଗ ମନ୍ଦିର କାମ ସମ୍ଭାଳିବ ।

"କ'ଣ ଆଉ ଲେଖିବ ? ଏ ମାସରେ ନାହିଁ କ ଆଉ କୋଉ ମାସରେ ଏଣିକ ଆଉ ଟଙ୍କା ପଠାଇବ ନାହିଁ ।"

ପୁଅ ପଚାରୁଥାଏ ଏବଂ ମା' ଯେତେ ହେଇପାରେ ବାଗେଇ ବାଗେଇ ତାକୁ ବୁଝାଉଥାନ୍ତି । ବାପେ ଚୁପ ହୋଇ ବସି ଶୁଣୁଥାନ୍ତି ।

"ଭାଉଜ-ନଆରେ ପଡ଼ି କ'ଣ ଭାଇନା ଏମିତଆ କରୁଚୁ ?"

"ସମସ୍ତେରେ ପୁଅ ସେଇଆ । ତୁ କ'ଣ ଘରଦ୍ୱାର କଲେ ସେଇଆ କରିବୁ ନାହିଁ କ ? ମାଇପମୁହଁକୁ ଚାହିଁଲେ ତ ସଂସାରର ଆଉ କେହି ଦଶିବେ ନାହିଁ । ମା' ବାପ କଥା ଗୁଡ଼—ବୁଢ଼ା ବୁଢ଼ୀ ଯେତେ ବେଗି ମରିବେ ସେତେ ବେଗି କଣ୍ଟା ଯିବ ।"

"ହିଁ, ସେ ଜଣେ ସେମିତଆ ହେଇଗଲା ବୋଲି କ'ଣ ସମସ୍ତେ ହେଇଯିବେ ?"

"ଦେଖିଛୁରେ ପୁଅ, ଆଉ କହିବାକୁ ନାହିଁ । ମା' ଦଶ ମାସ ପେଟରେ ଧରିବ, ଏତେରୁ ଏତେଟିଏ କରିବ, ନାକରୁ କାନରୁ କାଢ଼ି ବଜାରାଙ୍କି ମଣିଷ କରିବ । କ'ଣ ନା ବଣ ବାସିନ୍ଦ ସେ ହୋଇଯିବ ସାତ ପର । ତେଣିକ ପରା ବେଦୋଛଲ ମା' ଆସିଯିବେ । ସେ ଯାହା କାନରେ ମନ୍ତ୍ର ଫୁଙ୍କିବେ, ସେଇ ହବ ବେଦର ଗାର ।"

ଭାଇଗ କେମିତ ଲାଜେଇଲା ପରି କାନ୍ଥକୁ ଚାହିଁ କହିଲା, "ହଁ, ମ ହାଲିଆ ପଡ଼ୁଚୁ !"

"ହଉ, ତୋ'ର ତ ପୋଷିବା ବେଳ ଆଉର ଅଛୁ । ପିଲାଙ୍କ ସବୁ ଦେଉଛୁ—ତୋ ପାଇଁ ଶିକା ଉପରେ ଚୂଡ଼ା ଉଖୁଡ଼ା ମିଶି ଗୋଟେ ଟୋକେଇରେ ଅଛୁ । ହାଣ୍ଡିଶାଳଘର କାନ୍ଥକୁରାରେ ରସଗିଲାସରେ ଟିକିଏ ଦହି ଅଛୁ, ପକେଇ ଖାଇଦବୁ ଯା । ନଇଲେ ଚାଲ ମୁଁ ଦଉଚ । ତୁ କ'ଣ ସବୁ ପାଇବୁ କ ? ବାଘ ପର ସବୁଗୁଡ଼ାକ । ସେଇଠି ଜନ୍ମଷଟା ଥିଆହୋଇଥିବଟି; ମାଡ ସେଇ ପାଖରେ ଗୁରେଇ ଗୁରେଇ ହଉଥିବେ ପିନା, ତାଙ୍କ ପେଇଟା ଦଶିବ ନାହିଁ ।"

ସୁନାପୁଅ ଭାଇଗ ମୁଣ୍ଡର ପଛପଟ କୁଣ୍ଡେଇ କୁଣ୍ଡେଇ ବୋଉ ପଛରେ ଚାଲିଗଲା । ବଟ, ଲକ୍ଷ୍ମୀ, ଟୁକୁଆ ଦପହରଆ ଖାଇ ଦେଇ ଶୋଇଥିଲେ । କୋଉ ସ୍ୱରରେ ଛାଡିଦେଲେ

ଯେ ବୋଉ ଖାଇବା ଜନକ କାଢ଼ିବାକୁ ଯାଉଛୁ । ସେସବୁ ଉକାଭକ୍ତ ହୋଇ ଯାଇ ପଡ଼ିଥିଲେ ଚାଳଘର ପିଣ୍ଡାରେ । ଦାସଙ୍କ ସବୁ ଦାଣ୍ଡଘରୁ ଦିଶୁଥାଏ ।

ବଡ଼ିଆ ଆଣ୍ଠୁରେ ହାତ ଦେଇ ଲଙ୍ଗି ଠିଆହେଲା । ପଚାରିଲା, "ଏଇଟା କ'ଣ କଲେ ବୋଉ ?"

"ପେଟେ ତ ଏଥରୁ ଗିଳି ଶୋଇଥିଲୁ, ଚକ୍ଷି ପାରୁନାହୁଁ କେମିତିଆ ? ରହ, ସଞ୍ଜନା ଖାଇ ନାହିଁ, ତାକୁ ଆଗ ଦେଇଦେବ । ଏଇଲାଗେ ଉପରେ ପଡ଼ି ଖାଇଥାଅ, ସେତେବେଳକୁ ମୁଣ୍ଡକୁ ହାତପାଇଁଗଲେ କୋଉ ମା' କବ ?"

ସେଇ କଥାଟାକୁ କେଣେଇ ଆଉଣ ଥରେ ସେଇଠି କୁହାଯିବ—ଦାସେ ଏଇଟା ଜାଣନ୍ତି । ଏଣୁ ସେ ଆଡ଼କୁ ଆଉ କାନ ନ ଦେଇ ପୁଣି ପୁଅ ଦେଇଥିବା ଚିଠିଟିକୁ ଫିଟାଇ ପଢ଼ିଲେ ।

ଅକ୍ଷରଗୁଡ଼ାକ ଏବେ ଏମିତି କାହିଁକି ଲେଖୁଛି ଟୋକା—ଦେଢ଼ହାତ ଲମ୍ବର ଗୋଟେ ଲେଖା ଲକ୍ଷ୍ମୀ କାହିଁକି ଲମ୍ବିଛି—"ଶ୍ରୀଲ ଶ୍ରୀଯୁକ୍ତ ପିତୃଦେବଙ୍କ ସନ୍ନିଧାରେ ମୋର କୋଟି କୋଟି ନମସ୍କାର ପହଞ୍ଚେ ।" ବୁଢ଼ାଟିଏ ହୋଇଥା ବାପା, ତୋର ସବୁ କାମରେ ଜଗନ୍ନାଥେ ସାହା ହୁଅନ୍ତୁ । "ସାନ ପିଲାଟା ଦେହ ଆଜକୁ ସାତ ଦିନ ହେବ ଭାରି ଖରାପ । ତାକୁ ଡାକ୍ତରଖାନା ନେଇଥିଲି, ସବୁ କହିଲେ ଯେ ସରକାରୀ ଗୁଳିଆଙ୍କ ସବୁ ଔଷଧ ମାଗଣାରେ ମିଳିବ ବୋଲି । ମାତ୍ର ସେସବୁ ମିଛ । ବଡ଼ବଡ଼ିଆଙ୍କ ମିଳୁଥିଲେ ମିଳୁଥିବା ସବୁ— ନ ହେଲେ ଆମକୁ କିଛି ମିଳୁନାହିଁ । ଇଞ୍ଜେକ୍ସନ କଣିଲି । ଯାଉ ଆସୁ ରେକ୍ସା ଖର୍ଚ୍ଚ ଗୁଡ଼ାଏ ପଡ଼ିଲା । ତାକୁ ଦୁଇ ଦିନ ହେବ ଘରକୁ ଆଣିଛି । ଦେହ ବାଗକୁ ଆସିଲାଣି । ହେଲେ ଔଷଧ ଖିଆ ଚାଲିଛି । ମୁଁ କେତେ ଚେଷ୍ଟା କଲି, ଘରକୁ ପଇସା ପଠେଇବି, ପଠାଇ ନ ହେଲେ ଏବେ ଟଙ୍କା ଦଶଟା ହେଲେ ପଠେଇଦେବି—ହେଲା ନାହିଁ । ଏ ମାସ କେମିତି ହେଲେ ଚଳାଇଥା । ତମକୁ ଓ ବୋଉକୁ ଥାନ ଯାଏ'ର ସନ୍ନିଧାରେ ଓଳଗି ।"—ଦାସେ ମନକୁ ମନ ଟିକିଏ ହସିଦେଲେ । ସ୍ଥାପ ଗ୍ରେଜାର, କହିଲା, 'ଥାନ ସ୍ୱା'ର'—ଚିଠିଟା ଯତ୍ନରେ ଚଉତି ରଖିଦେଲେ । ପିଲାଟାର ଦେହ କ'ଣ ଏମିତିଆ ଖରାପ ହେଲା ମ ! ଉଁଃ, ବଡ଼ ଝୋଗିଣା ଟୋକାଟାଏ ହେଲା ସେଇଟା । ତା' ପିଲା ଦେହ ଏମିତି, ସ୍କେ ସ୍ଥାପ କୋଉ କାଚବା ଶୁଣିଠୁଁ ଶୁଣିଦେଲା ଯେ ସେ ଦାଣ୍ଡରେ ବୁଲୁଥିଲା । ସେ ଶୁଣିଟା ତ ପୁରୁଣା ବାହାପିଆ । ଦ'ପଦ ମନ ନେଇ ମିଛ ନ କହିଲେ କ'ଣ ସେ ମାଇକିନିଆଁଙ୍କ କାଚ ବାଜିବ !—ଗୁଡ଼, ମାଇକିନିଆଁ ଜାତଟା ସବୁ ସେଇଆ ହୋ; କହିଲା—"ଯାବଜ୍ଜୀବ ବିତ୍ତୋପାର୍ଜନଶକ୍ତଃ, ତାବନ୍ନିଜ ପରିବାରେ ରକ୍ତଃ" ।—ତାଙ୍କ ହାତରେ ବିତ୍ତ ଦଉଥିବ ଯଦି ସେ ଭଲ, ତୁମେ ଭଲ । ନ ହେଲେ ତ ସ୍ଥାପ ଫଡ଼୍‌କିନା ମୁହଁ ବୁଲେଇଦେବେ ଯେ ଚାହିଁବେ ନାହିଁ । ସେଇ ରଘୁନାଥ, ପଇସା ଦଉଥିଲା ଯେ ତା ପ୍ରଶଂସା କହିଲେ ବୋଇଲେ ସରୁ ନ ଥିଲା, ମାସ ଗୋଟେ ନ ଦବାରୁ ଦେଖ !

ଆଦେ ଯା, ତମକୁ ସେ କାହିଁକି ପଇସା ଦବ ଶୁଣେ ? ତା'ର ତ ଫେର୍ ଈଶ୍ୱର ଦେଲେଣି । ତା'ର ସୁବିଧା-ଅସୁବିଧାକୁ ତୁମେ କ'ଣ ଯାଇ ତା ପଠିରେ ପଡ଼ିବ ? ନାଇଁ, ସେ କଥା ହବ ନାଇଁ ! ତା'ଠୁ ଖାଲି ବୁଦ୍ଧି ଖାଇବ । କାହିଁକି ହେ, ସେ ଏବେ ନ ଦେଲେ କ'ଣଟା ନାକଗ ହେଇଗଲା ! ଆଜକାଲି ତ ସମସ୍ତଙ୍କ ଘରେ ଶୁଣିବ ସେଇଆ । ବାଘହୋଇଗଲେ ପୁଅବୋହୂ ଅଲଗା ହୋଇଯାଉଛନ୍ତି । ତମର ଏବେ ବ୍ରାହ୍ମଣଘର, ଏକାଠି ରହିବା ବିଧି । ଯା'ର ଜମିବାଡ଼ି ଅଛି ସେମାନେ ଏକାଠି ରହି ଗୋଟେ ହାଣ୍ଡିରେ ଖାଇଲେ ତାଙ୍କ ଲାଭ । ନହେଲେ ଜମିଟାକୁ ଯୋଗି ଯୋଗି କରି ସମସ୍ତେ ଗରିବ ହୋଇଯିବେ । ଆମର ତ ଜମି ଚକେ ବୋଲି ନାହିଁ—କ'ଣ ଆଳ କରି ଚଳିଯିବା ହେଲା କଥା । ସେଥିରେ ତା'ର ଗୃହଧର୍ମକୁ ଗୃହିଁ ସେ ଯଦି ବୁଢ଼ା ବାପ-ମା'ଙ୍କୁ ସଖ୍ୟ ଅନୁସାରେ ସାହାଯ୍ୟ ହେଲା ତ ଭଲ, ଆଉ ନ ପାରିଲା ଯଦି କ'ଣ ଅନ୍ୟାୟ ହେଇଗଲା ?

ଇନ୍ଦ୍ରମଣି ଏବେ ଏତେ ବଡ଼ଲୋକ ହେଇ କ'ଣ ଦଉଚ ? ହେଲେ ବାପଟାକୁ ମଧ୍ୟ ଈଶ୍ୱର ଦେଇଛନ୍ତି । ଏଇଲାଗେ ସେ ଜମିବାଡ଼ି କରଗଲାଣି । ଖାଇପିଇ ଭେଣ୍ଡିଆ ହୋଇ ରହିଛି । ହେଲେ ପୁଅଟାକୁ ନଜେ ମନାକରଦେଲା । ଜାଣିବା ଶୁଣିବା ଲୋକଟା ତ—"ବୁଝିଲ ବାପେ, ଆଗକାଳିଆ କଥା ତ ଆଉ ଏବକୁ ନାହିଁ । ପିଲାଗୁଡ଼ାଙ୍କୁ ଘରଆଡ଼ୁ ଆବୁଡ଼ି ଜୋକ ଲାଗିଲା ପରି ଝୁଣିଲେ ସେମାନେ ଆଉ କେବେ ଭରସାସରେ ବଞ୍ଚିବେ ବୋଲି ଜାଣିବେ ନାହିଁ । ସେମାନେ ତ ଆଉ ଅଶିକ୍ଷିତ ଘର ପିଲା ନୁହନ୍ତି ଯେ ତାଙ୍କୁ ବତେଇବ । ବଳେ ତାଙ୍କ ମନହେଲେ ସେ ବାପ-ମା' କଥା ବୁଝିବେ ନାହିଁ ! ଇନ୍ଦ୍ରମଣି ପରି କହୁଥିଲା ଯେ ସାଇବମାନେ ବାଘହୋଇଗଲେ ଆଉ ଘରେ ଆସି ରହିବେ ନାହିଁ । ନଜର ଘ-ଦ୍ୱାର କମାଣି ହେଲେ ଯାଇ ସେମାନେ ବସ ହୁଅନ୍ତି ।"—ପଣ୍ଡିତ ହେଲେ ମଧ୍ୟ ସ୍ୱାପ ଟିକଏ ଓପଡଙ୍ଗଣଆ ନା—ଟିକଏ ନଜ କଥାଟାକୁ ଟେକଟାକ କହିବ । ପୁଅଠୁ ପିନା ପଇସା ନେଲା ନାହିଁ—ସାନପୁଅ ଚନ୍ଦ୍ରମଣି ଆଉ ତା ତଳ ଭଉଣୀ ଦୁଇଟିକୁ ତା ସାଙ୍ଗରେ ଛାଡ଼ଦେଲା । ସେ ଯୋଡ଼ିକ ଖାଇବେ, ଲଗେଇବେ, ପାଠପଢ଼ିବେ—ସେ କଥା ଆଉ ସ୍ୱାକୁ ଲାଗିବ ନାହିଁ । ବାକି ସାନ ଦ'ଟାର ଏବେ ତ କିଛି ଜଞ୍ଜାଳ ନାହିଁ । ହେଲା ନା ଏକା କଥା । ଧରି ମାଇଲେ ସେ, ବାନ୍ଧି ମାଇଲେ ସେ । ଆମର ତ ଏଗୁଡ଼ାକ ଗୁଣରେ ନୁହନ୍ତି; ନ ହେଲେ ରଘୁ ପାଖରେ ରହି କ'ଣ ଦ'ଅକ୍ଷର ପଢ଼ିଯାଆନ୍ତେ ନାହିଁ କି ? ସେ ଆଡ଼ୁ ତ ହେଲା ନାହିଁ, ଦ'ପଇସା ପଠେଇବ ନାହିଁ ତ ଫେର୍ କେମିତି ହେବ ! ଆମେ ତ ଆଉ ପଠାଣ, ଫିରିଙ୍ଗି ନୋହୁ ଯେ ବାଘ ହୋଇ ବାପ ଭାଇ ଛାଡ଼ି ନୂଆ ଘର କରି ସେ ସେଇଠି ରହିବ ।

କାନଚେ ପଡ଼ିଲା—"ସେଇ ହେଇଯିବ ସବୁ । ତା'ର ମୁହଁକୁ ଗୃହିଁଦେଲେ ତ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ନେପୁରପାକ ଆଉ ଦଶିବ ନାହିଁ । ସେତେବେଳକୁ ଦେଖିବା ନାହିଁ ତୋ ବୋଉ-ସୁଅଗ ! ଏତେଦିନ ବାକି ମୁଁ ବଞ୍ଚିଲେ ହେଲା !"

ପିଲଗୁଡ଼ାକ ଟିକଏ ଟିକଏ କ'ଣ ବୁଝିଲେଣି ତ । ଖାଲି ଲାଜରେ କନ୍‌କନ ହଉଥାନ୍ତି । ଭାଇଗଣ୍ଡା ତଳକୁ ମୁହଁ ପୋତି ଖାଇଲାଗିଥାଏ । ଦାସେ ଭାବିଲେ—ଟୁକୁମା' ମଧ୍ୟ କିଛୁ ମିଛ କହୁନାହିଁ ତ । ବଡ଼ହୋଇଗଲେ ମଣିଷ ସତେ କେତେ ବଦଳିଯାଏ ? ନାରୀ ହେଲେ ପରା ମୋହିନୀ; ସ୍ତମ୍ଭନ, ମୋହନ, ବଶ୍ୟ, ଉଚ୍ଚାଟନ—ଏ ଗୁପ୍ତବିଦ୍ୟାରେ ପାରଙ୍ଗମା—ପାରଙ୍ଗମା କ'ଣ—ବିଧାତା ତାଙ୍କୁ ସେ ବିଦ୍ୟା ଦେଇ ଜନ୍ମ କରିଛି ଜାଣ ! ତାଙ୍କୁ ଦେଖିଲେ ତ ସ୍ୱାପ ମଣିଷକୁ କ ଭେଳିକ ଘୋଟିଯିବ ଯେ ସଂସାରରେ ଆଉ ସବୁ ଗୁଛ୍ଛ ଜ୍ଞାନ ହେବ । ନିଆଁ ଆଗରେ ଜଡ଼ ପଣ ମଣିଷଟା ତରଳିଯିବ ।···ବଡ଼ ଆଶ୍ଚର୍ଯ୍ୟ ହେ, ଜଣା ନ ଥିବ, ଶୁଣା ନ ଥିବ, କ୍ଷଣକେ ମଧ୍ୟରେ ସେ ହୋଇଯିବ ସବୁ । ପଧାନ ବୁଢ଼ାଟା କଥା ଦେଖନ୍ତୁ ! ଏବେ ଯିନା ଦାନଧର୍ମ କରୁଛି—ତାକୁ ତ ଫେର୍ ମୁଁ ପିଲାଦିନୁ ଦେଖିଆସୁଛି । ଏଡ଼େଟାଏ ହେଲ ପର୍ଯ୍ୟନ୍ତ ଲଙ୍ଗଳା ହୋଇ ଫିରିକ ଧରୁଥିଲା । ଗୋଟେ କାଳିଆ ବୋଦା ସ୍ୱାକୁ ଆଦରଯାଇଥିଲା । ସେଇଟାକୁ ଧରି ସେ ସବୁବେଳେ ବୁଲେ । ବାପ ତ ଯାତ ଦେଇଥିଲା ବୋଦାଟାକୁ ଦେବୀ ପାଖରେ ଛେଦ ପକେଇବ ବୋଲି ! ଯେଉଁଦିନ ତାକୁ ନେଇ ହାଣିଦେଲେ, ସେଦିନ ମେଣ୍ଢା ବୋବେଇଲା ପରି ଗର୍ଜି ଗର୍ଜି ଲୁହ ସିଙ୍ଘାଣି ହୋଇ ଗାଁ ସାରା ଇଏ ଧାଉଁଥାଏ । ତା' ଆରଦିନ ଉପାସରେ ମାମୁଘରକୁ ପଳେଇଲା, ହେଲେ ବାପକୁ ଦିନେ ବୋଲି ହୁଣ୍ଡି ନାହିଁ । ଆରେ ବାବୁ, ଦେଖୁ ଦେଖ୍ କ'ଣ ନା ଭେଣ୍ଡାଟିଏ ହୋଇ ଯେତେବେଳେ ବଡ଼ହୋଇପଡ଼ିଲା, ସେଇ ବାପକୁ ଯାହା ନକଲା ଅବସ୍ଥା କରିଛି ! କ'ଣ କଳିତକରାଳ ହେଲା ଦିନେ ଯେ, ଲୋକେ କହୁଛନ୍ତି, ହାତ ଉଠାଇ ଦି'ବିଧା ଚଉଦପ କଷିଦେଲା । ସେଇଥିରେ ତ ବୁଢ଼ା ବେମାର ପଡ଼ିଲା ଯେ ଆଉ ଭଲ ହେଲା ନାହିଁ, ମରିଗଲା । ଟିକିଏ ପଢ଼ାସାପଳାରେ ଚପା ଯିନା, ହେଲେ ଏ ଲୋକଟାକୁ ଏମିତିଆ ହବ ବୋଲି କିଏ ଭାବିଥିଲା ? ମାତ୍ର ସେ ମାଇକିନିଆର ବନ୍ଧାଣରେ ଏ କ'ଣ ନ ହେଲା ! ସେ ପରା ଗୋଟେ ନିଶା ହୋ, ମୁଣ୍ଡକୁ ଧରିଦେଲେ ଜ୍ଞାନ ଲୋପ ହୋଇଯିବ । ଯୋଗୀ ମୁନିଙ୍କୁ ପରା ବାସ୍ୟା କରିଦେବ ।

"ତମେ ଏଥିରୁ ଗଣ୍ଡେ ଖାଇଥାନ୍ତ କି ?"

"ନାହିଁ ଥାଉ । ଅବେଳାରେ ଭାତ ଖାଇଲି, ସେଇଟା ଆଉରି ହଜ଼ି ନାହିଁ । ରଖିଦେଇଥ, ପଛେ ଭୋକ ହେଲେ ଦେଖିବା ।"

ଗୁଳାଏ ଲେଖାଁ ଚକଟା ଖାଇ ବଟ, ଜସ୍ମି, ଟୁକୁଆ ମୁହଁରେ ପାଣି ହାତ ମାରି ମାରି ଧାଇଁଆସିଲେ ଏକମୁହାଁ, ଆଉ ଘରେ ନ ରହି ଚାଲିଲେ ଦାଣ୍ଡକୁ ।

"ହେ, ହେ ବଟ, କୁଆଡ଼େ ଏ ଯୋଡ଼ାଙ୍କୁ ଧରି ଧାଇଁଲୁ ? ଖରାବେଳ ଆଉରି ଯାଇନାହିଁ । କାହିଁକି ଏତେବେଳକୁ ଯାଉଛ ?"

"ଏଇ ଅମେ ଗୋପଘର ପିଣ୍ଡାରେ ଖେଳିବୁ"—କହିଦେଇ ସେ ପଳେଇଲା ।

ଭାଇଗ ଅଣ୍ଟେଇସାରି ଶୋଇବାଘରଆଡ଼େ ଗଲା । ଟୁକୁମା' ପଙ୍ଖା ଧରି ତା' ପଛେ ପଛେ ଗଲେ ପୁଅ ଶୋଇଲେ ତାକୁ ଟିକିଏ ବିଞ୍ଚିଦେବେ । ଦାସଙ୍କୁ ଟିକିଏ ହସମାଡ଼ିଲା ।

ବୁଢ଼ୀର ବଡ଼ ଆଶା ହେଲାଣି ଯେ, ବଡ଼ପୁଅ ସିନା ପର, କଣହେଲା, ଏଇ ପୁଅଟା ତାଙ୍କୁ ପୋଷିବ । ଏମାନେ ସତେ ଟିକିଏ ଆଶ୍ରା ନ ହେଲେ ବଞ୍ଚିପାରିବେ ନାହିଁ । ସ୍ତ୍ରୀ ମନ ତା' ମନ ଧରି ସ୍ତ୍ରୀଙ୍କୁ ସବୁବେଳେ ଚାଲିବାକୁ ପଡ଼ିବ । — ଏଇ ମାଇକିନିଆ ନ ହେଲେ ସୃଷ୍ଟି ଚାଲିବ ନାହିଁ; ଏଣେ ଏଇମାନେ ହେଲେ ସବୁ ଅନର୍ଥର ମୂଳ । ତାଙ୍କ ପାଇଁ ଯେତେ ବାଡ଼ିଆପିଟା, ଯେତେ କାଳି ତକରାର—ତାଙ୍କର ପାଇଁ ରାମାୟଣ ମହାଭାରତ ।

ବଡ଼ ଦୁର୍ବଳ ଜୀବଗୁଡ଼ିଏ ! ଲଇ ପଡ଼ି ଅଧିଆ ଗୁଡ଼େଇ ହୋଇଯିବେ; ମାତ୍ର ଦେଖୁ ଦେଖୁ ଏମିତି ପାକଳକାଟିବେ ଯେ ସାପ ଦେବେ ଖାଇ ସେ ଗଛଟାକୁ । ବଡ଼ଲୋକ ପରା, 'ନାରୀ ମୋହିନୀ ବିଷ୍ଣୁମାୟା ।' ମାଇକିନିଆ ପାଖରେ ସେ ମୋହିନୀଗୁଣଟିକ ପରା ରଖିଗଲେ, ନହେଲେ ତ ତାଙ୍କୁ କେହି ଗୁହାଁନ୍ତେ ନାହିଁ । ସୃଷ୍ଟି ମଧ୍ୟ ସେତିକିରେ ଶେଷ ହୋଇଯାଆନ୍ତା । ମାତ୍ର କାହିଁ ? ତାଙ୍କୁ ପରା ବିଧାତା ଗଢ଼ିଲାବେଳୁ ବାଗେଇ ରଖିଛି । ···ସେ ଜାନକୀ ଗଉଡ଼ ଝିଅଟାକୁ ଦେଖୁନ, ସେ ଯୁଆଡ଼େ ଗଲେ ତା' ପଛରେ ଗୋଟେ ଭେଣ୍ଡିଆ ଲାଗିଥାନ୍ତି । ଗଲା ବର୍ଷ, ଗୋଟାକୁ ଆଦର ଖଲାସ ହୋଇଗଲା । ଏଇଟା ହେଲା ନିୟମ । ପୁଅ ମାଇପ ଧରି ଗୃହ ସଂସାର କରିବା ସମସ୍ତଙ୍କର ମନ । ଆଉ ସଂସାର ମାୟାର ସ୍ୱରୂପ ହେଲେ ଏଇ ମାଇକିନିଆ···ମାଆ, ମାଇପ, ଭଉଣୀ, ଝିଅ—ନାନା ରୂପରେ, ନାନା ଫାଶରେ ଫାନ୍ଦ ରଖିବେ । ପାଣିରେ ସର ପକେଇବେ । ନ ହେଲେ ତ ମିଛର ସଂସାର ଖାଁ ଖାଁ ମେଳା ଦିଶୁଆନ୍ତା ! ସେଥିରେ ମନର ଲୋଭ ଆଉ ଧରନ୍ତା ନାହିଁ । ଏଇମାନେ ସେଥିରେ ମୋହ ଲଗେଇ ଦିଅନ୍ତି । ସ୍ତ୍ରୀଙ୍କର ପାଇଁ ମଣିଷ ବଞ୍ଚିବାର ଲୋଭ ନେଇ ବଞ୍ଚେ । ପୁଣି ସେଥିରେ ମୋଡ଼ାମାଡ଼ି ହୋଇ ପଡ଼ିଯାଏ ମଧ୍ୟ ସ୍ତ୍ରୀଙ୍କର ସକାଶେ । ଅଦ୍ଭୁତ ଜୀବ ! ଅଦ୍ଭୁତ କଥା ! ଗୋଟେ ଆଡ଼ୁ ଦେଖିବ ତ ବଡ଼ ନିରୀହ, କିଛି ନ ଜାଣିଲା ପରି ଦିଶୁଥିବେ, ଯେମିତି ତାଙ୍କୁ ଜଗି ନ ରଖିଲେ ବୋହିଯିବେ । ଆରଆଡ଼ୁ ଦେଖିଲେ ଗୋଟିଏ ଲେଖା ଅଜଗର ! ପୁରା ଗିଳିଲା ପର୍ଯ୍ୟନ୍ତ ଦାନ୍ତଟିଏ ମାରିବେ ନାହିଁ । ମାତ୍ର ସବୁଟି ଡାକିଦେଇ ଖଣ୍ଡ ଗୃହଆଡ଼େ ଥରେ ମୋଡ଼ ହେଇଗଲେ ଭିତର ପ୍ରାଣୀଟି ଶୂନ୍ୟ । ସାପ ଅସମ୍ଭବ କଥା । ଆମେ ସିନା କହୁଚେ—କ'ଣ ନା, ମାଇକିନିଆ ଲୋକ, ତାଙ୍କୁ ଜଗ —ମଣିଷ ବାଘ ପରି ଚାରିଆଡ଼ୁ ତାଙ୍କୁ ଅନେଇ ରହିଛି । ଆଚ୍ଛା, ସେ ବର୍ଷସା ହରିଣୀ ହେଲେ, ସେଇ ହେଲେ ପ୍ରକୃତରେ ବାଘୁଣୀ, ତାଙ୍କଠୁ ଉବୁରିଯିବ ଏମିତି ପୁଅ କେହି ନାହିଁ । ସବୁଠି ହାରିଲା ହାରିଲା ବୋଲି ଦେଖେଇ ହୋଇ ଶେଷରେ ସବୁଠ ତାଙ୍କର ଜିତାପଟ । ଅବଳା ରୂପ ନେଇ ମୋହିଦେବେ ଯେ ଶ୍ରମ୍ଭ ନିଶୁମ୍ଭ ମଧ୍ୟ କାବୁହୋଇଯିବେ; ବିବେଚନ ମରିଯିବ । ମନ୍ଦର ଗିରି ଦୋହଲେଇ ଦେଇଥିବା ପ୍ରବଳ ଅସୁର ଢାଳେଇ ପଡ଼ିବେ । ଆଖିବାଟେ ଖାଲି ମୋହିନୀ ରୂପକୁ ପିଉଥିବେ, ଇଆଡ଼େ ପତରରେ ଟୋପେ ବୋଲି ଅମୃତ ପଡ଼ିବ ନାହିଁ ।

ଓହୋ, ଏଇ ହେଲେ ମାୟାବୀ ବିଷ୍ଣୁର ଅମୋଘ ଅସ୍ତ୍ର । ତାଙ୍କ ଚରିତ୍ର ବୁଝିବା ଅର୍ଥ ବିଷ୍ଣୁମାୟା ବୁଝିବା । କହିଲା ପରା, "ସ୍ତ୍ରୀଣାଂ ଚରିତ୍ରଂ ପୁରୁଷସ୍ୟ ଭାଗ୍ୟଂ, ଦେବୋ ନ ଜାନାତି କୁତଃ ମନୁଷ୍ୟାଃ" । ଏ ସୃଷ୍ଟିଟା ଯା'ର ଖେଳଘର ସେ ଏ ନାରୀକୁ ନେଇ ଖେଳୁଚି

ଲୁଚକାଳି । ଟୋକା ବୟସରେ ଯେତେବେଳେ ଦେହ ମନରେ ବଳ ଥିବ, ସେତିକବେଳେ ଏଇମାନେ କୁଅଁଡ଼ୁ କୁଅଁଡ଼ୁ ଆସି ଘେରିଯିବେ । ଘୋ' ଘୋ' ଗ୍ରାଣୀ ଖେଳରେ ମଣିଷ ମଝିରେ ପଡ଼ିଯିବ । ଯେଉଁଆଡ଼େ ମୁହଁକରି ଫିଟିଯିବାକୁ ବସିବ—ସେଇଆଡ଼େ ଜଣେ ଜଗିଛି । ହାତ ଧରାଧରି ହୋଇ ସବୁ ଜଗିଦେବେ । ତଳକୁ ନଇଁ ପଳେଇବା କହିଲେ ସେମାନେ ଆହୁରି ତଳକୁ ନଇଁଯିବେ । ଡେଇଁ ପଳେଇବା କହିଲେ ପୁଣି ଉଚ୍ଚ ହୋଇଯିବେ । ତାଙ୍କ ହାତ ଅର୍ଗଳକୁ ଯଦି କ୍ଷେପେଟେ ଫକେଇ ହାଣିବ, ତେବେ ଯାଇଁ ପାରିହୋଇଯିବ । ମାତ୍ର ସେ କ'ଣ ସହଜ ପଡ଼ୁଚି ? ସେ ସବୁ ଗୁରିଆଡ଼େ ଘିରି ଘିରି ବୁଲୁଥିବେ ଆଉ ମହାନଦୀ ଭଉଁରି ପରି ମଝି ଲୋକଟାକୁ ବୁଡ଼ଉଥିବେ ! ···"ଘୋ ଘୋ ଗ୍ରାଣୀ, ପାଦେ ପାଦେ ପାଣି । ଘୋ ଘୋ ଗ୍ରାଣୀ ଅଣ୍ଟେ ଅଣ୍ଟେ ପାଣି । ଘୋ ଘୋ ଗ୍ରାଣୀ, ବୁକେ ବୁକେ ପାଣି"—ଏମିତି ବୁଡ଼ି ଗୁଲିବ । ସମୟ କାହିଁ ? ଦେଖୁ ଦେଖୁ, ଜଗୁ ଜଗୁ ଗଳା ବୁଡ଼ିଯିବ ।

ତ୍ରେତାଯୁଗ ମଲ୍ଲ ସେ ହନୁମାନ—ମହାଯୋଗୀ, ମହାଭକ୍ତ । ହାରିଗଲା ନା ସୁରସା ଅସୁରୁଣୀ ପାଖରେ । ସ୍ବେ ଯେତେ ଯୋଗ ବଳରେ ବଡ଼ ହେଉଥାଏ, ତା' ପାଟି ସେତିକି ମେଲା ହୋଇ ହୋଇ ଯାଉଥାଏ । ଶକ୍ତିରେ ସ୍ବାକୁ ଜିଣିବା ସମ୍ଭବ ନୁହେଁ । ଏଣୁ ବଳରେ ନହେଲେ କଳରେ ଜିଣିବ । ପଶିଯାଅ ତା ପାଟି ଭିତରେ । ସେ ଜାଣୁ ଯେ ସେ ଗିଳିଦେଲା । ଆଖିବୁଜି ସେ ଆରାମରେ ଢୋକି ଦେବ । ଦେଖିଲାବେଳକୁ ନାକବାଟେ ମୁକ୍ତ ରୂପରେ ହନୁ ଖସି ପଳେଇଲାଣି । ନାଗ୍ରି ତାଙ୍କ ଭାଗଟା ଅବଶ୍ୟ ନେବେ । ମାତ୍ର ତାଙ୍କ ସେତିକି ବଳ ନ ଦେଇ ଯଦି ବଳରେ ଜିଣିଯିବ ଭାବିଚ, ବାପା, ସେ ଆଶା ଛାଡ଼ । ତାଙ୍କ ସଂସାର ଲୋଡ଼ା, ଦିଅ ତାଙ୍କ ଶରୀରଟା ଦେଇଦିଅ, ସେଥିରେ ଧନ ବୈଭବ, ପୁଅଝିଅ ଆଉ ସବୁ ମିଳିବ । ମାତ୍ର ସୂକ୍ଷ୍ମ ରୂପରେ ଆତ୍ମାଟିକୁ ଖସାଇ ନେବାକୁ ହେବ । ନ ହେଲେ ସମ୍ପୂର୍ଣ୍ଣ ଢୋକିଦେବେ । ସେ ଜଠରାଗ୍ନିରେ ପଡ଼ି ପାଉଁଶ ହୋଇଯିବ ।

ଗୋରୁ ତ ଅବଶ୍ୟ ଘାସ ଘୁଚେ ଚରିବ । ତାକୁ ପଡ଼ିଆକୁ ନବାକୁ ହବ । ସେଠି ତାକୁ ଚରିବାକୁ ଛାଡ଼ିଦେଇ ତମର ତମେ ଗଛମୂଳେ ବସି ବଇଁଶୀ ବଜା । ମାତ୍ର ତାକୁ ଯଦି ଖେଳରେ ଜଗିବ, ସେ ରହିବ ରହିବ, ଶେଷକୁ ତମ ମାଉଁଶରୁ ଗାଉଁଜନା ପୁଳାଏ ଛିଡ଼ନେବ । ଆତ୍ମାକୁ ବଞ୍ଚେଇବ ଯଦି ଶରୀର ଦେଇଦିଅ । ଯାଉ ପ୍ଲାପ, ମାଟିର ଦିହଟା ତ, ଗଲେ ସେଠୁ କ'ଣ ହେଲା—ମାତ୍ର ଏଇଟା କ'ଣ ସହଜ କଥା ପଡ଼ୁଛି ?

ଟିକିଏ ଦୋଳଖା ପକେଇଲେ ପାଟିରେ । କାନ୍ଥକୁ ଆଉଜି କିଛି ସମୟ ବସିଲେ ଆଖିବୁଜି । ମୁଣ୍ଡ ଉପରେ ଧୀରେ ଧୀରେ ହାତ ମାରି ଟିକିଏ ହସିଲେ । ଭାବିଲେ—ସ୍ଲାପ, ଖାଲି ଭାଗବତଆ କଥାଗୁଡ଼ା ବସି ଭାବୁଥିଲି ନା ଅଫଲ କାମକୁ ଏଗୁଡ଼ା ନୁହେଁ । କଓ, କଏସେ ଜାଣିନାହିଁ ଯେ ନାରୀ ମାୟା ବୋଲି ? ମାତ୍ର କେଉଁଟା ସେଥିରୁ ତାକୁ ଛାଡ଼-ଯାଇଛନ୍ତି ! ···ମାୟା ରୂପରେ ସେ ତ ଅନ୍ଧ, ଆମ ଦେହଟା ପରି । ତାର କିନ୍ତୁ ଅକଳନ୍ତ ବଳ । ଆତ୍ମାପୁରୁଷଟି ବପୁରା ଚଳିପାରିବ ନାହିଁ, ଖାଲି ଦେଖିବ—ଧରି ଗ୍ରେଟାଟିଏ ! ଯୋଡ଼ିକଯାକ ତ ଅବଶ୍ୟ ଦେହ ଆତ୍ମା ପରି ଲାଗି ରହିବେ—ନ ରହିଲେ ସୃଷ୍ଟି ଚାଲିବ

ନାହିଁ । ବାକି ରହିଲା ଯନ୍ତ୍ର ବିନାଥ ମେଳାର ଅନ୍ଧ ଗ୍ଳେଟ । ପରେ ଗ୍ଳେଟ ବାଟ ଦେଖାଇବ, ଅନ୍ଧ ଚାଲିବ ତ ବେଶ୍ କିଛୁ ଆଗେଇଯିବା କଥା । ମାତ୍ର ଅନ୍ଧକାର ଏମିତି ପ୍ରଭାବ ଯେ ଗ୍ଳେଟଟି ଆଖିରେ ଘରଲମଡ଼େଇଦେବ—ଆଉ କିଛୁ ଦିଶିବ ନାହିଁ—ଯାଇ କୋଉ ଖାଲରେ ପଡ଼ିବା ସାର ।

"ଏମିତି କାହିଁ ଶୋଇଲ କହେ, ଜଦ ମାଡ଼ୁଚି ତ ଭଲକରି ଶୋଇନ !"

"ଓହୋ, କାହିଁକି ଏମିତି ଚମକେଇଲ ପରି ଡାକୁଚ ମ ! ପାଣି ଟିକେ ଆଣିବଟି ପିଇବା ।"

"ଉଖୁଡ଼ା ଆଣିବ ?"

"ହଉ ଆଣ ।"

# ପଞ୍ଚୁବର୍ଷ ଭୋଟ

"ଆରେ ଚୋଟିରେ ଲଗିବ, ପାଣି ମୁନ୍ଦାକ ଧୀରେ ପି ।"

"ଆଗ ଗିନାଟା ଧ । ମୁଁ ଯାଉଛୁ ମଟର ଗାଡ଼ି ଦେଖିବ । ଯୋଡ଼େ ଆସି ଗାଁ ମଝି ସଙ୍କୀର୍ତ୍ତନ ଛକରେ ଠିଆହେଇଚ"—କହି ବଟ ଗିନାଟାକୁ ପିଣ୍ଡାରେ ଥୋଇଦେଇ ଆଖି ପିଛୁଡ଼ାକେ ଡେଇଁ ପଳେଇଲା ।

ଟୁକୁମା ଗିନାଟା ଗୋଟାଉ ଗୋଟାଉ କହିଲେ—"ପୁଣି ଭୋଟ ସବୁ ଆରମ୍ଭ ହେଲା ପର ଲଗିଲାଣି । ନଇଲେ ମଟରଗାଡ଼ି କାହିଁକ ଆସନ୍ତା ? ଇଏ ଗୋଟେ ଏଥର ଲଗିବ ପାଲା କେତେ ଧନ— ହଠୁ ।"

"ବୋଉ, ମୁଁ ମଟରଗାଡ଼ି ଦେଖିଯିବି ।" ପଛରୁ କାନାଧର ଜୟୀ ନାକ ଗେଣେ-ଗେଣେଇ କରି କହିଲା ।

"ହେଇ ବଟ ଗଲା କହିଲୁନ, ତା ସାଙ୍ଗରେ ଯାଇଥାନ୍ତୁ ।"

"ମୁଁ ଯିବ ।"

"ଯା—କିଏ ମନାକଲା, ତୁ ଯିବୁଟି, ମୁଁ ଏ ଘରଟା ଓଳେଇପକାଏ । ଯା, ସେଇଠି ବଟ ଥିବ ଯା ।"

ଚୁଲି ଉପରେ ଭାତ ବସିଛୁ । ଭୋଗ ଗଣ୍ଡେ କ'ଣ ଆସେ ଯେ କ'ଣ ସମସ୍ତଙ୍କ ପେଟପର୍ ଅଣ୍ଟେ ? ମଟିରେ ମଟିରେ ମିଳାଲେ କିଛୁ ତା ଦେହରେ ମିଶେଇଦେଲେ ଭଲକରି ଗଣ୍ଡେ ଖାଇହୁଏ । ସକାଳୁ ମୁଢ଼ି ଥିଲା । ପିଲାଏ ଖାଇପିଇ କେ କୁଆଡ଼େ ଯାଇଛନ୍ତି । ଢାସେ ମନ୍ଦିରରୁ ଫେରୁ ଫେରୁ ଆହୁରି ଅନେକ ବେଳ ହୋଇଯିବ ।

ଟୁକୁମା ଅଣ୍ଟିରେ ପୁଞ୍ଜିଏ ମୁଢ଼ି ଧରି ପାଟିକି ପକେଇ ପକେଇ ଘର ଓଳାଉଛନ୍ତି ।

ସେ ଛତରଖାଇ ଘର ଝିଅ ଗଲା ନାହିଁ କି ଘର ଉଶ୍ୱାସ ହେଲା । ଆମର ଆମେ ଯେମିତ ହେଲା ଚଳାବୁ । ପଇତାକୁ ପାଟଲେଇ ପାଟଲେଇ ଶେଷକୁ ଭିନେ କରିଦେଲା ମହା ମଉନ ମୁହାଁ । ତାର କୋଉ ଶିରରେ ପାଣି ଯାଉଛୁ କେହି କହିପାରିବେ ନାହିଁ । ରଘୁନାଥ ପରି ପୁଅ ! ଛୁ—ଛୁ—ଛୁ—ଧନରତ୍ନ ଖାଲି ତାରି ପାଖରେ ଗୋଳେଇ ପୋଳେଇ ହେଲା । ସେ କ'ଣ ହେଲେ କରିବେ—ତାକୁ ତ ମୋହିନୀ ଲଗେଇ ମେଣ୍ଢା କରିଦେଇଛୁ । ହଉ ଯା', ମୁଁ କ'ଣ ନମିଁଙ୍ଖୀ ହେଇଛୁ ? ମୋର ତ ଆଉ ସ୍ୱରଟା ଫେର୍ ସେ ଲକ୍ଷ୍ମୀନାରାୟଣ ଦେଇଛନ୍ତି । ମୁଁ କ'ଣ ତା ଗୋଡ଼ ତଳକୁ ଗୁନ୍ଦିଯାଉଛୁ ?

ଫେର୍ କଲେ ମୁଢ଼ି ପାଟିରେ ପକେଇ ରୁକ୍ମଣୀ ହାତରେ ଢ଼ପର ପିଣ୍ଡାକୁ

ଗଲେ । କେତେ ଧୂଳି ସୁଧାଙ୍କ ଗୋଡ଼ରେ ସବୁ ଆସୁଛି ? ଏଇଲେ ଓଳେଇଥିବ ମଣିଷ ତ ଅଭ ଟିକକୁ ଅଳିଆ ।

ଇସ୍, ଏ ପିଣ୍ଡା ଦାଢ଼ଟା ତାଙ୍କୁ କ'ଣ କରୁଛି କେଜାଣି ? ହଜାରେ ଥର ମାଟି ଦେଇ ତାକୁ ଲିପିବଣି, ଦୁଇ ଦନ ବୋଲି କେବେହେଲେ ରହୁନ୍ତା—କେମିତି ତ ଭୁଷୁଡ଼େଇ ଦଉଛନ୍ତି । କ'ଣ କରିବ ଏ ମାଙ୍କଡ଼ପଙ୍ଖିଆଙ୍କୁ ।···ଦେଖିଲି, କେଡ଼େ ଚକଚକ କରି ଏ ଖଣ୍ଡିକଯାକ ଘଷିଛନ୍ତି । ମୁଁ ଦେଖିଥାନ୍ତିରେ, ହାତକୁ ତମର ଟାଙ୍ଗି ନ ଦେଇଥାନ୍ତି ଯଦି ।

"ଭୋଟ ହେବ, ବୋଉ, ଭୋଟ ହେବ । ଏଇ ଦେଖ କେତେ ରଙ୍ଗ କାଗଜ ସେ ମୋଟର ପାଖରେ ସବୁ ବାଣ୍ଟୁଛନ୍ତି ।"

ଧାଇଁ ଧାଇଁ ହାଲିଆରେ ବଟ କଥା କହିପାରୁନାହିଁ ।

"ହଇରେ, ଏ ପିଣ୍ଡା ଦାଢ଼ କିଏ ଘଷିଛି ?"

କେଜାଣି···ସେ ମଟର ଯାହା ହେଇଚ ଲେ ବୋଉ, ସେଥିରେ ଏମିତି ଏତେ ଏତେ ଉଞ୍ଚ, ଏଠି ଗୋଟେ ସେଠି ଗୋଟେ, ସେଠି ଗୋଟେ ସେଠି ଗୋଟେ ଏମିତି ଗୁଳିଟା ଚକ ହେଲା ନା ? ଉପରକୁ ଆଲୁଅ ଗୋଟେ ଚକ ଲଗିଛି । କେତେ ଲୋକ ସେଇଠି ଯାଇ ଜମାହୋଇଛନ୍ତି । ଗୋଟିଏ କଳ ଭିତରୁ ଗୀତ ଗାଉଛି । ରୁ ଏ କାଗଜ ରଖ୍, ମୁଁ ଯାଉଛି ଆଲୁଅ ଆଣିବ ।"

"ହଇରେ, ହଇରେ, ଜମ୍ଭୀକୁ ଦେଖିଛୁ ? ସେ ତୋ ପାଖକୁ ଯାଇଚି ।"

"ମୁଁ ଦେଖିନାହିଁ ।"

ଦାଣ୍ଡଯାରୁ ଡାଆଁ ମାରି ଗୁଲିଗଲା ବଟ ।

କାଗଜଯାକ ଲେଉଟେଇ ପାଲଟେଇ ଦେଖିଲେ ଟୁକୁବୋଉ । ଖାଇବା ହାତରେ ଗୁଞ୍ଜୁଣୀ ଟେକ ହୋଇ ଧରାହୋଇଛି ।

"ହେଇ ତ ସେଇ ବଳଦ । ସେ ବର୍ଷ ଯୋଉ କଥା, ଏ ବର୍ଷ ମଧ୍ୟ ସେଇଆ ।"

ସେ କାଗଜଯାକ ସବୁ ଚନ୍ଦ୍ରିତ ଓରି ଉପରେ ଖୋସିଦେଲେ । କୁଆଡ଼େ ଗଲା ସେ ଜମ୍ଭୀ ଟୋକା—ଆସି ନଅ ଦଶ ବର୍ଷର ପୁଅ ହେଲା । ଟିକିଏ ବୋଲି ମୁନ୍ଦିଫିଟା ହେଲା ନାହିଁ । ଟୁକୁଆଟା ମଧ୍ୟ ଶୋଇପଡ଼ିଲା, ନ ହେଲେ ସବୁ ଦେଖିବାକୁ କେଡ଼େ ଖୁସି ହେଇଥାନ୍ତା । ତଳ ପିଣ୍ଡାକୁ ଗୁଲିଗଲେ ଟୁକୁମା । ଚୁଲିରେ ଭାତହାଣ୍ଡି ବସିଥାଏ, ତାକୁ ଯାଇ ଦେଖିଆସିବା କଥା ।

ଟୁକୁଆ ଉଠିଲା ଏବଂ ଉଠୁ ଉଠୁ ବୋଉକୁ ଡାକ ପକେଇଲା ।

"ଉଠିଲୁ କିରେ ପୁଅ ? ଆସୁଚ, ଆସୁଚ ରଇଥା । ତୋ ନୂଆ ଟୋପିରେ ମୁଢ଼ି ଦେବି ଯେ ବସି ଖାଇବୁ ରଇଥା ।"

ଟୁକୁମା ପୁଅକୁ ଗଣ୍ଡେ ମୁଢ଼ି ଦେଇ କର୍ମଷ୍ଠାଳୀ ହୋଇ ଘରର ସବୁ ଅଡ଼ୁଆଯାକ କରିପକେଇଲେ । ଏକା ଲୟରେ କାମ କଲେ ତାଙ୍କ ପରି ଚଞ୍ଚଳ ହାତ କାହାର ନାହିଁ ।

ଘଡ଼ିକେ ଇଚ୍ଛାକଲେ ଚୂଲିମୁଣ୍ଡେ ବସି ପାଞ୍ଚ ଚଉଆଣ ଭାତ ରାନ୍ଧି ଥୋଇଦେବେ । ଏତିକି ଯେ ବୟସ୍କା ଟିକିଏ ବାଙ୍କେଇ । ଆଠଟା ପିଲା ଜନ୍ମକରି ଦାଣ୍ଡରେ ଆଉ କଡ଼ାକରି ବୋଲି ବଳା ନାହିଁ । ଦେଖିବାକୁ ଆକାରଟା କିଛି ପାତଳିଆ ନୁହେ ବେଶ୍ ଚକଚକ ହୋଇ ମଣିଷ, କିନ୍ତୁ ବସିଲାଠାରୁ ଉଠିଲାବେଳକୁ ଏବେକୁ ଆଣ୍ଠୁ ଧରି ଉଠିବାକୁ ପଡ଼ୁଛି । ଟିକିଏ ବେଶି ହାଲ୍‌ଚାଲ ହୋଇ କାମ କରିଦେଲେ ଅଣ୍ଟା ଭାଙ୍ଗହୋଇଯାଉଛି । ହେଲେ ଘର ଗୋଟାକର ଆଢ଼ତ ନାକେ ସବୁ ବୁଲେଇନଅନ୍ତି । ବୋହୂଟା ଗଲାଦିନୁ ସବୁ ତାଙ୍କ ଉପରେ ପଡ଼ୁଛି । ଘରଦ୍ୱାର ଲିପାପୋଛାଠୁ ଥୁଆରଖା, ରନ୍ଧାବଢ଼ା, ପାଣି କଢ଼ା, ଏଡ଼େ ବଡ଼ ଅଗଣା, ପିଣ୍ଡା ଧରି ଓଳେଇ ଆସିଲେ ପିଠି ଅଣ୍ଟା ଭାଙ୍ଗ ହୋଇଯିବ— ସବୁ ସେ କରୁଛନ୍ତି ।

ସ୍ୱାଙ୍କ ଘରକୁ ଆସିଲାବେଳେ ସାନଟା ଶଗଡ଼ରେ ଜିନିଷପତ୍ର ସବୁ ଆସିଥିଲା । ତାଙ୍କ ବାପଘର ଥିଲାଘର । ଘର ଅଂଶରେ ସେ ଗୋଟିଏ ବୋଲି ଝିଅ । ଖୁଆଡ଼ ଖୁଆଡ଼ ପଥର ଘର, ଡ଼ାକ ପାଇବ ନାହିଁ । ଦାଦେଇଙ୍କ ବହୂଆରେ କେତେପ୍ରକାର ମସଲା । ପିଉଳ ମୁହଆମାନ ଲାଗି ଚକ ଝକଝକ ହୋଇ ଏଡ଼େ ବହୂଆ, ତାଲୁ ଡାଲୁ ଠେକ ହୁଏ ନାହିଁ । ଘରଭାଇଯାକ କଚେରି ଘରେ ବସି କଥାବାର୍ତ୍ତା ହଉଥିବେ, ପାନ ଖାଉଥିବେ, ଇଆଡ଼ୁ ରନ୍ଧାଘରୁ ରୁହାକୁ ରୁହା ନୂଆ ନୂଆ ଖାଇବା ଜିନିଷ ରୁହା ହୋଇଯାଉଥିବ ।···ନାତି, ନାତୁଣୀ ସବୁ ଆଗ ଆଗ ଭାତ ଖାଇଯାଆନ୍ତି, ବୁଢ଼ୀ ମା'କୁ ଛଟେଇ ପଟେଇ ଲାଗେ । ମହାଦେବଙ୍କଠି ଲକ୍ଷେ ଚମ୍ପା ଚଢ଼େଇ ସେ ଘର ପୁଅ ପାଇଛି କେତେ ଦୁଃଖର ପୁଅ, ବେଳ ଆସି ଗଡ଼ିଗଲାଣି, ଆଉରି ଖାଇ ନାହାନ୍ତି ! ବୁଢ଼ୀ ତଳଘରକୁ ଉପର ଘର, ଉପର ଘରୁ ତଳ ଘର ଏମିତି ବାଡ଼ିଟିଏ ଧରି ଯାଉଥିବ । କଚେରି ଘରକୁ ପଶିପାରେ ନାହିଁ, ନାତୁଣୀକୁ ପଠାଏ । ଏଇ ଟୁକୁମା ସେତେବେଳର କୁନି । ଏ ମା' କୁନି ଲୋ, ଯିବୁଟି ମା' ଡାକିଦବୁ, ନନା, ଦାଦେଇ, କକେଇ ଭାତ ଖାଇ ନାହାନ୍ତି ସବୁ । ସବୁ ତଳ ତଳିଆ, ଗୋଡ଼ ହୋଇଗଲାଣି, ଭାତ ଗଣ୍ଡାକ ଶୁଖି ଗୁଡ଼ଲା ହେଇଗଲାଣି । ଏତେ କଥା ସ୍ୱାଙ୍କୁ ଆଉ ଶୁଣିବାକୁ ଦେଲ ନ ଥାଏ ।

କେତେବେଳେ ଦୁଧସର ପୂଳାଏ, କୋରା ମେଞ୍ଚାଏ, ଖଣ୍ଡରେ ପାଗହୋଇଥିବା ଝିଅକୁ କାଳେ ଖାଇ ଖାଇ ସେ ଯାଆନ୍ତି କଚେରି ଘରକୁ । ଦାଦେଇ କେତେ ଗେଲ ଗଉରବ କରି ଜଙ୍ଘରେ ବସାନ୍ତି । ସେଇଠି ପାନ, ବାସନା ଖଇର ଦେଇ ଲେଡ଼ିରେ ଚକଟି ସ୍ୱାଙ୍କୁ ଖୁଆନ୍ତି । କେତେ ଦିନରୁ ପାନ ସେ ଖାଇଛନ୍ତି ତା'ର ଆଉ ଠିକଣା ନାହିଁ । ଥରକୁ ଥର ଖାଇବା ଜିନିଷ ଆସି ଆସି କଂସା, ବେଲା, ବଡ଼ କୁଞ୍ଚ ଥାଳ, ଚନ୍ଦ ଗୁଣ୍ଡା ଛାଲ ସବୁ ଏଠି ସେଠି ପଡ଼ିଥାଏ । ରତନପୁରର କେତେ ଲୋକ ଆସି ଦୁ'ପଇସା ଫୁସୁଲେଇ ନବାକୁ ବସିଥାନ୍ତି । ସାକୁଲେଇ ସାକୁଲେଇ କଥାମାନ କହୁଥାନ୍ତି । ବୁଢ଼ୀମା' କଥା ତାଙ୍କର ଆଉ ମନେପଡ଼େ ନାହିଁ । ସେଇଠି ସେ ଦାଦେଇ କୋଳରେ ପାନ ଗୁନ୍ଦେଇ ଓଠ ରଙ୍ଗକରି ବସିଯାଆନ୍ତି । ଦାଦେଇଙ୍କ ଦେହଟା କେମିତି ଚନ୍ଦନ ଚନ୍ଦନ ବାସେ । ମୁଣ୍ଡରେ ତାଙ୍କର ଏଡ଼େ ଜୁଡ଼ା, କାନରେ ଚମ୍ପାଫୁଲ ଖୋସା ହୋଇଥାଏ । ଏମିତି ଟିକିଏ ଯାଇଥିବ କି

ନାହିଁ କଉଣ ଘର ଭିତର କବାଟରେ ଶବ୍ଦ ହବ—ଠୁକ୍ ଠୁକ୍ ଠୁକ୍ । କିଏ ? ନା, ବୁଢ଼ୀମା । କବାଟକୁ ଅଳ୍ପ ମେଲା କରି ବୁଢ଼ୀ ପାଟି ଶୁଣେଇ କହେ—ହଇରେ, ନବଳ ଆସି ଏତକ ହେଲଣି, ଉଠୁଚ ନା ନାହିଁ ସେଠୁ ! ଘରେ ମାଇକିନିଆଗୁଡ଼ାକ ଛାଟ ପଡ଼ିଲା ପରି ପଡ଼ିଗଲେଣି । ଗୋଟେ ସେଥିରୁ ପୋଖତ ମାଇକିନା । ତମକୁ ଟିକିଏ ବିଗୁର ନାହିଁ ?···ସମସ୍ତେ ଚାରିଭାଇଯାକ ଧଡ଼ ପଡ଼ ହୋଇ ଉଠନ୍ତି । ଦଦେଇ କହନ୍ତି—କାହାକୁ କହୁ ପଠେଇ ଦେଲୁନି ବୋଉ, ତୁ କାହିଁ ଏତେ ବାଟ ଆସିଲୁ ? ବୁଢ଼ୀକୁ ହାତରେ ଧରି ଚାରି ଭାଇ ଘରେ ପଶନ୍ତି ।—ପଠେଇଲେ କ'ଣ କିଏ ମୋ କଥା ଶୁଣୁଛ ? ଏଇ ତମ ଜେମା ଗଲା ଡାକିବ ବୋଲି । ଯାଇ ପାନ ଖାଇ ଗେଲେଇ ହେଲା ।··ଦଦେଇ ଝିଅ ମୁଣ୍ଡରେ ହାତ ବୁଲେଇ ବୋଉକୁ ମିଛ କହନ୍ତି । ସେ ଡାକିଲା ଯେ ବୋଉ, ଆମେ କଥା ଲହସରେ ଆଜି ତାକୁ କାନେଇ ନାହୁଁ । ଝିଅଟା ତ ଆମର ସୁନାଟେ ।

ଏକଥା ଶୁଣି ତାଙ୍କ ଲାଜମାଡ଼େ ।

ନନା ତାଙ୍କର କଳୁ ସେତେ ଆଦର କରନ୍ତି ନାହିଁ । ସେ ଏମିତ ଅକାଳେ ସକାଳେ ଟିକିଏ ଗେଲକରିଦିଅନ୍ତି ।

ଚାରି ଭାଇଯାକ ମା ଝିଅଙ୍କୁ ନେଇଯାଆନ୍ତି ସେପଘର ପିଣ୍ଡାକୁ । ପଥର ପିଣ୍ଡା ଧୁଆ ହୋଇ କଳା ମଚମଚ ଦିଶୁଥିବ । ଚାରିଟା ପଣସ କାଠର ପିଢ଼ା । ଏଡ଼େ ଏଡ଼େ ଥାଳିରେ ଭାତ ବଢ଼ା ହୋଇଥିବ । ଜକେଇଙ୍କ ଥାଳି ପାଖରେ ବଡ଼ ଗୋଟେ ମାଛମୁଣ୍ଡ । ଆଉ କକେଇଙ୍କ ପାଖରେ ରୁପା ଗିନାରେ ଜିରା, ହେଙ୍ଗୁ, ବଡ଼ ବଡ଼ ଲଙ୍କା ପୋଷେ ଗୁଆ ଘିଅରେ ଭଜା ହୋଇ ଥୁଆହୋଇଥିବ । ନନା ଭାତଖାଇସାରି ଖାଇବେ ଗୋଟେ ଏଣ୍ଡୁର ଅଧାରରୁ ଆସି ଏଡ଼ିକ ଚଷା ଏଣ୍ଡୁରିଟାଏ ଥୁଆହୋଇଥିବ, ସେଥିରୁ ବାମ୍ଫ ବାହାରୁଥିବ । ବାକି ଦଦେଇ ପାଖରେ ଗୋଟେ କଂସାରେ କଂସେ ଆଉଟା କ୍ଷୀର । ଅଲଗାପଳ ପରି ଏଡ଼େ ମୋଟା ସର ସେଥିରେ ପଡ଼ିଥିବ । କନା ବୁଜୁଲାରେ ଖ୍ରଣ୍ଡି ଗୁଣ୍ଡ ପଡ଼ି ସେ ସିଝିଥିବ । ଉପରେ ଅଳ୍ପ ଗୋଲମରିଚ ଗୁଣ୍ଡ ଛିଞ୍ଚାହୋଇଥିବ । ଦଦେଇ ଖାଇବସି ଆଗ ସେଥିରେ ଆଙ୍ଗୁଠିଟା ବୁଡ଼େଇବେ--ବେଶି ତାତ ନ ଥିବ କି କାକର ହୋଇ ନ ଥିବ । ମରି ମରି ସେଥିରେ ଆଙ୍ଗୁଠି ବୁଲୁ ନ ଥିବ । ତେବେ ଯାଇଁ ସବୁ ଠିକ୍ ।···ବାଁ ପାଖେ ଝିଅ ବସିବ । ଆଉ ଦୁଇ ଭାଇ ବସିଥିବେ ଟିକିଏ ଗୁଡ଼ି । ନନା ବସିଥିବେ ଖାଇବ ପଟେ । ବୁଢ଼ୀମା ପଙ୍ଖା ଖଣ୍ଡେ ଧରି ବସିବ ମଝିରେ । ଖାଇବା ଠେଇଁ କେତେ କଥା ପଡ଼ିବ, କେତେ ହସ ହବ । —ଗୁଡ଼ି, ଏବକୁ ଏବକୁ କେତେ ବଦଳିଗଲାଣି । ସେଇମାନେ ପୁଣି ଏବେ ଏଡ଼େ ସ୍ୱାନମାନ ହେଇ ପରଦ୍ୱାରେ ଲାଠି ଭାଙ୍ଗି ଠିଆହେଲେ । ଚାରି ଭାଇଙ୍କ ଅନ୍ତେ ପୁନା ଘର ଚୂନାହୋଇଗଲା । ରଘୁ ପଛକୁ ସେ କାଳମୁହାଁ ଯୋଡ଼ାକ ହେଇଥାନ୍ତି । ସେତକ ଦିନ ପର୍ଯ୍ୟନ୍ତ ଝିଅ ପାନ ଖାଇବ ବୋଲି ପ୍ରତି ମାସରେ ପାଞ୍ଚ ଟଙ୍କା ଧରି ଲୋକ ଆସେ । ପ୍ରତି ଦି' ମାସକୁ ଥରେ ଏଇ କାଗଜ ଶୁଣି କାଚ ପିନ୍ଧେଇ ପଇସା ନିଏ ନାହିଁ--ରତନପୁର ଗଲେ ସେଇଠୁ ନେଇଯାଏ । ଦଦେଇ ମଲେ, ତାଙ୍କ ପଛେ

ପଛେ ବର୍ଷ ଛନଟା ଭିତରେ ଛନ ଖାଇ ଗ୍ଲଲଗଲେ । ଏତେ ବଡ଼ ଘର କରିଥିଲେ, ସବୁ ଘରଖାର ହୋଇଗଲା ।

ଆଜ କାହିଁକି କେଜାଣି, ଏକୁଟିଆ ବସିଛନ୍ତି ବୋଲି ନା କ'ଣ—ଖାଲି ଭୁଲିହୋଇ ଭୁଲିହୋଇ ଆଗ କଥାଗୁଡ଼ାକ ମନେପଡ଼ୁଛି । ସକାଳେ ଯାହା ଗାଧୋଇ ଖାଇ ବସେଇଥିଲେ, ପାଇଟିପଣ କରି ଆଜିଯାଏ ଧୂଆଧୋଇ ହୋଇନାହାନ୍ତି । ହାତ ପାଦରେ ଧୂଳି ଲାଗିରହିଛି ।

କେମିତିଆ ଗୋଟେ କୋହ ଉଠିଲା । ଯେତେ ମନ ଦମ୍ଭ କରିବେ ବୋଲି ଭାବନ୍ତି ସେତିକି ପେଟ ଦ'ଭାଗ ହୋଇଯାଉଥାଏ । ଆଖିରୁ ଲୁହ ଧାର ଧାର ହୋଇ ବୋହି-ଯାଉଥାଏ । ସେ ତାକୁ ଲୁଗାକାନରେ ପୋଛୁଥାନ୍ତି, ଆସିଲା ଭାଇଗ ।

"ବୋଉ ! ବୋଉ ! କୁ'ଠି ଅଛୁ କଲେ ? ଟିକୁଆ, ବୋଉ କାହିଁକିରେ ?"

ନିଜକୁ ଖୁବ୍ ସମ୍ଭାଳି ସେ କହିଲେ, "ଏଇଠି ବସିଛୁ, କ'ଣ ବଲୁଛୁ ?" ଓଦା ଓଦା କଥା, କାନ୍ଦୁରା କାନ୍ଦୁରା ସ୍ୱର ଶୁଣି ଭାଇଗ ଯାହା ଆସିଥିଲା ଗଡ଼ ଜୟ କଲା ପରି କ'ଣ ଗୁଡ଼େ କୁହାଟି କହି ପକେଇବ ବୋଲି, ସବୁ ଅଣ୍ଡାପଡ଼ିଗଲା ।

ଧଡ଼ପଡ଼ ହୋଇ ତଳ ପିଣ୍ଡାକୁ ଯାଇ ଦେଖିଲା ବୋଉର ଆଖିପତା ଓଦା ।

"ତୁ କାନ୍ଦୁଛୁ ବୋଉ !"

"ନାହିଁ ରେ ପୁଅ, ଏଇ ଆଗ କଥା ସବୁ ମନେପଡ଼ିଲା ଯେ ପେଟ ଭିତରଟା ଗୁଗୁଣ୍ଡି ଦେଲା । ତୁ ଏତେବେଳେ ହେଲା କୁ'ଠି ଥିଲୁ ?"

କଥାଟା ଯେତେ ସ୍ୱାଭାବିକ ନ ହେଲେ ବି ଯେତେ କିଛି ଗୁରୁତର ନୁହେଁ ବୋଲି ଭାବି ଭାଇଗ ଆରମ୍ଭ କରିଦେଲା – "ଏଥର ଭୋଟ ଫେର୍ ହେବ, ବୁଝିଲୁ ନା ବୋଉ ! ଦ' ଛନ ଦଳିଆ ଲୋକଙ୍କର ଏଇଠ ଲଢ଼େଇ ହେବ । ସକାଳୁ ସକାଳୁ ତ ଯେତେ ମଟର ଆସି ଠୁଳ ହୋଇଥିଲା । ଆହୁ ଘଡ଼ିକୁ ଆସିଲା ଆଉ ଦ'ଟା । ବାଦପାଲି ପରି ଯାହା ସେଇଠି ଲାଗିଗଲା ଲେ ବୋଉ; ଆଉ କ'ଣ ତତେ କହିବି ? ଆଗ ଗାଡ଼ି ଯୋଡ଼ାକ ତ ଫର୍ଫର୍‌ଡ଼ିନ ପଞ୍ଚଅରେ କାଗଜ ବାନ୍ଧି ଥିଲେ, ଆଉ ଦ'ଟା ଆସି, ଏଇଠ୍ ହବ ସେ ପିଟେଇ ନାମ ଘର ପର୍ଯ୍ୟନ୍ତ, ଗ୍ଲଳି ହାତ ପାଖାପାଖି, ସେତିକି ଦୂରରେ ରହିଲେ । ନୂଆ ଗାଡ଼ି ଭିତରୁ ଗୋଟେ ପାଟିକଳ କଲ ଭିତରେ ମୁହଁ ଭର୍ତ୍ତିକରି । ଗାଁଟାଯାକ ଦୁଲୁଦୁଲୁ ପଡ଼ି କମ୍ପିଲା । ସବୁ ଧାଇଁଲେ ସେଇଠିକି । ସେଇଠୁ ଆଗ ଗାଡ଼ିରେ ମଧ୍ୟ ସେମିତି ପାଟିହେଲା ।"

"ହିଁ ଗୋଟେ ଧ୍ୱାପା କ'ଣ ଏବେ ଶୁଭୁଥିଲା । ସେଇଟା ହୋଇଥିବ ।"

"ସେଇଟା, ସେଇଟା ସେଇଠୁ ଭାରି ମଜାହେଲା । ବାଉଁଶରେ ଲଗେଇ ପତାକା-ମାନ ସବୁ ଟେକିଲେ । ଗୀତ ଗାଇଲେ । ଶେଷକୁ ମୁହିଁରେ ରଙ୍ଗ ବୋଳି ଗୋଟେ ସେଥିରୁ ନାଚିଲା । ବାଦ ଲାଗିଲା, କାହା ପାଖରେ ବେଶି ଲୋକ ଯାଇ ଠୁଳ ହେବେ । ଏତିକିବେଳେ କ'ଣ ହେଲା ନା ପଛେ ଯେଉଁ ଗାଡ଼ି ଆସିଥିଲା, ତା ଉପରେ ଜଣେ ଚଢ଼ିଗଲା । ତାର ଦୁଇ ପାଖରେ ଦୁଇଟା ବଡ଼ ବଡ଼ ଥଳି ଥୁଆ ହେଲା । ସେଇଥିରୁ ମୁଠା ମୁଠା କରି ଚନାର କମଳା-କୁଳପବୁ ସେ ବାଣ୍ଟିଲା । ଘୋ ଘୋ ହୋଇ ପିଲା ଆଉ ତାଙ୍କ ଦେଖା ଦେଖି ବଡ଼ମଣିଷ ମଧ୍ୟ

ଯାଇ ସେଇଠି ପୋତିଗଲେ । ହେଇ ଦେଖୁନୁ, ମୁଁ ସେଥିରୁ ଗଣ୍ଡେ ନେଇଆସିଛି । ଏଥିରୁ ଗୋଟେ ପାଟିରେ ପକା, ଦେଖିବୁ କେମିତି ଲାଗୁଛି । ଅଦ୍ଭୁତ କମଳା ବାସ୍ନା ।"

"ତୁ ଖା, ହେଇ ଟୁକୁଆକୁ ଯୋଡ଼େ ଦେ ।"

"ଆଉ ଅଛି, ମୁଁ ତାକୁ ଦଉଛି, ତୁ ଗୋଟେ ଆଗ ଖା'ନା ।"

ପାଟିପାଖରେ ନେଇ ଧରିବାରୁ ସେଥିରୁ ଗୋଟେ ଧରି ସେ ଉଠିଲେ, ଗୋଡ଼ହାତ ଧୁଆଧୋଇ କରି ଆସିବେ ।

କମଳାକୁଳ ଗୁପି ଗୁପି ଭାଇଙ୍କ କହୁଥାଏ, "ଖାଇବା ଆଶାରେ ଯେମିତି ସମୟରେ ସେ ମଟର ଗୁରୁପଟେ ପୋତିଗଲେ, ଆଉ ଯୋଡ଼ାଙ୍କ ପେଁ ପ୍. ଯେଇଠ୍ ପଳେଇଲେ । ଆଜି ଯାଜକୁ ଫେର୍ ଆସିଲେ ମଜା ହେବ ।"

'ଓଁ, ନାରାୟଣ' କହି ଦାଦେ ଘରକୁ ପଶିଲେ । ଓସାରିଆ ପିତଳ ଥାଳିଟିରେ ଖଣ୍ଡେ କଦଳୀପତ୍ର ଯୋଡ଼ିଆ ହୋଇଛି—ଦେଉଳ ଭୋଗ । ତାକୁ ପିଣ୍ଡାର ଗୋଟେ କଣକୁ ରଖିଦେଇ କହିଲେ—"ପାଣି ଟିକେ ଆଣିବୁଟି ଭାଇରେ, ଗୋଡ଼ ଧୋଇବା ।"

ଟିକେ ପାଣି ଆଣି ଭାଇଙ୍କ ଉପର ପିଣ୍ଡାରେ ଥୋଇଲା । ଦାଦେ ଗୋଡ଼, ହାତ, ମୁହଁ ଧୋଇ ଥୟ ହୋଇ ବସିଲେ । ଟୁକୁଆ କମଳ କୁଳଟାଏ ପାଟିରେ ପୁରାଇ ଆଉ ଦୁ'ଟା ଓଦା ଅଠାଳିଆ କୁଳ ମୁଠା ଭିତରେ ଭିଡ଼ିରେ ଧରି ନନା ଆଡ଼େ ଗୁହିଁବସିଥାଏ ।

"ହାତରେ କ'ଣ ଧରିଛୁ ଦେଖି !"

"ଗୁରୁଟା କୁଳରୁ କୋଉଟା କେମିତି ଲାଗୁଛି ଭାବ ସବୁଯାକ ଗୁଖି ଗୁଖି ରଖିଛି ।···ମୁଠା ଫିଟେଇ ଦେଖେଇଦେଲା । ଟୁକୁମା' ସିଆଡ଼୍ ଗଣ୍ଡେ ହାତରେ ଧରି ଆସି ପହଞ୍ଚିଲେ ।

"ଯାକୁ ପାଟିରେ ପକାଅ । ଭୋଟ ଦିଆଠେଇ ପୁଣି ବାଣ୍ଟୁଥିଲେ, ଭାଇଙ୍କ ଗଣ୍ଡେ ଆଣିଛି ।"

ଭାଇଙ୍କୁ ବଡ଼ ଲାଜ । ବୋଉ ହାତରେ ସେଗୁଡ଼ିକ ପଠେଇ ଚଳପିଣ୍ଡା ଖୁଣ୍ଟ ପଛଆଡ଼୍ ଲୁଚ ଲୁଚ ଅନାଉଁଥାଏ, ନନା ଯେ ଆଣିଲା ଜିନିଷ ଖାଇବେ ନା ନାହିଁ !

"ନା, କ'ଣ ବୋଇଲେ କ'ଣ ପକେଇ ତାକୁ ତିଆରିଥିବେ—ଏ ମଣିଷ ତାକୁ ଖାଇ କାହିଁକି ପାଟି ଛିଟିଆ କରିବ ?"

"ହଅ, ମୁଁ ଏବେ ଖାଇଲି ନାହିଁ ! ଏସବୁ ତ ତେଜରେ ତିଆରିଥିବେ, ସେଥିରେ ଚାପ୍ନା କ'ଣ ଟିକିଏ ପକେଇ ଦେଇଛନ୍ତି, ଏମିତିଆ ବାସୁଛି—ପାଟିରୁ ପିତ୍ତ ଅରୁଚା ଗୁଡ଼ିଯିବ ହେ ! ହଅ ଗୋଟେ ପକାଅ ।"

"ନିଜେ ବଟୋଳ ହୋଇ ସମସ୍ତଙ୍କୁ ବଟଲେଇବାକୁ ମନ । ମୁଁ ଖାଇବି ନାହିଁ, ତାକୁ ରଖିଦିଅ । ମୁଁ ଆଗ ଭାତ ଖାଇସାରେ ।"

"ନେରେ ପୁଅ, ଏ ରେଣ୍ଡା ଲୋକଙ୍କୁ କିଏ ବୁଝେଇବ ? ସୁଆଗ ସରାଗରେ ଏ ଘରେ

ଗୋଟେ କ'ଣ ଖାଇ ହେଲା ନା ପିଇ ହେଲା ! ସବୁବେଳେ ତ ସେମିତ—ଖାଉଁ ବଇଲେ ଗାଉଁ ।"

ଭାଗତ ଆସି ଟିକଏ ଅପ୍ରତିଭ ହୋଇ ବୋଉ ହାତରୁ ସେଗୁଡ଼ାକ ନେଇଗଲା । ତା' ମନ ଟିକଏ ଉଣା ହେଲା ସିନା, ନନା ପ୍ରତି ତା'ର ଅଜାଣତରେ ଶ୍ରଦ୍ଧା ବଢ଼ିଗଲା । ନନା ତା'ର ଗୋଟିଏ ଅମାନିଆଁ ଦଅଁ । ତାଙ୍କ ପାଖରେ ଫୁସୁଲୁଫସୁଲ, ଠକାଠକି କିଛି ଚାଲିବ ନାହିଁ ।

ଅଲଗୁର୍ଣ୍ଣୀରୁ ଧୂଆ ଗାମୁଛାଖଣ୍ଡିକ ପାଲଟି ଦାସେ ତଳ ପିଣ୍ଡାରେ ଯାଇ ବସିଲେ ।

"ଜାସ୍ଥୀ, ବଡ କୁଆଡ଼େ ଗଲେ ବାଘୁନାହାକୁ ।· ସେ ସେଇ ଭୋଟଦିଆ ପାଖକୁ ତ ଯାଇଥିବେ; ସେଠି ସେ କଲଗୀତ ଶୁଣୁଥିବେ ।···ଓଃ, ଏ ଭୋଟଦିଆ ଦିନ ଆସିଲା ନାହିଁ କି ପଞ୍ଚାଙ୍କୁ ମିଳିଗଲା କଙ୍କଡ଼ାକୁ ଗୋଲପାଣି । ମୁଁ ସେଇ ବାଟ ହେଇ ତ ଆସୁଛି । ବୃନ୍ଦା ନାହାକ ଯାଇ ସେଇଠି ଯୋଡ଼ ହେଇଗଲାଣି ।"

"ତମର କ'ଣ ଗଲା ସେଇଠି ? ଏ ବଡ଼ଭଜା ସାଙ୍ଗରେ କଞ୍ଚା ଲଙ୍କା ଖାଇବ ନା ଶୁଖିଲା ଲଙ୍କା ପୋଡ଼ି କରି ଦେବ ?" ଚୁଲିମୁଣ୍ଡରୁ ଝିକୁମା' କହିଲେ ।

"ଦିଅ ଗୋଟେ ପୋଡ଼ା ଲଙ୍କା ।···ମୋର କିଛି ଯାଉନାହିଁ ଯେ ବୃନ୍ଦା ନାହାକ କେମିତି ହିସାବୀ ଲୋକ ସେ କଥା ବୁଝିଲେ ହେବ ନା ! ଶୁଣ, ମୁଁ କହୁସାରେ ଆଗ । ମଠରରେ ଯେତିକ ଆସିଥିଲେ ସେମାନେ ଓଉଁଳେଇ ଯେଝା କାମସବୁ କରୁଛନ୍ତି । ନାହାକେ ଝାଳନାଳ ହୋଇ ଯେ ଭିତରଟାରେ ବସି ତା ଜଳାକବାଟି ବାଟେ ସବୁ ଗାଁଲୋକଙ୍କୁ ଅନେଇ ଲାଗିଛି । ତାଙ୍କ ସଙ୍ଗରେ ଅଳ୍ପ କେମିତିଆ ହସି ସବୁ ଭୋଟଦିଆ କଥା ହେଉଛି । ମତେ ଦେଖି ସେମିତିଆ ସେ ଭିତରେ ଥାଇ କହିଲା—"କ'ଣ ଦାସେ, ଫେର୍ ଆପଣଙ୍କ ପାଖକୁ ଏମାନେ ସବୁ ଆସିଲେ । ଅମୁକ ବାବୁ—କ'ଣ ଗୋଟେ ନାଁ କହିଲା, ମୋର ମନେ ନାହିଁ ପଡ଼ି—ଏଥର ଏଇଠି ଠିଆହେଉଛନ୍ତି । ମତେ ଘରକୁ ଡକି ଖୁଆଇପିଆଇ କାନେ କାନେ କହିଛନ୍ତି—ଦେଖ ନାହାକେ, ଗାଁଟାଯାକ ଯେମିତି କାହାର କିଛି ଅସୁବିଧା ନରହେ । ଯେ ଯାହା କହିବ ସବୁ ଶୁଣି ତା'ର ପ୍ରତିକାର କରିବ । ଭୋଟ ସେମାନେ ଯାହାକୁ ଦିଅନ୍ତୁ ଚିନ୍ତା ନାହିଁ; ମାତ୍ର ମୋତେ ଯଦି ତାଙ୍କ ସେବା କରିବାକୁ ସୁଯୋଗ ମିଳେ, ମୁଁ ଆଉ ସେ ଗାଁକୁ ଗାଁ କରି ରଖିବି ନାହିଁ । ନିଜେ ଦେଖିବେ ନାହିଁ କି ସେମାନେ, ଆଉ ଗୁଡ଼ାଏ କହିଲା କ'ଣ ?···ଏମିତି ଗୁଡ଼ାଏ ଗପିଲା । ଭଲ ସେ ଗୁମୁଟି ଭିତରୁ ପଦାକୁ ଆସି କଥା କହି । ନାହିଁ ମଠର ଭିତରୁ କଥା ହବାକୁ ପଡ଼ିବ । ସ୍ୱାପ, ମହାବଳଲିଆ ତ, ମାହାଲିଆ ମିଳିଛି ମଠରରେ ବସିବାକୁ । ତାକୁ ଲାଗୁଥିବ କୁଆଡ଼େ ସେ ଆଜି ବେମଯାନରେ ଚଢ଼ିଗଲା କି ? ତାକୁ ତ ଏ ମାସ ଟିକଟ୍ ଦେଇଦେଇଛି, ଆଉ କି ଡର । କହିଲା—ହଉ ନାହାକେ, ମୁଁ ଟିକଏ ଆସେ, ବେଳ ହେଲାଣି ।

'ହଉ ହଉ ଆସନ୍ତୁ ।'—ସ୍ୱାପ, ସବୁବେଳେ 'ତମେ' ଛଡ଼ା ତା ପାଟିରୁ ଆଉ କିଛି ବାହାରିବ ନାହିଁଟି । ଆଜି ହେଇଗଲା ବଡ଼ ନୂଆ ମହତିଆ, କ'ଣ ନା 'ଅଜ୍ଞେ',

'ଆପଣ'—କାର୍ଲିଙ୍କ !"

"ଗ୍ରାଇଗ କ'ଣ କହୁଥିଲା, ଦୁଇ ଘନ୍ଧ ଦଳିଆ ଲୋକ ଏଥର ଲଢ଼ିବେ ।"

"କଉଁ ଲଢ଼ିବେ କ'ଣ ? ଘୋଟ ଚପଟ ଗୋଟେ ହବ । ବୁଢ଼ା ନାହାକ ଏ ମଟରଗାଡ଼ିରୁ ସେ ମଟରଗାଡ଼ିକୁ ଧାଉଡ଼ ଲଗେଇବ । ସେମିତିଆ ସେ ବର୍ଷ ପରି ଘୋ-ଘା ହୋଇ ଗୋଟେ ଦିନ ପାଳି ଲାଗିବ । ଶେଷକୁ ନାହାକ ଭୋଟଦିଆ ସବୁ ସବୁ ତା ଘରତୋଳା କାମ ଦୁଇ ବର୍ଷ ହେଲା ପକେଇ ରଖିଛୁ, ତାକୁ ସାରିଦେବ । ଏଇଆ ତ ହେଲା ସାର୍, ଆଉ କଥା କଏ ପଚାରୁଛୁ ?"

"ଉଠ, ତମର ସେଇ ଖିଙ୍କିଣ୍ଡାଳିଆ କଥା କେତେବେଳେ ଗଲାନି । ଛମିତ ଛମିତ ବିହକ ଭୁମର ଗଲା ପରିବନ୍ଦା କରି କରି । ସିଏ ଘର କଲା କି ନ କଲା, କେମିତିଆ କଲା, ସେଥିରେ ତମର କ'ଣ ଅଛି ?"

"ଓହୋ, ତମେ ତ ଏମିତି ଆଡ଼େ ବଇଲେ ସାଡ଼େ ବୁଝିବ । ସତ କହିଦେଲେ ନିନ୍ଦା ହେଇଗଲା । ତମକୁ କିଛି ନ କହିଲେ ଭଲ ।"

ଦାସେ ସେଠୁ ଉଠିଆସି ଦାଣ୍ଡପିଣ୍ଡାରେ ବସିଲେ । ସେଇଟିକି ଭଲ ପବନ ଦେଉଥାଏ ମୁହଁକୁ ବିଞ୍ଚିଲା ପରି । ସେଇଠି ଗାମୁଛାଖଣ୍ଡ ପକାଇ ଗଡ଼ପଡ଼ିଲେ । ପିଣ୍ଡାଖଣ୍ଡିକ ପୋଡ଼ା କୁଟା ଆଉ ମାଟି ଗୋବରରେ ଲିପାପୋଛା ହୋଇ କାଚ ପରି ନିର୍ମଳ ହୋଇଥାଏ ।

ସତ ହୋ, କିଏ ସ୍ଥାପ କ'ଣ କଲେ ଆମର କିସ ଗଲା ? ବୁଢ଼ା ନାହାକ ଘର ତୋଳିଲେ କେତେ, ନ ତୋଳିଲେ କେତେ ? କାହିଁକି କାହା କଥାରେ କ'ଣ ପଦେ କହିଦେଇ ପାଞ୍ଚ ଲୋକରେ ବେଇମାନ ହେବେ । ଛାଡ଼ ! ମାଳ କହିବ ନାହିଁ ସିନା, ଜିଣା ହେଲେ କଲା ବୁଢ଼ା ନାହାକ ସେ ବର୍ଷ ! ଦୋମୁହାଁ କୋଳ ପରି ଲାଗିଗଲା ଦିନକଡ଼େ । ଭୋଟ ଯେଉଁମାନଙ୍କ ନାଁରେ ଦିଆସିବ ସେମାନେ ତ ଆସନ୍ତି ନାହିଁ, କେଜାଣି କ'ଣ ମନାହେଉନା ହେଇଥିବ । ନ ହେଲେ ଏତେ ହାତ ଗୋଡ଼ ଧରି ସ୍ୱା ତା' ହାତରେ କହିପଠାଉଛନ୍ତି, ନିଜେ ବାହାରି ଆସନ୍ତେ ନାହିଁ ? ଏଠିକି ସବୁ ଯେ ଆସନ୍ତି ସେ ପୁଣି ତାଙ୍କର ପରିଚ୍ଛଦଗଣ ! ତାଙ୍କୁ ଯେଉଁ ବର୍ଷ ଯେ ଟଙ୍କା ଦେଇ ଲଗେଇଲା, ସେ ତା' ପାଇଁ ଲଢ଼ିଯିବେ । ଅସାଧ୍ୟ ସାଧନ କରିପାରନ୍ତି ଏମାନେ । ବେତାଳ ପରି ଖେପିଯିବେ ଦେଶରୁ ଦେଶାନ୍ତର । ଶମୀ ବୃକ୍ଷରୁ ପ୍ରେତ ଓହ୍ଲାଇଲା ପରି ଯନ୍ତ୍ରରେ ଗୁଡ଼ାଏ କୁହାଟି ପୃଥିବୀ କମ୍ପାଇଦେବେ । ମନ୍ତ୍ରା ହଟଚମଟ-ବିଦ୍ୟା ତାଙ୍କୁ ଜଣା । ଏଇଲାଗେ କାନ୍ଦିବେ ତ ଆଉ ଟିକକୁ ହସିବେ, ଡେଇଁବେ, ଗାଇବେ । କାଳସୀ ଲାଗିଲା ପରି ନାନାଦି ରଙ୍ଗ କରି ଲୋକଙ୍କର ମନ ବହଲେଇଦେବେ । ସବୁ ବିଦ୍ୟାରେ ସେମାନେ ପାରଙ୍ଗମ । କୁହାଳିଆ ଯେ କାହିଁରେ କ'ଣ ! କେତେ ଆଡ଼୍ କେତେ କଥା କହି ଏ ଲୋକଙ୍କ ମୁହଁ ବନ୍ଦ କରିଦେବେ । ଏଗୁଡ଼ାକ କ'ଣ ସହଜ ଜନ୍ତୁ ! ସେ ଆସି ଏଇଠି ପହଞ୍ଚିଲାବେଳକୁ ତାଙ୍କ ସାଙ୍ଗକୁ ଫୁଟିଯିବ ବୁଢ଼ା ନାହାକ । ସରକାରୀ ହାକିମ ଆସିବେ, ଗାଁରେ ଭୋଟଘର ଠିକଣା କରାଯିବ, ଆଗରେ ଗୁମୁଣ୍ଡିଆ ବସିବ—ସବୁ ଖର

ନେବ ବୁଦ୍ଧା ନାହାକ । ହାକମ ଓଳା ୟାପ ତା'ର ହାତରେ ପଇସା ଦେଇଦେବ । ଆଉ ଥରେ ତାଙ୍କ ଟୁକ୍ ଗାଡ଼ି ଲାଗିଗଲା ନଈବାଲିରେ । ଗାଁ ଟୋକାଙ୍କ ହାତରେ ଡାଲସବୁ ହଣେଇ ନାହାକେ ବାଲି ଉପରଯାକ ପକେଇଲେ, ବଡ଼ କଷ୍ଟରେ ସେ ଜିନିଷ ତା' ଉପରେ ଗଡ଼ିଆସିଲା । ଶୁଣ୍ଣ ଶୁଣ୍ଣ କ'ଣ ନା ସେଥି ସକାଶେ ନାହାକେ କୁଆଡ଼େ ପଇସା ଆଣି ଭଲ୍ଡ଼- କରିଦେଲେ ।···ଖୋଟ ନିଆହେବ, ହାକମ ଆସିଲେ ରହିବେ କେଉଁଠି ? ବୁଦ୍ଧା ନାହାକ ଯୋଗାଡ଼ କରିଦେବ । ଖାଇବେ କ'ଣ ? ସେ କଥାକୁ ଚିନ୍ତା ନାହିଁ—ମାଛ ଯୋଗାଡ଼ କରି ଆଣି ରେଷ୍ଟେଇଶାଲ ନଜେ ପକେଇ ସବୁ ଠିକ୍ କରିଦେଲା । କେଉଁଟେ ଗାଁ ପୋଖରୀରେ ଜାଲ ପକେଇ ମାଛ ଧରିଲେ । ଯୋଡ଼ାଏ ଗଲା ନାହାକଙ୍କ ଘରକୁ, ଦାନ ଯୋଡ଼ାକ ପାଞ୍ଚ ଟଙ୍କାରେ ସାଇବମାନେ କିଣିଲେ । ବାବୁ ଡମ୍ବ ଖାଇବେ, ପଲେଇ ଘରୁ ଡମ୍ବ ମାଗିନେଲେ ନାହାକେ । ସେଠି କହିଲେ, 'ଗରିବମୁଣ୍ଡ ଆଜ୍ଞା, ଏ ଜିନିଷ ଏଠି ଆଉ କିଏ ଖାଇବାକୁ ବା ଖାଇ ପାରୁଛନ୍ତିବାକୁ ପୁଅ ଅଛୁ ? ଦେଖି-ଶୁଣି ଯାହା ସରକାରଙ୍କ ହିସାବ କହିବ ଦେବେ । ସେ କହୁଛୁ ଗୋଟି ଆଠଣା ।' ସେ ଅଫିସର ଜଣକ କେବଳ ଏ କଥାରେ କ'ଣ କହିବ କହିବ ହୋଇ ରହିଯିବାରୁ ନାହାକେ ବୁଝିଗଲେ । 'କ'ଣ ହଜୁର୍, ଛ'ଅଣା ? ହଉ ହେଲା । ମୁଁ ତାକୁ କହି ଦେଇଦେବ । ସେ କ'ଣ ସବୁଦିନ କଥା ହେଉଛ ? କେତେ ଭାଗ୍ୟ ଥିଲେ ଆପଣଙ୍କ ଦର୍ଶନ ମିଳିବା କଥା ।'···ଗୋଟେ କୁ'ଠ ଟୋକା ଯୋଗାଡ଼ କରି କଲା ସେତେଠି ଗୁ' । ତାକୁ ପରେ ଗଣ୍ଡେ ଖାଇବାକୁ ଦେଇଦେଉଥାଏ । ସାଇବ କାମ କଲାବେଳେ ମଝିରେ ଧଇଁସଇଁ ହୋଇ ପଶିଆସେ ବୁଦ୍ଧା ନାହାକ । ଅଧା ନଇଁ ପଡ଼ୁରେ, 'ହଜୁର, କ'ଣ ଗୁ' ଆଣିବି ?' ସେଦିନ ସେ ଟୋକା ଅଫିସର ଭଣା ପକ୍ଷେ ଗୁଳିଣି ଥର ସେଥିରୁ ପିଇଥିବ । ଧନ୍ୟ ବୋଲିବା ନା ତାକୁ ! ବୁଦ୍ଧା ନାହାକ ତେଲ୍ଲେଇବାକୁ, ସେ ୟାପ ଜୋକିବାକୁ । ଶେଷକୁ ସମସ୍ତଙ୍କ ଆଗରେ ଯେତେବେଳେ ବନ୍ଧାଛନ୍ଦା ହୋଇ ଉଠିବା କଥା, ବୁଦ୍ଧା ନାହାକ ଗାଁ ଲୋକଙ୍କୁ ସେଠୁ ପାର କରିଦେଇ ସାଇବ ପାଖେ ହାଜର ହୋଇଗଲା । ମାଳ ପଲେଇପୁଅ ଛକ ରହି ସବୁ ଶୁଣିଛୁ । ତା'ର ଆଉ ହବ ନାହିଁ କ ସେ ଅଲକ୍ଷଣୀ ବୁଢ଼ୀଟା । ସେ ଯାହା ଘରକୁ ଯିବ ଆଗ କବାଟ ପାଖେ ଘଡ଼ିଏ କାନେଇବ, ତେବେ ଯାଇ ଘର ଭିତରେ ପଶିବ । ଯିବାବେଳେ ମଧ୍ୟ କାନ ପାରି ରହିଯିବ ପିଣ୍ଡାରେ । ମହା କଳହୁଡ଼ୀ ସେ, ଯିବ କୁଆଡ଼େ ? ଯେସା ବାଘୁଁଆ ତେସାକୁରୁ । ଏ ଟୋକା ସେଇ ମର୍ତ୍ତିଟି ! ବୁଲିପଡ଼ି ଏପାଖେ ପଲେଇଆସି ସବୁ ଶୁଣିଦେଲା ।

'ସରକାରଙ୍କ ପଇସା, ହଜୁର ଗୁହିଁବେ ତ ମୁହାଣ ମେଲା । ଢ' ମୁଠା ବାଁ ହାତରେ ପକେଇଦେଲେ ନ'ଅଙ୍କ ଗୁଡ଼ିଯିବ ଆଜ୍ଞା, ଏ ଗରିବପଲକ ଉଧେଇ ଯାଆନ୍ତେ । ମୁଁ ମୋ ପାଇଁ କହୁନାହିଁ ଆଜ୍ଞା, ଗୁ' ଦୋକାନ କରିଥିଲା, ହଜୁରଙ୍କ ସ୍ନେହପର ସର୍କ ଆଣି ଯୋଗେଇ ଥିଲା, ଆଉ ସେ କ'ଣ ଆସି ହଜୁରଙ୍କୁ ଭୁଣ୍ଡେଇଆନ୍ତା ? ମୁଁ ତାର ହୋଇ ମାଗୁଛୁ ଆଜ୍ଞା, ଟଙ୍କା ଷାଠିଏଟା ପକେଇ ଦିଅନ୍ତୁ । ତାର ସତାବନ ଟଙ୍କା ଚଳଗୁ ଖର୍ଚ୍ଚ ହୋଇଛୁ ବୋଲି କହୁଥିଲା, ଆଉ ମୂଳ ପାଞ୍ଚ ଟଙ୍କା । ସେ ସବୁ ଗୁଡ଼ନ୍ତୁ । ମୁଁ ତାକୁ କହିବ । ହଜୁର୍

ଷାଠିଏ ଟଙ୍କା ଦେଲେ ସେ ନବ ।' ଟଙ୍କା କାଢ଼ି ଯାଇବ ବଢ଼େଇ ଦେଲା । ନାହାକେ ଭିତର ମୁଣ୍ଡାରେ ମୁରୁକେଇଛନ୍ତି । ସେ ଟୋକା ସବୁ ଦେଖିଛି । ଦେଖ କ ତ ।' ଆଉ ଦାନ ସମସ୍ତଙ୍କ କହ ! ତାଙ୍କୁ ଗାଁଯାକ ଲୋକ ମିଶି କାଉ କାଉ କରିପକେଇଲେ । ଯାହା ମୁହଁରେ ଶୁଣିବ ସେଇ କଥା । ଶେଷକୁ ଲୋକନନ୍ଦାକୁ ତିରି ଟଙ୍କା ଦଶଟା ନେଇ ଲକ୍ଷ୍ମୀ-ନାରାୟଣଙ୍କ କୋଠରେ ଦେଇଆସିଲା । ଗଣ୍ଠିକଟା ବୃନ୍ଦା ନାହାକ, ବେଳ ପଡ଼ିଲେ ଦେବସ୍ୱ, ବ୍ରହ୍ମସ୍ୱ ଗିଳିଦେବ । ଏତେ କଥା ହେଲା, ତେବେ ମୁଁକା କ'ଣ ସେ ତା ଅଭ୍ୟାସ ଛାଡ଼ୁଛି ? ପୁଣି ଏ ବର୍ଷ ଆସି ସ୍ୱା ଭିତରେ ସେ ପଶିଗଲାଣି । ଅରେ ସୁଆଦ ପାଇଛି ନା, ଆଉ କୋଉଠି ଗୁଡ଼ ସହଳେ ରହିପାରୁଛି । ପୁଣି ସେମିତିଆ ନୁହେଁ । ଘର ଘର ଆସି କାଗଜ ବାଣ୍ଟିବେ । ବୃନ୍ଦା ନାହାକ ସେଥିରେ ଥିବ ମାତ୍ର ସବା ପଛରେ, ଆସି କାନ ଭିତରେ କହିବ—ବୁଝିଲ ଦାସେ, ତମର ଆମର ଅଭିନ୍ନ ଜାଣିବ । ଆମେ ସବୁ ଗୋଟେ ବୟସର ହେ ! ତମର ଯେତେ ଚନ୍ଦା ଦେଲ ମୋର ମଧ୍ୟ ହେଲା । ଆଶ୍ଚର୍ଯ୍ୟ କଥା ହେ ! ଅବିକଳ ମଝିଟାରେ ଦୁଇଜଣଙ୍କର କେମିତି ଚନ୍ଦା ହେଲା ଦେଖିବା କଥା । ବୁଝିଲ ଦାସେ, ତୁମେ ଯାହା କହିଲ ମୋର ସବୁ ସେଇଆ ମତ । ଆମେ ଯୋଡ଼ାକ ଅବିକଳ ସବୁ ! ଛାଡ଼ ସେ କଥା, କ'ଣ ଆଗରୁ ଆମକୁ ଜଣାନାହିଁ କି ? ମାତ୍ର ମୁଁ ନ କହିଲେ କାହାକୁ ହିଁ ନାହିଁ କରିବ ନାହିଁଟି ! ମୁଁ ଶେଷକୁ ଆସି କହିଦେବି ସେ ଅମୁକ ବାକ୍ସରେ ଗଳାଅ; ଯାଇ ଗଳେଇଦେବ । ମୋତେ ଅବିଶ୍ୱାସ କରିବାର ବୟସ ତୁମର କ'ଣ ଆଉ ଅଛି କି ?··· ହେଇ ଆଉରି ଗୋଟେ କଥା—ତୁମକୁ ବୋଲି କହୁଛି. ଆଉ କାହାକୁ କହିନାହିଁ, ବୁଝିଲ । ଏମିତିକି ସେମିତି; ସେମିତିକି ଏମିତି । ପ୍ରଥମ ପ୍ରଥମ ଯେଉଁ ବଡ଼ ଲୋକଟେ ହେଉଥାଉ ପଛେ ତା ପାଲରେ ପଡ଼ିଯିବ । ସେଇଠୁ ଯାଇ ଜଣାପଡ଼ିବ ନା—କେତେ ଆକଟରେ, କେତେ ବିଶ୍ୱାସରେ କହିଗଲା, କ'ଣ କଥା ? ବୁଝି ବୁଝି କ'ଣ ନା ସମସ୍ତଙ୍କୁ ସେମିତି କହୁଚି ।···ଭୟଙ୍କର ଲୋକ ସେଗୁଡ଼ାକ । ତାଙ୍କ ତାଙ୍କ ସ୍ୱାର୍ଥ ବ୍ୟତିରେକ ଆଉ ସଂସାରରେ କିଛି ନାହିଁ । ତାଙ୍କ ଦୂରରୁ ଡରିକିଥିବା ଭଲ । ମହା ମାରଣା ଜାତି ସବୁ ସେମାନେ, ତମଠ କାମ ଥିଲା ପର୍ଯ୍ୟନ୍ତ ଗୋଳେଇ-ପୋଳେଇ ହଉଥିବେ—ସେତିକି ସରିଗଲେ ତମେ କିଏ, ସେ କିଏ ?

ଆଚ୍ଛା, ସେ ବାକ୍ସଟାରେ ଭୋଟ କାଗଜ ଖଣ୍ଡ ଗଳେଇବାକୁ ସିନା ଏତେ ଲୋକଙ୍କ ଏତେ ନବରଙ୍ଗ ଲାଗୁଛି । ହେଲେ, ସେତେ କଟକଣା କଲେ ମୁଁକା କ'ଣ ହଉଛି କି ? ଆଗରୁ ତ ଲୋକଙ୍କ ପାଇଁଲେଇ ରଖାହେଇଯାଉଛି । ଏ ଛାପା ବାକ୍ସରେ ଗଳେଇଲେ କେତେ ? ଆଉ ଛାପାବାକ୍ସରେ ଗଳେଇଲେ କେତେ ? କିଏ ସେଥିରେ ଭୋଟ ପାଉଛି, ପାଇଲେ କ'ଣ ହଉଛି—ଏ କଥା ଆଉ କିଏ ବୁଝୁଛି ? ହଁଅ, ଗାଁ ଲୋକ ଯେଉଁଟାରେ କହୁଛନ୍ତି ସେଇଟାରେ ଗଳେଇଦିଅ । ଗାଁବାଲାଙ୍କଠୁ ଭିନେ ହେଇ କ'ଣ ଚଳିହେବ ? ସବୁ ପାହିଲେ ତ ଫେର୍ ମୁହିଁ ଘୃହାଁଘୃହିଁ ହେବା । ଯାଉ, ସେ ମନ ସେ ଭୋଟ ପାଇଗଲେ ସେଇଠୁ କ'ଣ ହେଇଯାଉଛି ! ଆମର ତ ଆଉ ଖାଇବା ପିନ୍ଧିବା ଶୋଇବା

ହେଇଯାଉନ : ଦିନକୁ ଦିନ ଯାହା ମହର୍ଗ କାଳ ହେଲଣି ତ, ସ୍ୱାପ ବଞ୍ଚିବା ଏଣିକି ମହା ଦୁଷ୍କର । ବାକି ରହିଗଲା ଗୋଟେ ଝିଅ କାହାକୁ ଦେବ ? ଗୁଣ୍ଡ଼, ଯୋଉଟା ହାବୁଡ଼େ ପଡ଼ିଗଲା ତାକୁ ଦେଇଦେଲେ ଫେର୍ କେତେ ବର୍ଷ ପାଇଁ ଏ ଜଞ୍ଜାଳରୁ ପାର୍ ।

"ଝରେ, ତମେ ଯୋଡ଼ାକ ଏତେବେଳ ସେଇଠି କ'ଣ କରୁଥିଲ ?"

ହାତ ଧରାଧରି ହୋଇ ବଟ, ଜମ୍ମୀ ଆସି ପହଞ୍ଚିଲେ ।

"ସେ କଳରେ କେତେ ଗୀତ ବୋଲୁଥିଲା ଯେ ଶୁଣୁଥିଲୁ ।"

"ହଉ ଯାଅ । ସେଇଟା ଗୋଟେ କେଚେଚେମେଚେରେ ବୋବଉଥିବ—ଏ ରସିକ ଠିଆରହିଛନ୍ତି ସେଇଠି ଦୁଇ ଘଣ୍ଟା । ଯା ବୋଉକୁ କହିବୁ—ସମସ୍ତଙ୍କ ପାଇଁ ଭାତ ବାଢ଼ିଦେବ ।"

## ସବୈସନ୍ତୁ ନିରାମୟା

"ଓଁ ଅପୋହିଷ୍ଠା ମନ୍ତ୍ରୋଭ୍ୟବ ସ୍ନାନପକ୍ଷେ ବିଧାନେନ, ମହେଶ୍ୱରଣାସ୍ତୁ ଚକ୍ଷୁସେ।"...ମାତ୍ରଅନ୍ଧାର ସମସ୍ତ ହେବ। ଦାସେ ପିଣ୍ଡାରେ ବସି ସଂଧ୍ୟା କରିବାର ଉପକ୍ରମ କରୁଛନ୍ତି। ଖଇଗ ମନ୍ଦିରକୁ ବର୍ଷ ପୂଜାକୁ ଯାଇଛି। ଆଜି ବନମାଳି ଦାସଙ୍କ ସୁଖ ଲାଗୁନାହିଁ। ଘରେ ଦୁଇଟା ମଣ୍ଡ ପଡ଼ିଥିଲେ କ'ଣ ମନ ସୁଖ ଲାଗେ ?...ଏ ମାଇକିନିଆଟା କେବେ ରୋଗରେ ପଡ଼ିବ ନାହିଁ, ହେଲେ ସେ ଝିଅ୍ଟୀ ଟୋକା ପାଖରେ ଲାଗି ଲାଗି ତାକୁ ମଧ୍ୟ ସେ ଜ୍ୱରଟା ଡେଇଁଲା ପରି ଦିଶୁଛି। ଗାଁସାରା ତ କାହା ଘରେ ଜ୍ୱର ଛାଡ଼ୁ ନାହିଁ। କ'ଣ କରିବା ?...ଏପରି ନାନା ମନସ୍ତାପ କରି ମନକୁ ବୁଝାଇ ଦାସେ ବସି ସଂଧ୍ୟା ପାଠ କରୁଛନ୍ତି।

ଦାଣ୍ଡରେ ମସିଆ ଖଦଡ଼ର ଖଣ୍ଡେ ଘୋଡ଼େଇ ହୋଇ କିଏ ଜଣେ ଉଷ୍ୱାପରେ ଚାଲିଗଲା। ଦାସେ ତାକୁ ଠିକ୍ ଠଉରେଇ ପାରିଲେ ନାହିଁ।

'କିଏ ସେ ?'...ଓଃ କେଡ଼େ ଶୂନ୍‌ଶାନ୍ ହୋଇଯାଇଛି ଗାଁଟା ! ଏଡ଼େ ସକାଳ ପହରୁ ତାଟି କବାଟ ପଡ଼ିଗଲାଣି। ଗାଁରେ କୁଆ କୋଇଲିର ବି ଶବ୍ଦ ନାହିଁ।

ହଠାତ୍ ଅଲକ୍ଷଣିଆ କୁକୁରଟାଏ ଉପରକୁ ମୁହଁ ଟେକି ଅବିକଳ ଦୂରରୁ ମଣିଷ କାନ୍ଦିଲା ପରି ବୋବେଇଉଠିଲା। ଦାସଙ୍କ ମନ ବଡ଼ ଚଞ୍ଚଳ ଲାଗିଲା। ପୁଣି ଅସ୍ତୁ ଧରି ଜପ ଆରମ୍ଭ କଲେ।

—"ଓଁ ଆସନ ମନ୍ତ୍ରସ୍ୟ, ମେରୁପୃଷ୍ଠ ଋଷିଃ, ସୁତଳଂ ଛନ୍ଦଃ, ଶ୍ରୀ କୂର୍ମୋଦେବତା, ଆସନ ଶୁଦ୍ଧୌ ବିନିଯୋଗଃ।"—

ପାଗଟା ମଧ୍ୟ ବଡ଼ ଖରାପ। ଘୁଡ଼ୁକରି ଯଦି ମୁନାଏ ବର୍ଷି ଯାଆନ୍ତା, ତେବେ ସବୁ ଶାନ୍ତ ହୋଇଯାଆନ୍ତା। ବର୍ଷୁନାହିଁ କି ମେଘ ମଧ୍ୟ ଯାଉନାହିଁ। ହେଇ ସ୍ୱର୍ଗ ଟୋପା ଏଇଲାଗେ ପକେଇ ଦେଲା ତ ଆଉ ଟିକିକୁ ନାହିଁ। ପବନ ମଧ୍ୟ ପଡ଼ିଯାଇଛି। ଘର ଭିତରକୁ ପଶି ହେଉନାହିଁ। ଖାଲି ଗୁଣ୍ଡି ଉଜ୍ଜ୍ୱଳ୍ନି ଲାଗୁଛି। ବାହାରେ ଟିପି ଟିପି ବର୍ଷା ଗୁଳୁଛି। ଏଥିରେ ଓଷଧ-କସା କ'ଣ ଆଣିବ, କ'ଣ କେମିତି କରିବ ? ଅଃ, ଜାଣିମା ମଣିଷ ସ୍ୱାପ ସଂସାର କରିବ ନାହିଁ ଗଲା ! କଲେ ତ ତଳେ ନାକ ଘୁଷୁରେଇବ। ଯେତେ ଟେକ ଲୋକଟେ ହୋଇଥାଉ ପଛକେ, ସଂସାର କଲେ ଗଲା ନା ଦ' କଡ଼ାର ହୋଇ। ଯା ସ୍ୱାପ୍, ମୁଁ ସେ ବଇକୁଣ୍ଠିଆ ପାଖକୁ ଯିବ ନାହିଁ। ଧେତ୍ତେରି ସ୍ୱାପ ! ତା ଘର ଆଗରେ ଅନୁଗ୍ରହ ପାଇଲା ପରି କିଏ ଲାଠି ଖର୍ଗି ଦ' ଦନ ଠିଆହେବ ? ରୋଗ ପଡ଼ିନ କି ସେଟା ବଇକୁଣ୍ଠିଆକୁ

ଯୋଗ ପଡ଼ୁଛୁ । ତାକୁ ଦେଖିଲେ ପଇସା, କଥା କହିଲେ ପଇସା । ଆଗ ଅଣ୍ଟାରୁ କାଢ଼ି ଥୁଅ, ତା ପରେ କଥା କହ । କ'ଣ ବଡ଼ି ଦ'ଣ୍ଟା ଦବ ଯେ ସେଥିକି ଅନୁପାନ ଲକ୍ଷେ । ଯାଃ ···ମୁଁ···ଯି···ବି···ନା···ହିଁ !!

"ଓଁ ପୃଥ୍ୱି ତ୍ୱୟା ଧୃତା ଲୋକା ଦେବିତ୍ୱଂ ବିଷ୍ଣୁ ନା ଧୃତା । ତ୍ୱଂଚ ଧାରୟ ମାଂ ଦେବି ପବିତ୍ରମାସନଂ କୁରୁ ।"

ଗୁଡ଼, ଆଉ ହେଲ ନାହିଁ । ଏସବୁ ଶବ୍ଦ ମନେ ସାଧିବେ, ଯାହିଁ ଗୁଡ଼ିବେ । ଗୋଟେ, ଗୋଟାକ ପଛକୁ ଫେର୍ ଏବେ ଯୋଡ଼େ ପଡ଼ିଲେଣି—ଖାଇବେ ସବୁ ମଣିଷକୁ । ସେଥିରୁ ଗୋଟେ ସ୍ୱାପ ବଡ଼ ହେଲ ଯେ କ'ଣ ଟିକେ ଅସମୟକୁ ପଛରେ ଠିଆହେବ ବୋଲି ଆଶା କରିଥିଲ ମଣିଷ—ସେ ତା ପୁଅ ମାଇପ ଧରି ରହିଲ । ଏଗୁଡ଼ାକ ଏଣେ କଲିରିକଲିରି ହଉଛନ୍ତି । ଦେହ ଭଲ ଥିଲେ ଶାଗ ମୁଗ କରି ଚଳାଯାଉଥିଲ, ରୋଗ ତ ହେଲ ମହାକାଳ । ପଇସା କାହିଁ ଯେ ଔଷଧ କିଣିବ ? ଶେଷକୁ ସେଇଆ ହବ—ଝୁଲୁମା' ଯାହା କହୁଥିଲ—ସେଇ ପିତଲ ଗରାଟାକୁ ନେଇ ପାଣ ବୁଢ଼ା ପାଖରେ ଥୋଇଲେ ସେ ଯାହା ଦବ । ଆଉ କ'ଣ କରିବା ?

କୁକୁରଟା ଫେର୍ ସେମିତି ଭୁକଲା । ମେଘ ଖୁବ୍ ନଇଁଆସିଲା ପରି ଦେଖାଗଲା । ପାଣି ଟିପ୍ ଟିପ୍ ବରଷୁଥାଏ । ଜାକର ପବନ ଟିକଏ ବୋହିଲା । ଦାସେ ଯାହା ଆଖିବୁଜ ଢ଼ପ କରୁଥିଲେ ଆଖି ଫିଟେଇ ଚାହିଁଲେ । ବଟ ଝୁଲୁଆ ତଳ ଘରେ ଗଜର ଗଜର ହଉଥାନ୍ତି । ତଥାପି ଘରଟା କାହିଁକି ମାଡ଼ିପଡ଼ିଲା ପରି ଲାଗୁଥାଏ । ଏତିକିବେଳେ ଝଣ୍ଟେ ଲଣ୍ଠନ ଧରି କିଏ ଜଣେ ସେ କଡ଼ରୁ ଆସିବାର ଦେଖାଗଲା । ଅଧା ଧାଇଁ ଅଧା ଚାଲି ବଡ଼ ବେଗି ସେ ଆସି ଦାସଙ୍କ ଦୁଆରେ ସଳଖା ହୋଇଗଲା । ସିଧା ନଇଁଆଡ଼େ ସେ ବାଟ ଧରିଥାଏ । ତାକୁ ହଠାତ୍ ଦାସେ ଚହ୍ନି ପକେଇଲେ ।

"ଗନ୍ଧିଆ କିରେ ? ଏ ରାତିରେ କୁଆଡ଼େ ?"

"କିଏ ? ଦାସେ ଆପଣେ ! ଆଜ୍ଞା କାହିଁକି କହୁଛନ୍ତି, ପଣ୍ଡିତଙ୍କ ସ୍ତ୍ରୀଙ୍କ ଦେହ ବଡ଼ ଅସୁଖ । ଆଜି ଖବର ପାଇଲୁ ଯେ ସକାଳୁ ବୈକୁଣ୍ଠ କବିରାଜ ଆସି ଏଠି ଅଛନ୍ତି । ପାଳୁଆ ମିଶ୍ରେ ତାଙ୍କ ଶଶୁର ହୁଅନ୍ତି ନାହିଁ କି ? ସେ ପାଟପୁରରୁ ଆସିଛନ୍ତି, ଏଇଠି କଚ୍ଛଦିନ ରହିଯିବେ । ସେଇଟା ଏ ଗାଁ ପାଇଁ ଭାଗ୍ୟ ବୋଲିବାକୁ ହେବ ନା ! ତାଙ୍କୁ ଆଗରୁ କୁହାହୋଇଥିଲା, ମୁଁ ଯାଉଛୁ ଡାକିଆଣିବ ।"

"ନୀଳକଣ୍ଠ ପଣ୍ଡିତେ ଘରେ ଅଛନ୍ତି ତ ?···ହଁ, ଘରେ ନିଶ୍ଚୟ ଥିବେ । ହଉ, ମୁଁ ମଧ୍ୟ ତୁମ ଘରକୁ ଆସୁଛି । ସେଇଠୁ ଫେରିବାବାଟରେ କହିବ କବିରାଜଙ୍କୁ ଆମ ଘରେ ଟିକଏ ମୁହଁ ମାରି ଦେବେ । ପଣ୍ଡିତଙ୍କୁ କହିଲେ ସେ ଟିକଏ ତାଙ୍କୁ କହିଦେବେ । ମୁଁ କାଳେ କହନ୍ତି ସେ—ବଇଲେ···"

"ଆଜ୍ଞା ହଁ, ପଣ୍ଡିତେ କହିଲେ ଆଉ ସେ କଥା ତଳେ ପକେଇବେ ନାହିଁ । ସେ କଥା ସତ । ହଉ, ତା ହେଲେ ଅଜ୍ଞା ମୁଁ ଆସେ ।"

ଦାସେ ଚଞ୍ଚଳ ମନରେ କ'ଣ ସଂଧ୍ୟା କରିଦେଇ ଉଠିଲେ ।

"ଓଁ, ହରି-ନାରାୟଣ—ସର୍ବେ ଭବନ୍ତୁ ସୁଖିନଃ ସର୍ବେସନ୍ତୁ ନିରାମୟା,
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିଦ୍ ଦୁଃଖ ଭାକ୍ ଭବେତ୍ ।

ହଇରେ ବଡ଼, ବାପା, ଡିବିଟା ଉପର ଘରକୁ ଆଣିଛୁଟି ! ବୋଉ ଶୋଇଚ କରେ ?"

"ନାଇଁ ନନା, ଏଇ ଝୁଲୁଆ ଖାଲି ଜିଦ୍ ଧରି ଲଗେଇଛୁ ବୋଉ ପାଖେ ଶୋଇବ, ଜସ୍ମୀ ସେଇଠୁ ଉଠିଯିବ ।"

"ଓଁ, ସେ ଟୋକାଟାକୁ ରୁ ଟିକେ ସମ୍ଭାଳି ରଖିଲେ ହ'ନ୍ତା ନାହିଁ ! ସେ ଝୁଲୁଆ ଏବେ କାହିଁ ? କ'ଣ ଯାଇ ବୋଉ ପାଖରେ ଶୋଇଗଲାଣି ?

ଦାସେ ତଳଘରେ ପହଞ୍ଚିଲେ ।

କାନ୍ଥରେ ଗୋଟିଏ କଣ୍ଟା ମାରି ହୋଇ ଗୋଟିଏ ଗ୍ଲୋବ୍ ଲ୍ୟାମ୍ପ ତା ଦେହରେ ଲଗା-ହୋଇଚ । ତାରି ମିଞ୍ଜିମିଞ୍ଜିଆ ଆଲୁଅରେ ଡୋଙ୍ଗି ଡୋଙ୍ଗି ହୋଇ ଦ'ଖଣ୍ଡ ଖଟ ଯୋଡ଼ି ହୋଇ ପଡ଼ିଛୁ; କେତେ ଦିନୁ ଟଣା ହୋଇନାହିଁ । ଲେଥରି ହୋଇ କୋଥଲି ପରି ତଳକୁ ଓହଳି ରହିଛୁ । ସେଥିରେ ଖଣ୍ଡେ ଖଣ୍ଡେ ମଇଳା କନ୍ଥା । ଖଟ ତଳଯାକ ମେଞ୍ଚା ମେଞ୍ଚା ଅନ୍ଧାର ଲ୍ୟାମ୍ପ ତଳ ପର୍ଯ୍ୟନ୍ତ ମାଡ଼ିଯାଇଛୁ । ଘରଟାଯାକ କେମିତି ଗୋଟାଏ ପୁରୁଣା ମଳୁର ଗନ୍ଧ—ଘିଅ, ଶୁଣ୍ଠି, ରସୁଣର ବୋଡଥା ଗନ୍ଧ ସାଙ୍ଗକୁ ଝରୁଆ ସିଝା ଖାଲର ଗନ୍ଧ । ଦାସଙ୍କ ମନ ଆହୁରି ସାଙ୍କୁଡ଼ିଗଲା । ଘର ଭିତରକୁ ପଶିଯାଉଯାଉ ଘାଉକନା ତାଙ୍କ ନିଜ ଗ୍ରୁଇଟାକୁ କାନ୍ଥରେ ଦେଖି ସେ ଥମିଗଲେ । ବୁକୁ ଭିତରେ ଛପ୍ କରି କିଛୁ ଗୋଟାଏ ଅଟକିଗଲା । ଏତିକବେଳେ ଛପିଥିଲା ଗ୍ରେଗିଣା କାଳୀ ବିଲେଇଟା ତାଙ୍କ ଆଗ ଦେଇ ଏରୁଣ୍ଡି ବନ୍ଧ ଡେଇଁ ପଳେଇଲା । ବୁକୁ ରୁ ନିଆଁଟାଏ ଖସିପଡ଼ିଲା । ଦାସେ କେବଳ ଉଶ୍ୱାସରେ କହିଲେ "ଛୁକ୍-ଛୁକ୍, ଅଲକ୍ଷଣୀ ବିରାଡ଼ି ।"

ଝୁଲୁଆ ଯାଇ ମା' କୋଡ଼ରେ ମୁଣ୍ଡ ଗୁଞ୍ଜି ମିଛରେ ଶୋଇଯାଇଛୁ । ଝୁଲୁମା'ଙ୍କୁ ବୋଧହୁଏ ନିଦ ହୋଇଯାଇଥିବ । ଜସ୍ମୀ ମଧ୍ୟ ଶୋଇଯାଇଛୁ; କନ୍ଥ କୁ ଳୁଉଛୁ । ଦାସେ ଅଳ୍ପ ନଇଁ ସ୍ତ୍ରୀଙ୍କ କପାଳରେ ହାତଟା ଧୀରେ ରଖି କାଢ଼ିନେଲେ ।

"ଓଁ, କେତେ ତାତ ଆଉରି ଅଛୁ ! କ'ଣ କରିବା ହୋ, ଏ ଜରଟା ତ ଜମା ଓହ୍ଲାଇଲା ନାହିଁ ।"

"ଏ ଟୋକାର କେମିତି ଅଛୁ କେଜାଣି !" ତା କପାଳରେ ହାତ ରଖି ସାଙ୍ଗେ ସାଙ୍ଗେ କାଢ଼ିନେଲେ ।

"ତାତ ଖଇ ଫୁଟୁଛୁ, ଗୁଦରଟାକୁ ଦେହରୁ ଖସେଇ ଦେଖ କେମିତି ଫୁଙ୍ଗାରେ ଘ୍ୟାପ ଶୋଇଛୁ !"

ଗୁଦରଟାକୁ ଟାଣି ଜସ୍ମୀ ଉପରେ ଘୋଡ଼େଇଦେଲେ ।

"ଗୋଡ଼ ଟେକିବୁଟି ଜସ୍ମୀ—ହୁଁ···ଦେଖି, ଏଇଟା ଘୋଡ଼େଇ ହୋଇପଡ଼ିବୁଟି,

ଝାଳ ଡେଇଦେବ ! —ବାଆସ- -ଦେ, ଏଥର ଶୋଇପଡ଼ ।"

"ଆରେ ଟକୁଆ, ଆ ବାପା, ଆମର ସେ ଘରେ ଶୋଇବା—ଆରେ, ଏମିତ ଅଟ୍ଟ ହୁଅନ୍ତ ? ମୋ ବାପାଟା ପରା ! ଦେଖ୍ ଦେଖ୍, ପାଟି କରନା, ବୋଉକୁ ପରା ଜର ହୋଇଚ ।"

ଟୁକୁଆକୁ ଭୁଲେଇ ଘୁଲେଇ ଉପର ଘରକୁ ନେଇଗଲେ । ସେଇଠି ସଅପ ଉପରେ ଖଣ୍ଡେ ଗୁଦର, ଗୋଟିଏ ମାଣ୍ଡି । ଟୁକୁଆକୁ ସେଇଠି ଶୁଆଇଦେଇ ଦାସେ ଖଣ୍ଡେ ଦୋସଡ଼ା ଦେହରେ ପକାଇ ବାଡ଼ିଖଣ୍ଡେ ଧରି ବାହାରିଲେ । ଆଉ ଅ ନାହିଁ, ବାଟ ବାରି ବାରି ଯିବା କଥା ।

ଗଲାବେଳେ କହିଲେ, "ବଟ, ମୁଁ ଟିକଏ ଆସୁଛି । ଭାଇଗ ଭାଇନା ଆସିଲେ କହିବୁ, ନନା କବିରାଜକୁ ଡାକଯାଇଛନ୍ତି । ହେଇ ପଣ୍ଡିତ ଘରପାଖୁ ଯାଇ ତାକୁ ଡାକ-ଆଣିବ ।"

ପଣ୍ଡିତଘରକୁ ସିନା ଗଲା ପଇସା ପାଇବ ବୋଲି, ଆମେ କ'ଣ ତା ନଜରକୁ ଦଣିବୁ ? ସେଇ ସେତକ ପଇସା ଦେଲେ ମଧ୍ୟ ସେ ଆମକୁ କ'ଣ ଭଲ ଔଷଧ ଟିକେ ଦେବ ? ଆହା, ନାରାୟଣ କବିରାଜ ଜଣେ ନଇଲେ ଥିଲା । ତା ନାଁ ଧଇଲେ ଦେହରୁ ରୋଗ କୁଆଡ଼େ ଗୁଡ଼ିପଳେଇବ । କେଡ଼େ କଅଁଳ କଥା ! ଶୁଣିଲେ ଆଗ ରୋଗୀର ପେଟ ପୂରିଯିବ । ଆହା, ବାପ ସମାନ ଲୋକ ମରିଗଲା । ଅମୃତହସ୍ତା—ସେ ଛୁଇଁଦେଇ ତା ହାତରେ ଦୁବପତ୍ର ଦେଇଦେଲେ ରୋଗ ଭଲ ହୋଇଯାଉଥିଲା । ଏଇଟା ସ୍ୱାପ ବାଣ୍ଡହସ୍ତା—ଯାହାକୁ ଛୁଇଁବ ତା'ର ବରଷକର ପରମାୟୁ ଦନକରେ ତୁଟିଯିବ ।··· ଶୁଙ୍ଘାମୁହାଁ, କଥା କହିବ ତ ଚପି ଚପି କୁଁ ଭିତରୁ କହିବ । ପଦ ପଦକେ ବରୁଡ଼ ପରି ଝାଡ଼ିହେଉଥିବ । ପଡ଼ିକ ଭିତରେ ଦଶ ଖଣ୍ଡ ପାନ ଘଣେଇଦବ । ଦନଗତ ଛେଳି ଚରିଲା ପରି ସେଇଟା ଖାଲି ପାନ ଖାଉଚ । ହେଲେ ଗୁଣୀ ଲୋକଟା ବୋଲି ସମସ୍ତଙ୍କର ତାକୁ ଟିକଏ ସମ୍ମାନ ।

ଆଚ୍ଛା, ପଣ୍ଡିତଘରେ ଫେର୍ କାହିଁକି ଦେହ ଅସୁଖ ହେଲା ? ସେମାନେ ତ ଦେହକୁ ଜଗିରଖି ଚଳନ୍ତି !···ଆରେ ଯାଃ, ଜଗିରଖି କ'ଣ ଚଳିବ କଉ, ଏ ଦେହଟା ହେଲା ପରା ରୋଗରେ ଖଣି ! ତାକୁ କେତେ ଆଡ଼୍ କେତେ ଜଗିବ ? ପଣ୍ଡିତଆଣୀଟା ବଡ଼ ଭଲମଣିଷ । ହଜାରେ ବ୍ରତ ସେ କରୁଥିବ । ସେ ପୁଣି ବିଚ୍ଛଣା ପଡ଼ିଗଲା ? ଗୁଡ଼, ତା ହେଲେ ଆମ କଥା ଆଉ କାହିଁକି କହିବା ?

ତାଙ୍କ ଅଣାୟତ୍ତରେ ଦାସେ ଟିକଏ ହସିପକେଇଲେ ।

ଦେଖ, ଅ.ଉ ଜଣେ କଷ୍ଟ ପାଇଲା ବୋଲି କେମିତ ମନରେ ଗୋଟେ ଆଶ୍ୱାସନା ଆସୁଛି । ପର ଦୁଃଖ ଦେଖିଲେ କ'ଣ କଷ୍ଟ ଲଗନ୍ତା, ଆଉରି ଖୁସିଲାଗୁଛି । କାହିଁକି ନା, ଆମେ ତ ଏକା ନୋହୁ; ଗାଁଟାଯାକରେ କେହି ଗୁଡ଼ ଯାଇ ନାହାନ୍ତି । ପଇସାବାଲାଙ୍କ ଘରେ ମଧ୍ୟ ମଳୁ । ଏଇଟାରେ ଯେମିତଆ ଲାଗୁଛି ଯେ ଏକୁଟିଆ ଆଉ କଷ୍ଟ ନ ପାଇ ସମସ୍ତଙ୍କ ସାଙ୍ଗେ

ମିଶି କଷ୍ଟ ପାଇଲେ କେମିତି ସେଇଟା କମ୍ ହୋଇଯାଏ ! ଧନ୍ୟ ମଣିଷ ପ୍ରକୃତି !!

ହୋଇ, ପଣ୍ଡିତଙ୍କ ଘରେ ଆଲୁଅ ଜଳୁଛି । ଅନ୍ଧାରରେ ନୂଆ ଘରଟା କେଡ଼େ ବଡ଼ ଦେଖାଯାଉଛି ମ ? ଗୁଡ଼ାଏ ପଇସା ଲୋକଟା ଏ ଘର ପିଛା ଖର୍ଚ୍ଚ କରିଦେଇଛି ।

"ଗନ୍ଧଆ ! ଏ ଗନ୍ଧଆ !"

"—କିଏ ?" ବୋଲି କହି ପଣ୍ଡିତ ନୀଳକଣ୍ଠ ତ୍ରିପାଠୀ ଧାଣ୍ଡିପିଣ୍ଡାକୁ ଖଣ୍ଡେ ଲଣ୍ଠନ ଧରି ବାହାରିଆସିଲେ । ତାକୁ ଉପରକୁ ଟେକି ଆଗ ଦାସଙ୍କ ମୁହଁକୁ ଚାହିଁଲେ ।

"କଣ୍ଟେ ଦାସେ, ରାତିରେ କୁଆଡ଼େ ଏ ଯାଇ ଆଡ଼େ ଆସିଲ ?"

"କହୁଛି ରହିଥ ! ଆଗେ କବିରାଜ—ଏଇ ବୈକୁଣ୍ଠ କବିରାଜ ଆସିଲେଣି ନା ନାହିଁ କହିବ ?"

"କାହିଁକି ? ସେ ଆଉରି ଆସି ନାହାନ୍ତି । ଲୋକ ଯାଇଛି ତାଙ୍କୁ ନେଇ ଆସିବାକୁ । କାହିଁ, କ'ଣ ହେଲା କି ? କାହା ଦେହ ଅସୁଖ ଅଛି ?"

"କ'ଣ କହିବି ? ପରି ଧୂଇ ଜଣଙ୍କ ଜର ହୋ ! ସ୍ତ୍ରୀ ମା ଆଉ ସେ କଣ୍ଟ୍ରୀ ଟୋକାକୁ ଆଜିକୁ ବାର ଦିନ ହେଲା ଜର । ତାକୁ ଟିକିଏ ଘରକୁ ନେଇ ଦେଖେଇବି ବୋଲି ଭାବିଛି ଯେ—ହେଲେ କବିରାଜ ସାଙ୍ଗେ ମୋର ସେମିତି ଚିହ୍ନା-ପରିଚୟ ନାହିଁ । ତମେ ଟିକିଏ ତାକୁ କହିଦିଅନ୍ତ ଯଦି ଭଲହୁଅନ୍ତା ।"

"କହିଦେବାରେ କିଛି ନାହିଁ ଯେ ସେ ବଡ଼ ବ୍ୟସ୍ତଲୋକ, ତାଙ୍କ ସମସ୍ତଙ୍କ ଘରୁ ଡାକରା । ହଉ, ଏବେ କ'ଣ ହେଲା ? ସେ ତ ତାଙ୍କର ପାଉଣା ଯାହା ପାଇଗଲେ ଗଲା । ତାଙ୍କୁ ମୁଁ କହିଦେବି ।"

"ଆଚ୍ଛା, କ'ଣ ତୁମ ଘରେ ସେଇ ଜର ନା ?"

"ହଁ ହୋ, କାହିଁ ପଚାରୁଛ ? ମୁଁ କେତେ ଥର ତାଙ୍କୁ କହୁଛି ଏମିତି ଗୁଡ଼ାଏ ଓଷା ବ୍ରତ କଲେ କିଛି ସ୍ୱର୍ଗପ୍ରାପ୍ତି ହୋଇଯିବ ନାହିଁ । ଶରୀର ଥିଲେ ତ ଧର୍ମ କରିବ । ଯେତିକି ହୋଇପାରିବ, କଲେ କିଛି ଆପତ୍ତି ନାହିଁ । ମାତ୍ର ଅତି ସର୍ବତ୍ର ବର୍ଜୟେତ୍ । ଶୁଖି ଶୁଖି ଶେଷକୁ ବେମାର ପଡ଼ିଛି ଯେ ଜର କେତେ ମାସକେ ଓହ୍ଲେଇବାକୁ ନାହିଁ ।—ହୋଇଟି କବିରାଜେ ଆସିଗଲେ ପରି ଲାଗୁଛି ।"

ଦାସେ ଦେଖିଲେ ଆଗରେ ଗନ୍ଧଆ ଲଣ୍ଠନ ଧରି ଆସୁଛି, ତା ପଛରେ ଖଣ୍ଡେ ମକଚୁର୍ଚ୍ଚ ବଙ୍କା ବାଡ଼ି ଧରି ବୈକୁଣ୍ଠ କବିରାଜ ।

ନୀଳକଣ୍ଠ ପଣ୍ଡିତେ ସମ୍ଭ୍ରମର ସହିତ କବିରାଜଙ୍କୁ ପାଛୋଟି ନେଲେ ।

ବୈକୁଣ୍ଠ କବିରାଜ ଲଣ୍ଠନ ଆଲୁଅରେ ଦାସଙ୍କୁ ଚିହ୍ନିଲେ ।

"କହୋ ଦାସେ, କ'ଣ ସବୁ ଭଲ ତ !"

କିଛି ଉତ୍ତର ପାଇବା ପୂର୍ବରୁ କବିରାଜଙ୍କ ମଗରବସା କୁଣ୍ଡଳ ଝୁଲି ଝୁଲି ଘର ଭିତରେ ପଶିଗଲା ।

ଦାସେ ଭାବିଲେ ଯେ ତାଙ୍କର ସବୁ ଭଲ ନ ଥିଲେ କବିରାଜଙ୍କ କିଛି ଯାଏ ଆସେ

ନାହିଁ । ସେ ତାଙ୍କ କାନ କୁଣ୍ଡଳ ଝୁଲୁଥିବାର ଅନୁଭବ କଲେ । ଅନେକ ଅସୁବିଧା ଭିତରେ ସୁଦ୍ଧା ସେ ଯୋଡ଼ିକୁ ସେ କେବେ କାନରୁ ଓହ୍ଲେଇ ନାହାନ୍ତି । କିନ୍ତୁ ସେ କୁଣ୍ଡଳ ପିନ୍ଧିଲେ କ'ଣ ଯାଏ ଆସେ ! ବେଳ ଯେମିତିଆ ଅଠାଅଠି ହେଲଣି, ତାଙ୍କୁ ମଧ୍ୟ କେତେବେଳେ ବିକଶିଙ୍ଗି ଚଳିବାକୁ ପଡ଼ିବ । ହଉ ଦେଖିବା, ସେ ବେଳ ଆସିନାହିଁ ତ !

ଦାଣ୍ଡପିଣ୍ଡାରେ ଦାସେ ବସିଛନ୍ତି ଦେଖି ଗନ୍ଧଆ ତା' ଲଣ୍ଠନଟା ରଖିଦେଇ ଘରକୁ ଯାଇଥିଲା । ସେଇ ଆଲୁଅରେ ଟୋପି ଟୋପି ପାଣି ବର୍ଷା ହେବାର ଦିଶୁଥାଏ । ପଣ୍ଡିତଙ୍କ ଘର ସାମନାଟା ଛାଡ଼ିଦେଲେ ବାକି ସବୁଆଡ଼େ ନିଘୋଡ଼ ଅନ୍ଧାର । ପବନର କିନ୍ତୁ ନାଁ ନାହିଁ । ଏକାଲୟରେ ଦାସେ ଶୂନ୍ୟକୁ ଚାହିଁ ବସିଥାନ୍ତି । ମନଟା ବଡ଼ ଗୁନ୍ଥୁଆ ଗୁନ୍ଥୁଆ ହୋଇ ଅସ୍ଥିର ଲାଗୁଥାଏ । କେତେବେଳକେ ପଣ୍ଡିତଙ୍କ ତଳ ଘରଆଡ଼ୁ ମଣିଷ ଗଳା ଶୁଭିଲା ।···ଟିକିଏ ଉଶ୍ବାସ ଲାଗିଲା ।

"ବର୍ତ୍ତମାନ ତ ମୁଁ ପାନେ ଦେଲି । ରାତି ଅଧକୁ ଉଠି ପାନେ ଦବାକୁ ହବ । ଆଉ ସୂର୍ଯ୍ୟୋଦୟ ପୂର୍ବରୁ ପାନେ । ମୁଁ ଆସି ଫେର୍ ସକାଳୁ ଦେଖିଗଲେ ତେଣିକି ଯାହା ହବ କରିବା । ମୋ ସାଙ୍ଗରେ ଆପଣଙ୍କର ଏ ଲୋକଟା ଟିକିଏ ଆସୁ । ମୁଁ ତା ହାତରେ କିଛି ଘରମରି ମନ୍ଥୁ ପଠେଇଦେବି । ତା ଦେହରେ ଢ'ଟା କରି ବଟିକା ଖଲି ଚଟେଇଦେବେ ।"

ପଣ୍ଡିତେ, କବିରାଜେ ଆଉ ଗନ୍ଧଆ ଆସିଲେ ବାହାର ପିଣ୍ଡାକୁ । ଦାସେ ଉଠି ଠିଆହେଲେ । ପଣ୍ଡିତେ ସେଇଠୁ କହିଲେ—"ଆଜ୍ଞା, ଦାସଙ୍କ ଘରେ ମଧ୍ୟ ଦୁଇଟି ମଳ୍ପ ପଡ଼ିଛନ୍ତି । ଗଲାବେଳେ ଟିକିଏ ମୁହଁ ମାରିଦେଇ ଯିବେ ବୋଲି ଦାସେ ଡାକିଆସିଥିଲେ ।" କବିରାଜେ ଯୋଡ଼ା ପିନ୍ଧ୍ ପିନ୍ଧ୍ ଦାସଙ୍କୁ ଥରେ ଚାହିଁଲେ । ପଣ୍ଡିତେ ପୁଣି କହିଲେ, "ଆପଣଙ୍କ···ଯାହା ବଇଲେ ଯେତିକି ପାଉଣା···ସେ ଦେବେ ।"

"କ'ଣ ଦାସେ, କାହା ଦେହ ଅସୁଖ ହେଇଚି କି ?" ମୁଣାରୁ ଖଣ୍ଡେ ପାନ କାଢ଼ି ପାଟିରେ ପୂରାଇଲେ ।

"ଜୟୀ ବୋଲି ସାନପୁଅ, ତାକୁ; ଆଉ ତା ମା'କୁ ଆଜକୁ ଦଶ ବାର ଦିନ ହେଲା ଜର ।"

"ହଉ, ଗଲାବେଳେ ଘରଟା ବାଟରେ ପଡ଼ିବ ତ ?"

"ଆଜ୍ଞା !"

"ଆମେ ତା ହେଲେ ଗଲୁ ପଣ୍ଡିତ ମହାଶୟେ ! କିଛି ଚିନ୍ତା କରିବେ ନାହିଁ । ଏ ପିତ୍ତାଧିକ ଜରଟା ସମସ୍ତଙ୍କୁ ହେଉଛି । ଭୟର କାରଣ କିଛି ନାହିଁ ।"

"ଆପଣଙ୍କ ହାତଯଶ ଆଜ୍ଞା !"

"ହଇଲରେ, କ'ଣ ତୋ ନାଁ ?"

"ଆଜ୍ଞା, ଗନ୍ଧଆ ।" କହି ଚିଗୁରି ଢ'ପାହୁଣ୍ଡେ ତେଇଁ ଲଣ୍ଠନ ଧରି ଆଗରେ ଚାଲିଲା ।

ଦ୍ୱାରେ ଆଉ ପଦେ ବୋଲି କଥାବାର୍ତ୍ତା ନାହିଁ । ଘର ଦୁଆରେ ପହଞ୍ଚି ଦାସେ କହିଲେ—"ଆଜ୍ଞା, ଏଇଠି ।"

"ଆଚ୍ଛା, ଏ ବାଟେ ତ କ'ଣ ଆମେ ଗଲୁ ବୋଲି ମନେ ହେଉଛି !"

"ଆଜ୍ଞା ହଁ, ଏଇ ବାଟେ ତ ଆମେ ଗଲେ । ଆଉ ଗୋଟେ ବାଟ ଅଛି ଯେ ସେଇଟା ସେ ବାଉର ଯାଇ ଦେଇ ଟିକିଏ ବୁଲିଗଲା ।"

ଦାସେ ଘର ଭିତରକୁ ପଶି ଦେଖନ୍ତି ତ ଘରଦ୍ୱାର କୁହୁଳା ଭର୍ତ୍ତି—କିଛି ବଇଲେ କିଛି ଦିଶୁନାହିଁ ।

"କିରେ ବଡ଼ ଭାଇନା ଆସିଲେଣି ?—କାହିଁକି ଏମିତି କୁହୁଳା କରି କରେ ?" ଭାଇଗ ଆଖି ମଳି ମଳି ଆସି ଉପର ପିଣ୍ଡାରେ ଠିଆହେଲା ।

"ବୋଉକୁ ଶୋଷ ହେଲା ଯେ ସେ ଯେଉଁ ସକାଳର ବାଲପାଣି ଥିଲା ତାକୁ ଉଷୁମ କରିବାକୁ ଚୁଲି ଲଗାଉଥିଲି । ଘଡ଼ିଏ ହେଲାଣି ଯେତେ ଫୁଙ୍କିଲେ ଖାଲି କୁହୁଳୁଛି, ଜମା ଜଳୁନାହିଁ ।"

ଏତିକିବେଳେ ଦପ୍‌କିନା ନିଆଁ ଜଳିଉଠିଲା । କୁହୁଳା ଭିତରେ ନିଆଁ ଅସ୍ପଷ୍ଟ ଗେରିଗିଣିଆ ହୋଇ ଦିଶୁଥାଏ । ପଛରୁ ଶୁଭିଲା—"କିଣ ଦାସେ, ଏ କୁହୁଳାରେ କିଛି ଦିଶୁନାହିଁ ଯେ, କୋଉ ଘରେ ସବୁ ଅଛନ୍ତି ?"

ଦାସେ ଚମକିପଡ଼ିଲେ ପ୍ରାୟ ।

"ଆଜ୍ଞା, ହେଇ ତଳଘରେ, ଆସିବା ହେଉନ୍ତୁ ।"

ଆଉ କିଛି ଭାବିବା ପୂର୍ବରୁ ସେ ଯାଇ ମଳୁ ଶୋଇଥିବା ଘରେ ପଶିଗଲେ । ବଡ଼ କୁଣ୍ଠିତ ମନରେ ବୈକୁଣ୍ଠ କବିରାଜେ ମଧ୍ୟ ଯାଇ ପହଞ୍ଚିଲେ । ବସିବା ପାଇଁ ଖଣ୍ଡେ ଷ୍ଟୁଲ— ନୂଆ କାମ କଲାବେଳେ ରଘୁ ଆଣିଥିଲା—ତାକୁ ପକେଇଦେଲେ । କବିରାଜେ ବସି ଚୂଳୁମା'ଙ୍କ ନାଡ଼ୀ କିଛି ସମୟ ଦେଖି ହାତଟିକୁ ଧୀରେ ରଖିଦେଲେ ।

ନିଶ୍ୱାସଟିଏ ମାରି କହିଲେ—ହୁଁ ।

'ପୁଅର ଦେଖିବା' କହି ଉଠିଲେ ।

ଜୟୁଁଟାର ହାତ ଏ କେତେଟା ଦିନରେ କ'ଣ ହେଇଗଲାଣି ! ଇସ୍, ଖାଲି ଖଣ୍ଡେ କାଠି ଯେମିତି ।

ଦେଖିସାରି କବିରାଜେ ଉଠିଲେ । ହାତ ଧୋଇବାର ଇଙ୍ଗିତ କରିବାରୁ ଭାଇଗ ନେଇ ତାଳରେ ପାଣି ଗଡ଼େଇଦେଲା ।

ରାମ କି କୃଷ୍ଣ କିଛି ନ କହି କବିରାଜେ ସଳଖେ ଯାଇ ଦାଣ୍ଡପିଣ୍ଡାରେ ଠିଆହେଲେ ।

ଦାସଙ୍କୁ ସେତେବେଳକୁ ପ୍ରକୃତରେ ବାହାରପାଣି ମାଡ଼ିଲା ପରି ଲାଗିଲାଣି ।

"କ'ଣ ଦେଖିଲେ ଆଜ୍ଞା ?"

"ଦୁହିଁଙ୍କୁ ଏକାପ୍ରକାର ଜର ।—ଆଉ ଏ ଜର ଭଲ ହବା ଟିକିଏ କଠିନ । ଭଲ ନ ହବ ବୋଲି ନୁହେ, ମାତ୍ର ସମୟ ଲାଗିବ ।"

"ତା ହେଲେ ମୁଁ କ'ଣ କରିବି ଆଜ୍ଞା !"—ଦାସଙ୍କ ସ୍ୱର ଭାଙ୍ଗିପଡ଼ୁଛି, ମନ ପାଚିଲାଆ ଧରିଗଲାଣି ।

"ଆଜି ରାତିଟା କାଉଣ୍ସିମତେ ଯାଉ । କାଲି ସକାଳୁ ମୋ ପାଖକୁ ଆସ, ମୁଁ ଔଷଧ ଦେବି । ଆଉ···ହଉ, ତୁମେ କାଲି ସକାଳୁ ଆସ, ସବୁ ବୁଝିବା ।"

କବିରାଜେ ଦାଣ୍ଡକୁ ବାହାରିଲେ, ଗଛଆ ବାଟ ଦେଖେଇ ଗ୍ଭଲିଲା ।

ଦାସେ ପଦେ କଥା ମଧ୍ୟ କହିପାରିଲେ ନାହିଁ । କେତେ ସମୟ ପରେ ଖୁଲିଗ, ବଟ ଖୁସ୍‌ଖାସ୍ ହେବାରୁ ଘାର୍ଘ ନିଶ୍ୱାସଟିଏ ମାରି ଅତି ଧୀରେ ଘରେ ପଶିଲେ । ଗୋଡ଼ ଦ'ଟା ତୁଗୁଳି ପଡ଼ିଲା ପରି ଲାଗୁଥାଏ ।

"ହଇ ହେ, ଶୁଣୁଚ"···ଅତି କ୍ଷୀଣ ସ୍ୱରରେ ଭଳି ଘରୁ ଶୁଭିଲା ।

ସାଙ୍ଗେ ସାଙ୍ଗେ ଦାସଙ୍କ ଦେହକୁ ବଳ ଚଢ଼ିଗଲା । ସେ ଦ' ଖେପାରେ ଯାଇ ଟୁକୁମା'ଙ୍କ ପାଖେ ପହଞ୍ଚିଗଲେ । ପିଲା ଦ'ଟା ମଧ୍ୟ ତାଙ୍କ ପାଖକୁ ଲାଗି ଠିଆହେଲେ ।

"କ'ଣ ବଲୁଚୁ ? କେମିତି ଲାଗୁଚ ?"

"ତମେ ଏମିତି ବଇଦ କବିରାଜ ଗୁଡ଼େ କାହିଁକି ଡାକିଆଣୁଚ ? ସେଥିରେ ଗୁଡ଼େ ଟଙ୍କାକୁ କାହିଁକି ପଇସା ଦବ ? ପଇସା କାହିଁ ଯେ ଦବ ?···ଉଁ···ବାପା ବଟ, ଗୋଡ଼ ଆଙ୍ଗୁଠିଟା କେମିତି ହେଇଯାଉଚ ରେ, ଟିକିଏ ସଳଖିଦଉଚି ।"

ସାଙ୍ଗେ ସାଙ୍ଗେ ଖୁଲିଗ, ବଟ ଗୋଡ଼ ଉପରେ ହାତ ମଡ଼େଇ ଆଙ୍ଗୁଠିଟା ସଳଖିଦେଲେ । ଭୁଲିଗ ଅଳ୍ପ କରି ଗୋଡ଼ ଘଷି ଦେଉଥାଏ । ବଟ ଠିଆ ହୋଇ ରହିଥାଏ ।

"ବୁଢ଼ାଟିଏ ହେଇଆ ବାପା ମୋର, ଶହେ ବର୍ଷ ପରମାୟୁ ହଉ ।"

"କ'ଣ ବାଲିପାଣି ପିଇବୁ ବଲୁଥିଲୁ ପରା, ପିଲେ ତାକୁ ଚୁଲି ଲଗେଇ ଉଷୁମ କରିଛନ୍ତି, ଆଣିଦଉଚ ।"

"ସେଇ ଜଗ୍ମୀକୁ ଦଅ, ସେ ଶୋଷ ହଉଚ ବୋଲି କହୁଥିଲା ।"

ଦାସେ ଆଣି ଗୋଟେ ଗିନାରେ ବାଲିପାଣି ଧରି ଜଗ୍ମୀକୁ ଉଠାଇଲେ—

"ଉଠିବୁଟି ବାପା, ବସି ଏଇଟା ଟିକିଏ ପିଇଦେ, ଫେର୍ ଶୋଇପଡ଼ିବୁ ।"

ଜଗ୍ମୀ ଜରରେ ଫାଇଁ ଫାଇଁ ହଉଥାଏ । ଉଠି ଏକାନିଶ୍ୱାସରେ ସେତକଯାକ ପିଇଦେଇ ହାଲିଆ ହୋଇ ଖଟରେ ଗଡ଼ିପଡ଼ିଲା । ଯୋଡ଼ାଏ ନିଶ୍ୱାସ ସହିତରେ ନେଇ କହିଲା—

"ମୁଁ ବୋଉ ପାଖେ ଶୋଇବି ।"

"ବୋଉ ପରା ତୋ ପାଖରେ ଶୋଇଚ ଆଉ ଖଟରେ ! ଗୋଟେ ଖଟରେ ଆଉ ହବ ନାହିଁ ବାପା, ସେଇଠି ଶୋଇପଡ଼ ।"

ଟୁକୁମା' କଷ୍ଟରେ କଡ଼ ଲେଉଟାଇ ତା ଆଡ଼କୁ ମୁହଁକରି ତା ଦେହରେ ହାତ ରଖିଲେ ।

"ମୁଁ ଅଛିରେ ବାପା, ଶୋ, ଶୋଇପଡ଼୍ ।"

"ଜମ୍ମୀ ଖଟର କାହାକୁ ବୋଉ ବୋଲି ସବୁ ଆଉଜ ଶୋଇଗଲ ।

"ଏ ଟୋକାଟା ପିଲାବେଳୁ ମା' କୋଳ ଛାଡ଼ିଗଲା ନା, ତା ମନରେ ସଦାବେଳେ ଅସନ୍ତୋଷ ରହିଲା । ଆସି ଏତେ ବଡ଼ଟିଏ ହେଲାଣି । କୋଳରେ ଟିକିଏ ଶୋଇଗଲେ ତାକୁ କେତେ ଆନନ୍ଦ ! ମାତ୍ର ସେ ଟୁକୁଆ କ'ଣ ତାକୁ ପାଖ ପୂରେଇଦେଲା ।"

"ହଁ ସେଇଟା ସତ ଯେ, ରୁ ଟିକେ ଏଥିରୁ ନେ, ପି ।"

"ମତେ ଏଇଲାଗେ ଶୋଷ ନାହିଁ । ଏଇଠି ଏ ଖଟତଳେ ରଖିଦେଇଥାଅ । ମନହେଲେ ମୁଁ ନେଇ ପିଇବ । ଏ ଓଳ କ'ଣ ରାନ୍ଧିବ କହୁଥିଲ, ରାନ୍ଧିଲ ?"

"ହଁ ରାନ୍ଧିବା ନାହିଁ କ, କାହିଁକି କାଉଲ ? ରାତ ତ ହେଇ ନାହିଁ । ଯିବୁଟିରେ ଖାଇଗ, ଭାତପାଣି ବସା । ଭାତଟା ହେଇଗଲେ ସେଇ ରଡ଼ରେ ଡନଟା ବାଇଗଣ ପୋଡ଼ିଦବୁ ।"

"ନାଇଁ, ଆଜ ଚୂଲିରେ ପୋଡ଼ା ହବ ନାହିଁ, ଆଜ ଗୁରୁବାର । ଭାତ ଫୁଟିଗଲେ ସେଥିରେ ଫାଳ ଫାଳ ଚିରି ପକେଇଦଅ, ସିଝିଯିବ ।"

ବାପ ପୁଅ ଡନ ଜଣ ସେ ଘରୁ ପଳେଇଆସିଲେ । ଖାଇଗ, ବଟ ରନ୍ଧାରେ ଲାଗିଲେ । ବାପେ ଉପର ପିଣ୍ଡାରେ ଧୀର ହେଇ ବସିଗଲେ । ସବୁ ତାଙ୍କୁ ସପନ ପରି ଲାଗୁଥାଏ । କାଲି ସକାଳୁ ପଇସା ମୁହଁ ନ ଦେଖିଲେ କବିରାଜ ଔଷଧ ନ ଦଏ । ପାନବୁଢ଼ା ଉଠି ଦୋକାନ ଫିଟଉ ଫିଟଉ ବେଳ ଦୁଇ ଘଡ଼ି । ତା ପାଖେ ଗରାଟା ଥୋଇଲେ ସେ କ'ଣ ଦଉଚ କେଜାଣି ! 'ସ୍ୱାପ କହିଲା କ'ଣ ନା, ଏ ଜର ଭଲ ହବ ନାହିଁ—କାହିଁକି ଭଲ ହବ ନାହିଁ ? କାହିଁକି, ଆମେ କ'ଣ ଗୋରୁ ମାରିଛୁ ? ଖାଲି ପଇସା ଖସେଇବା ବାସ୍ତୁର ।'

"ପାଣି କେତେ ଦେବ ନନା !"

"ଦେଇଦେ ସେ ବଡ଼ ଚେମ୍ବୁରେ ଦ' ଚେମ୍ବୁ ।"

"ଆରେ ନାଇଁ, ସେଥିରେ ତାଲେ ହେଲେ ହେଇଯିବ । ଦ' ଠାଳରେ ଭାତ ରାନ୍ଧିଲେ ଆଠ ଜଣ ମଣିଷ ଖାଇବେ ।···ଓହୋ, ବାପକୁ ପୁଅ—ଏଗୁଡ଼ାକ କିଛୁ ବୁଝିହେନ୍ତି, ଛି ! ମଣିଷ ଇମିତ ସ୍ୱେଗରେ ପଡ଼ିଲା ବୋଲି ସିନା !" ଟୁକୁବୋଉ ସେ ଘରୁ ବଡ଼ ବ୍ୟସ୍ତ ହୋଇ ଶୁଣେଇ କହିଲେ ।

"ହଉ, ବୋଉ ଯାହା କହୁଛି ସେଇଆ ଦେଇଦେ ।···ତତେ ବାଲିପାଣି ଟିକେ ଦେବ କଲେ, ପିଇବୁ ।"

"ତମେ ଖିଆପିଆ ଆଗ କର ତ । ମୁଁ ପଛେ ପିଇବ ନାହିଁ କ !"

"ହଉ । ହଇ ରେ ବଟ, ମୁଦେ ଭଲ ପାଣି ଆଣିବୁ ପିଇବା ।"

ପାଣି ପିଇ ଟିକିଏ ସୁସ୍ଥ ଲାଗିଲା ।

"ଯାହା ହବ, ହବ । ଏଥିକି ଚନ୍ତା କଲେ ଆଉ ଅଧିକ ଗୋଟାଏ କ'ଣ ହେଇଯିବ ? ପିଲାଟା ମାତ୍ର ବଡ଼ କାଇଲି ହୋଇଗଲାଣି । ନାକଦଣ୍ଡିରେ ଆସି ପ୍ରାଣ

ରହିଲଣି । ତେବେ ପୁଙ୍ଗା ସେ ଅଲକ୍ଷଣିଆ ଙ୍ଗରର ଦସ୍ଥା ନାହିଁ ଯେ ସେ ହାଡ଼ ଚମକୁ ପକେଇ ସିଝିଉଚ୍ଛ ।"

ଖତ ଗଣ୍ଡାକ ହଉ ହଉ ରାତି ପ୍ରାୟ ଦୁଇ ଘଡ଼ି ଉପରେ । ସେଥିରୁ ଆଉ ପେଜ କଛୁ ବଗିଡ଼ିଲ ନାହିଁ । ତାକୁ ମାରଦେବାକୁ ଫେର୍ ବସେଇଦେଲେ । ଯାହା ଖତ ଥିଲା, ସେ ଗଣ୍ଡାକ ଏକାଥରେ ଙ୍ଗାଉ ହେଇଗଲା । ତାକୁ କୌଣସି ପ୍ରକାରେ ଟେଲାଏ ଲେଖାଁ ଗିଲଦେଇ ଖାଇଗ, ବଟ ଯାଇ ଟୁକୁଆକୁ ଧର ଉପର ଘରେ ଶୋଇଗଲେ । ଦାସେ ସେଇ ଛଳ ପିଣ୍ଡାରେ ଖଣ୍ଡେ ସଅପ ପକେଇ ଶୋଇବା ପୂର୍ବରୁ ଗଲେ ଘର ଭିତରକୁ ।

"ହଇଲେ···ଏ···ଶୋଇଲୁଣି କ ? ଏ ବାଲିଟିକ ପିଇଦେ ।"

ଟୁକୁମା' ଖାଲ କୁନ୍ଥଉଥାନ୍ତି । ତାଠର ଆଉ ସୀମା ନାହିଁ । ହାତ ରଖି ହଉ ନାହିଁ ।

"ରୁ ସେମିତ ଶୋଇଥା, ମୁଁ ପାଟିରେ ଶାମୁକା ଶାମୁକା କର ଦେଇଦଉଚ । ଦେଖି, ଆଁ କର ।···ହାଁ, ଆଉ ଦଢ଼ୋକ ରହିଲା—ବେଶ୍, ଏଥର ଶୋଇପଡ଼ । ଘୋଡ଼େଇ ଦେବ ?···ନାହିଁ ? —ହଉ, ସେମିତ ଶୋଇଯା ।

ଆଖି ବୁଜ ଟୁକୁମା' କହିଲେ "ତମେ ଯା ଶୋଇପଡ଼—ଉଁଃ—ତମ ଦେହ ଦହିପର ଲୁହେଁ ।···ଏ ପାଖରେ ଶୁଅ ନାହିଁ—ଉଁଃ ··ଅଃ···ଗଲ ?"

"ହଉ ମୁଁ ଯାଉଚ, ରୁ ଶୋଇବୁଟି ! ସେମିତ ଆଉ ବ୍ୟସ୍ତ ହନା, ମୁଣ୍ଡ ବଥେଇବ, ଭୁନହୋଇ ଶୋଇପଡ଼ ।"

ଦାସେ ଆସି ଅଗଣାରେ ଠିଆହେଲେ । ମେଘ ସେମିତ ଘୋଟିରହିଥାଏ; ମାତ୍ର ଟୋପିଏ ଆଉ ପଡ଼ୁ ନ ଥାଏ । ଏ ଘରେ ଦ'ଟି ମଲ୍ଲ । ସେ ଘରେ ପିଲାଗୁଡ଼ାକ । ବଡ଼ ଅସ୍ଥିର ଲାଗୁଥାଏ । ମନ ଭିତରେ ନାନା ଚନ୍ତା । ଟିକିଏ ଅସହାୟ ବି ଲାଗୁଥାଏ । କେମିତ ମାଡ଼ପଡ଼ିଲା ପର ଛପ୍‌ଛପିଆ ଭୟ-ଭୟ ମଧ୍ୟ ଲାଗୁଥାଏ ।

"ହଉ ପ୍ରଭୁ, ସବୁ ତୁମର ଇଚ୍ଛା । —ରଖେ ହର ମାରେ କୋନ୍, ମାରେ ହର ରଖେ କୋନ୍ । ଭାଗ୍ୟରେ ଯାହା ଥିବ, ସେଥିକୁ ତ ମଣିଷର ଆୟତ୍ତ କଛୁ ନାହିଁ ।"

ପିଣ୍ଡାରେ ପଟି ପଡ଼ିଥାଏ । ସେଇଠି କାନ୍ଥକୁ ଆଉଜ କେତେ ବେଳ ବସିଲେ, ଶେଷକୁ ଆଖିପତା ଘୋଡ଼େଇ ହୋଇ ଆସିଲା । ଦାସେ ସେଇଠି ଶୋଇଗଲେ ।

ରାତି ସେତେବେଳକୁ କେତେ ହେବ କେଜାଣି, ଦାସେ ବାଲବଲେଇ ଉଠିଲେ । ନିଦ ଭାଙ୍ଗିଗଲା । ଧଡ଼ପଡ଼ ହୋଇ ଉଠି ବସିଲେ । ଗୋଟାକଯାକ ଦେହ ଝାଳ । ଧାଇଁ ଯାଇ ଘର ଭିତରେ ପଶିଗଲେ । ବୁକୁଟା ଖାଲି ଦାଉଁ ଦାଉଁ ପଡ଼ୁଥାଏ । ପାପ ଛୁଇଁଥାଏ ମନକୁ । ଆଗ ଯାଇ ଦଣ୍ଡିଲ ପର ମା' ପୁଅ ଦୁଇ ଜଣଙ୍କ ଉପରେ ହାତ ବୁଲେଇ ଆଣିଲେ । ସ୍ଥିରଭାବେ ଠିଆ ହୋଇ ରହି ତାଙ୍କ ନିଶ୍ୱାସ ବାରଲେ । 'ଓହୋ ! ପିଣ୍ଡକୁ ପ୍ରାଣ ଆସିଲା—କ ଲୀଳା ଲଗେଇଚୁ ହର, କ ମାୟା ଲଗେଇଚୁ ! ଲକ୍ଷ୍ମୀ-ନୃସିଂହ, ଲକ୍ଷ୍ମୀନୃସିଂହ'—କହି କହି ଆସି ପଟିରେ ଲଥିକନା ଦାସେ ଥକ୍‌କାଟ ହୋଇ ବସିପଡ଼ିଲେ ।

'ଓଃ, କି ଦୁଃସ୍ୱପ୍ନ ! ମଇଁଷିଟାର କହରା କହରା ଆଖିଯୋଡ଼ାକ କି ଭୟଙ୍କର ଦିଶୁ ନ ଥିଲା ! ଆଉ ସେ ଲୋକଟା—କାଳିଆ ମିଚମିଚ୍ ହୋଇ ଏ ଦୁଆରବନ୍ଧ ମାଡ଼ି ଠିଆହୋଇଗଲା । କାହିଁ ଚୂଳରେ ଯାଇ ତା ମୁଣ୍ଡ ବାଜୁଥାଏ । ଦେହଯାକ ତା'ର କେତେ ଝାଳ···ମୁଣ୍ଡରେ କେତେ ବଡ଼ ଠେକା ଆଉ ତା ହାତରେ ସେ ଖମ୍ବ ପରି ଠେଙ୍ଗାଖଣ୍ଡିକ । ପ୍ରଭୁ, ବିପଦନାଶନ ହରି—ଏ ବାଳକ ରକ୍ଷା କରିଦିଅ ପ୍ରଭୁ, ମୁଣ୍ଡ ରଖିଦିଅ ଜନାର୍ଦ୍ଦନ !' ସେଇଠୁ ଉଠି ଏକାନିଶ୍ୱାସକେ ତାଳେ ପାଣି ପିଇପକେଇଲେ । ଆଉ ତାଙ୍କ ଆଖିକୁ ଟିକିଏ ବୋଲି ନିଦ ନାହିଁ । ରହି ରହି ସେଇ ଭୟଙ୍କର ସ୍ୱପ୍ନ ତାଙ୍କର ମନେ ପଡ଼ିଯାଉଥାଏ । ରହି ରହି ଦାସେ ଡାକୁଥାନ୍ତି—'ଲକ୍ଷ୍ମୀନୃସିଂହ ! ଲକ୍ଷ୍ମୀନୃସିଂହ !'

# ସୁବର୍ଣ୍ଣ ସୀତା କି ବଚନ କହେ ?

"ନନା, ତମେ ଏମିତିଆ ହେଲେ ଚଳିବ ନାହିଁ"—କହି କାନ୍ଦି କାନ୍ଦି ରଘୁନାଥ ଦାସଙ୍କ ପାଖରେ ଆଣ୍ଠେଇ ବସିପଡ଼ିଲା ।

ଦାସେ ଯେମିତି ମୂକ, ବଧିର—ସେମିତି ବସିଯାଇଥାନ୍ତି କାନ୍ଥକୁ ଲାଗି । ଆଖିରେ ପଲକ ପଡ଼ୁନାହିଁ । ଦୁଇ ସପ୍ତାହ ହେବ ରାତି ଜାଗି ଜାଗି ଆଖି ଦାହିଁ କୋଉ ଭିତରକୁ ପଶିଯାଇଛି ।...ଏତେ ହୋ-ହା, କନ୍ଦାକଟା ହେଉଛି, ତାଙ୍କ କାନରେ ଯେମିତି ସେସବୁ କିଛି ପଡ଼ୁନାହିଁ ।

ପାହାନ୍ତିଆ ପହର । ରଘୁ କୁଟୁମ୍ବ ନେଇ ଦୁଇ ଦିନ ହେବ ଆସିଛି । ବୈକୁଣ୍ଠ କବିରାଜ ମଧ୍ୟ ଆଜି ରାତିସାରା ଜାଗିଥିଲା । ଶେଷକୁ ନାଡ଼ୀ ଯେତେବେଳେ ଆଉ ପାଇଲା ନାହିଁ, ରଘୁକୁ ଧୀରେ କହିଦେଇ ଚାଲିଗଲା । ଛେଳିଗୁହାଳରେ ନିଆଁ ଲାଗିଲା ପରି ପିଲା ବଡ଼ ସମସ୍ତେ ମିଶି ଚମକି ଚମକି କାନ୍ଦିଉଠିଲେ । କିନ୍ତୁ ଦାସେ ଯେଉଁଠି ହାଲିଆ ହୋଇ କାନ୍ଥକୁ ଅଉଜି ଠିଆହୋଇଥିଲେ, ସେଇଠି ଆସ୍ତେ ଆସ୍ତେ ଭାଙ୍ଗି ପଡ଼ିଲେ ତଳକୁ । ଆଖିରେ କିନ୍ତୁ ଟୋପେ ବୋଲି ଲୁହ ନାହିଁ ।

ରଘୁ ସମସ୍ତଙ୍କୁ ଧରି ବୁଝେଇବ କ'ଣ, ନିଜେ ବୁହେ ଲେଖାଁ କାନ୍ଦି ଆସି ଦେଖେତ ତା ନନା ଏମିତିଆ ମୂକ ହୋଇ ବସିଯାଇଛନ୍ତି । ଯାଇ ହଲେଇଲା, ଡାକିଲା—ସେ ସେମିତିଆ ବସିଛନ୍ତି । କେତେବେଳକୁ ଆଖିକୁ ଦୃଷ୍ଟି ଫେରିଲା । ଦେଖିଲେ, ଖଟ ଚାରି-ପାଖସାକ ଘେରି ସମସ୍ତେ କଚି ଛେଚି ହୋଇ କାନ୍ଦୁଛନ୍ତି । ତାଙ୍କୁ ସବୁ କେମିତିଆ କେମିତିଆ ବୋଧହେଉଥାଏ ।...ଦେଖିଲେ, କେବଳ ଟୁକୁଆ ନିଦରୁ ଉଠିଆସି ଖଟକଡ଼ରେ ଚୁନ ହୋଇ ଠିଆହୋଇଛି । ଚଦରତଳୁ ତା' ବୋଉର ଗୋଟେ ହାତ ଦିଶୁଛି—ତା'ର କାଣି ଆଙ୍ଗୁଠିଟାକୁ ଧରି ସେ ମକଚୁଛି, ଠିଆହୋଇଛି—ଆଖିରୁ ଧାରି ଟୋପା ଲୁହ ଝରି ଗାଲ ଉପରେ ଶୁଖିଯାଇଛି ।...

ବନ୍ଧ ଭାଙ୍ଗିଗଲା । ପେଟତଳୁ ଗୁରୁଣ୍ଡି ହୋଇ ହୁଡ଼ା ହୁଡ଼ା ହୋଇ ଉଠିଲା ଖାଲି କୋହ । ଧଡ଼ପଡ଼ ହୋଇ ଉଠି ଟୁକୁଆଟାକୁ ଟାଣି ନେଇ ପୁଣି ବସିଗଲେ । ନିଃଶବ୍ଦରେ ହାଡ଼ ଫଟେଇ ଲୁହ ଝରିଯାଉଥାଏ । ଶ୍ରାବଣର ଧାରା ପରି ଆଖିର ସୁଅ । ଓଠ ଥରୁଥାଏ, ନାକପୁଡ଼ା ଫୁଲି ଫୁଲି ଯାଉଥାଏ । ଆଖିଯୋଡ଼ିକ ବନ୍ଦ କରି ସେ ବସିଥାନ୍ତି । ବାକି ତାଙ୍କର ସାରା ଅସ୍ତିତ୍ୱ ଯେମିତି ଆଉଟି ହୋଇ ତରଳିଯାଉଥାଏ, ବୋହିଯାଉଥାଏ ।

କାନ୍ଦଣାର ପ୍ରଥମ ଚୁଆରରେ ଯାହା ଅସହାୟ କରୁଣ ଜନ୍ତୁଗୁଡ଼ାଏ ପରି ସବୁ

ବୋବାଳି ଶୁଭୁଥିଲେ, ତା ଟିକିଏ ଭମିଚ୍ଛ ନ ନାହିଁ, ଆସିଲା ଏକ ସକାଳତା । ରଘୁନାଥ ଏବଂ ତା' ସ୍ତ୍ରୀ ମଣି ପିଲାଗୁଡ଼ାଙ୍କୁ ସେ ଘରୁ ଉପର ଡଉଆଡ଼େ ନେଇଆସିଲେ । ସ୍ୱଭାବ ମଧ୍ୟ ଅଳ୍ପ ବୁଝିଗଲା । ହାତପିଠିରେ ଲୁହ ପୋଛି ସେ ଟୁକୁଆକୁ କାଖେଇ ଘରକୁ ନେଇଗଲା । ତାପେ ଆରପର ଆଣୁ ଭିତରେ ମୁଣ୍ଡ ଗୁଞ୍ଜିଦେଇ ବସିଆନ୍ତି । ପିଠିର ପଞ୍ଜରା ଫୁଲି ଫୁଲି ଉଠୁଥାଏ । ରଘୁର ସାହସ ହେଉ ନାହିଁ ତାଙ୍କୁ ଡାକିବ । ଡାକିଲେ ବା ତାଙ୍କୁ ବୁଝେଇବ କ'ଣ ?

ଯାହା ତ ହେଉଚ ଶୁଣିଲା ଲୋକ ଅସମ୍ଭବ ମଣିବ । ଏକାଥରକେ ଉକାହୁକା ହେଲା ପରେ ମା' ପୁଅ ମରିଗଲେ । କାହା ତୁଣ୍ଡରୁ ଆଉ 'ଆହା' ନ ବାହାର ନାହିଁ ! ସେ ଜସ୍ମୀ ଟୋକା ମରିବ ବୋଲି ତୁଣ୍ଡ ଡାକିଲ ନାହିଁ । ଏକା ରାହା ଲଗେଇଲା, "ମୁଁ ବୋଉ ପାଖକୁ ଯିବି", "ମୁଁ ବୋଉ ପାଖେ ଶୋଇବି", "ବୋଉ ପାଖେ ଶୋଇବି ।" ତାର ପଞ୍ଚଭୂତ ଆତ୍ମା ସେଇଟା ଡାକୁଥାଏ । ସମସ୍ତେ ମନାକଲେ ତାକୁ ନେଇ ତା' ବୋଉ ପାଖେ ଶୁଆଇବାକୁ ।···ଶେଷ ଆଶା ପୂରିଯିବ, ଡୋର ଛିଣ୍ଡିଯିବ ।···ଶେଷକୁ ସେଇଆ ହେଲା । ତାକୁ ଯେମିତି ଆଣି ବୋଉ ପାଖେ ଶୁଆଇଦିଆଗଲା, ସେ ଗୋଟିଏ ହାତ ଗୋଟିଏ ଗୋଡ଼ ବୋଉ ଉପରେ ପକେଇଦେଲା—ଯେମିତି ନିଶ୍ଚିନ୍ତରେ ଶୋଇବାର ଉପକ୍ରମ କରୁଛି । ସେତେବେଳକୁ ବୋଉ ଦେହ ମଧ୍ୟ କାକର ହେଇଆସିଲାଣି । ଏତିକିବେଳେ କାହିଁ ଥିଲା କାଳନିଦ, ସମସ୍ତେ ଟିକିଏ ଲେଖାଁ ଘୁମେଇ ପଡ଼ିଲେ । ଚମକି ଉଠି ଦେଖିଲାବେଳକୁ ସବୁ ସରିଗଲାଣି । ଆଚମ୍ବିତ ମଣିବ ଲୋକ, କେମିତି ଦିହେଁ ଉକାଉକି ହେଇ ଚାଲିଗଲେ ।

ରାତି ଆଉର ଅଛି । ରଘୁନାଥର ଦି'ଟି ପିଲା ପୁଣି ଶୋଇପଡ଼ିଲେଣି । ସ୍ୱଭାବ କୋଳକୁ ଆଉଜି ଟୁକୁଆ ଘୁମଉଛି । ହାଲିଆ ହେଇଛି, ଆଉ ଟିକକୁ ବୋଧହୁଏ ଶୋଇ-ପଡ଼ିବ । ବଟ ଉପର ପିଣ୍ଡାରେ ତୁନି ହୋଇ ବସିଛି, ଘୁନିଆ ହେଲା ପରି ଗୋଟେ ଲୟରେ କୁଆଡ଼େ ଚାହିଁରହିଛି । ସ୍ୱଭାବ ଦାଣ୍ଡପିଣ୍ଡାରୁ ଆସି କହିଲା—"ସ୍ୱଭାବ, ପାଟପୁର କନେଇ-ଘର ଆସିଲେଣି ।"

ପାଞ୍ଚ ଛଅ ଜଣ ହେଇ ସେମାନେ ଆସିଥାନ୍ତି । ଅଗଣାକୁ ସିଧାସଳଖ ବାହାର ଆସିଲେ । ରଘୁ ଘର ଭିତରୁ ଆସି ଦେଖେ ତ ସେମାନେ ତୁନି ହୋଇ ଖୁସୁଖାସ ହେଉଛନ୍ତି ଅଗଣା ମଝିରେ । ତାଙ୍କୁ ଦେଖି ସେ ସବୁ ବୁଝିଗଲା । ଆଉ ସମ୍ଭାଳି ପାରିଲା ନାହିଁ; ସ୍ୱେ-ଳନା କାନ୍ଦପକେଇଲା । ସେମାନେ ତାକୁ ଘେରିଆଡ଼ୁ ଆସ୍ତୁଆସ୍ତୁ କରି ବୁଝେଇଲେ । ଜଣେ ତାଙ୍କ ଭିତରୁ ପୁରୁଖା କହିଲା, "ହେ ରଘୁ, ଏ ଅଧର୍ଯ୍ୟ ହେବା ବେଳ ନୁହେଁ, ବିଳମ୍ବ କଲେ ହବ ନାହିଁ । ଚାଲ, ଲାଗିଯାଅ, ନଇଲେ ବାସିମଡ଼ା ହେଇଯିବଟି !"

ଦାପକୁ ନିଆଁ ଖୁଣ୍ଟାଟେ ଧରି କିଏ ଯେମିତି ଚେଙ୍କିଦେଲା !! ସେ ଭୂସ୍କିନା ଉଠି ଠିଆହେଇପଡ଼ିଲେ । ମୁଣ୍ଡଟା ଝାଇଁ ଝାଇଁ ବୁଲେଇଦେଲା । ସେ କାନ୍ଥଟାକୁ ଧରି ସମ୍ଭାଳିଗଲେ, ...ଇଲେ ଗଛ କାଟିଲା ପରି ପଡ଼ିଯାଇଥାନ୍ତେ ।

"ଧ, ଧ ରଘୁ, ଥାଉ ଡେଣାଟା ଧ ।" କହି ତାଙ୍କ ଭିତରୁ ଜଣେ ଦାପକୁ ଅଗଣାକୁ

ନେଇଆସିଲେ । ଘରୁ ଚକା ଷ୍ଟୁଲ୍‌ଟା ଆଣି ତା' ଉପରେ ତାଙ୍କୁ ବସେଇଲେ । ମୁହଁକୁ ମୁଣ୍ଡକୁ ପାଣି ମାରି ମୁନ୍ଦେ ପିଆଇଦେଲେ । ଦାସେ ଆଖି ବୁଜି ଟିକେ ବସିଗଲେ । ତା'ପରେ କହିଲେ ବଡ଼ ଭଙ୍ଗା ଭଙ୍ଗା ସ୍ୱରରେ, ବଡ଼ ଆସ୍ତେ—"ମୁଁ ଜାଣେ··ସେ ମତେ ଠକିଦବ । ···ଠକିଦେଲା ଶେଷକୁ···ହିହି ।"

ଦୀର୍ଘ ନିଶ୍ୱାସଟିଏ ମାରି ଚୁପ ହୋଇ ରହିଲେ କେତେବେଳ ଯାଏଁ । ଶେଷରେ କହିଲେ, "ହଅ, ବାପା ରଘୁ, ଏଥର ସବୁ ସଜ କର । ଏତକରେ ତ ସବୁ ତା ପାଇଁ ସରିଯିବ ।" ଆଖିରୁ ଲୁହ ସେମିତି ଧାର ଧାର ହୋଇ ବୋହିଯାଉଥାଏ ।

ତା ପରେ ଲାଗିଲା ଧାଁଧପଡ଼ । ହଳଦୀ ବଟା ହବ, ନୂଆ ଲୁଗା ଆସିବ, ନୂଆ ହାଣ୍ଡି, ଘଟ, ଅଳତା, ସିନ୍ଦୂର । ଜଣେ ଡାକିଯିବ ଅଛିଅ ଭେଙ୍ଗୁରା, ଜଣେ ଆଣିବ ଖଇ, ଆଉ ଜଣେ ବାନ୍ଧିବ କୋକେଇ । ତାଙ୍କ ଭିତରେ ସେଇ ଧାଁଧପଡ଼ କାମ ଭିତରେ କଥା ପଡ଼ିଲା, ଗୋଟେ କୋକେଇ ନା ଦି'ଟା ? ଶେଷକୁ ସ୍ଥିର ହେଲା ଯେ ଗୋଟେ ଓସାରିଆ ହୋଇ ହେଲେ ଚଳିଯିବ ।

ଏମିତି ଧୂ' ଘା' ଭିତରେ ଦାସେ ପ୍ରାୟ ନିଷ୍ପ୍ରଭ ହୋଇ ବସିଥାନ୍ତି । ଆଗର କେତେ କଥାସବୁ ଚିତ୍ରପଟ ପରି ଦାସଙ୍କୁ ଦିଶିଯାଉଥାଏ । ଗୋଟି ଗୋଟି ହୋଇ ଗଣତି ହେଲା ପରି ସୁଖ-ଦୁଃଖର ଦିନଗୁଡ଼ିକ ଆଖିଆଗରେ ପହଁରିଯାଉଥାଏ । ଧାର ଧାର ହୋଇ ହାବୁକେଇ ହେଲା ପରି ଲୁହ ଝରିଯାଉଥାଏ । ହେଇ ସେଦିନ ବେଲପଣବରଣ ପଇସାରୁ ଖଣ୍ଡେ ମଠା ଟୁକୁମା'କୁ ଆଣି ଦଉଛନ୍ତି ଦାସେ । "ନାଇଁ ଆମର ଏତେ ପଇସା ଦେଇ ଶାଢ଼ି କଣା ହବ ନାଇଁ । ପନ୍ଦର ଟଙ୍କା ହେଲେ ପିଲେ ମୋର ପେଟକୁ ଖାଇଥାନ୍ତେ !···"
"ଆହେ ଚିନ୍ତନା, ଦେଖିବା କେମିତିଆ ଦିଶୁଚ ।" ଟୁକୁମା' ହସି ଦଉଚନ୍ତି, ହସ ଦିଶିଯାଉଚ··· ।

ତାହେଲେ ଏସବୁ କ'ଣ ମିଛ ?

ମଟମଟ କରି ଆଖିମଟକା ମାରି ପୁଣି ଗୁହାଁନ୍ତି ଦାସେ ।

ଟୁକୁମା'ଙ୍କ ହସ ଆଉ ଦିଶେ ନାହିଁ । ଖାଲି ଦିଶେ, ମାଳୁଅନ୍ଧାରରେ ଲଙ୍ଗଳା ଗୋଡ଼ଗୁଡ଼ାଏ ଦୁମୁଦୁମୁ ଭୁସ୍‌ଭୁସ୍ ହୋଇ ଇଆଡ଼େ ସେଆଡ଼େ ଧାଇଁଛନ୍ତି । ନାଃ ! ଟୁକୁମା'ର ସବୁ କଥା ତାହେଲେ ସରିଯାଇଛି ! ସେ ଯାହା ଦେଖୁଥିଲେ ସବୁ ସ୍ୱପ୍ନ ପରି ସରିଯାଇଛି ! ମାତ୍ର ଏଇଟାଇ ସତ, ଜୀବନଠୁଁ ମୃତ୍ୟୁଟା ବେଶି ସତ !!

ବସିରହିପାରିଲେ ନାହିଁ ଦାସେ । ଫର୍ଚ୍ଚା ବ ସେତେବେଳକୁ ହୋଇଆସିଥାଏ । ଜଣେ କିଏ ଦ-ଦ' ଗଡ଼ିଆ କରି କାଠୁଏ ହଳଦୀ ବାଟିଥାଏ । ସେ ଉଠି କାଠଆଟା ଧରି ଘରେ ପଶିଲେ । କନା ଆଡ଼େଇ ଟୁକୁମା' ଦେହଯାକ ମେଞ୍ଚା ମେଞ୍ଚା ହଳଦୀ ବୋଳି-ଦେଇଗଲେ । ନାକ ଅଗରୁ ଟୋପା ଟୋପା ଲୁହ ଥପ୍ ଥପ୍ ହୋଇ ଖସୁଥାଏ । କ'ଣ ଭାବିଲେ କେଜାଣି, ଜଙ୍ଘୀଟାକୁ ମଧ୍ୟ ହଳଦୀରେ ଗୁରୁଗୁରୁ କରିଦେଲେ । କେହି କିଛୁ କହୁ ନ ଥାନ୍ତି । ବୁଝୁଥାନ୍ତି, କ'ଣ ବା କହିବେ ! କାଠଆରେ ହଳଦୀ ଆଉ ନାହିଁ । ଅରକୁ

ଅଗ ଭୂଛା ହାତଟାକୁ ଚକରୁ କୋଳ ଆଣି ଇସ୍ପାତର ଢାଙ୍କଣ ଭୁଜ ଉପରେ ଆଉଜେଇ ଦଉଥାନ୍ତି ।

ଶେଷକୁ ଜଣେ କହିଲା, "ହଉ, ଏଥର ଏ ଅଳତାଟା ଲଗେଇଦେଲେ ହବ ।"

କିଛି ନ କହି ଦାସେ ତା' ହାତରୁ ଅଳତା ଗିନାଟା ଧରି ହାପୁରୁ ହାପୁରୁ କରି ଟୁକୁମା' ପାଦ ଦୁଇଟାକୁ ଅଳତାରେ ଧୋଇଦେଲେ । ଯାହା ଟିକଏ ବଳିଲା ତାକୁ ପାଦ ଉପରେ ଇଢ଼ାଦେଲେ । ମେଞ୍ଚାଏ ହେବ ସିନ୍ଦୂର କପାଳରେ ଲଗେଇଦେଲେ । ଗୁଣ୍ଡ ସିନ୍ଦୂରଗୁଡ଼ାକ ଝଡ଼ିଆସିଲା ଭ୍ରୂଲତା ପର୍ଯ୍ୟନ୍ତ ।

ଉତ୍ତର-ଦକ୍ଷିଣ ହୋଇ ଅଗଣାରେ କୋକେଇ ଥୁଆ ହୋଇଗଲା । "ନଅ, ଧର, ଧର, ଧର ଏଥର !' କହି ହଳଦୀ ଅଳତା ସିନ୍ଦୂର ବଳବଳ ହାତ ଆଢ଼େଇ ନେଇ ଠିଆହେଲେ ଦାସେ । ବଳବଳ ଗୃହିଁରହିଲେ । ମାଲଖଇ ଆସି ଟେକିନେଲେ ମା' ପିଲାଙ୍କୁ ।

ସବୁ ଯେମିତି ଗୋଟିକ ପରେ ଗୋଟିଏ ଯନ୍ତ୍ରଚାଳିତ ପରି ହୋଇଯାଉଛି । ପେଟ ପୋଡାହେଲା । ଖଇ ଆସିଲା । ଦେଙ୍ଗ ଗ ଆସିଲା । ଏଥର ଉଠିବା କଥା । ଦାସଙ୍କୁ କାଉଳି-ବାଉଳି ଲାଗିଲାଣି । କୋକେଇ ଉଠିଲାବେଳକୁ ଆସି ବକଳରେ ଦଣ୍ଡାଟାକୁ ଧରିପକେଇଲେ । କୋକେଇ ଯିବାରେ କିଛି କୌଣସି ଅସୁବିଧା ନାହିଁ । ଖାଲି ତାଙ୍କର ଥରିଲା ଥରିଲା ହାତଟା କ'ଣଟାଏ ଖୋଜିଲା ପରି ଯେମିତି ଦବଣ୍ଡି ଯାଉଥାଏ । ପେଟ ଭିତରଟା ସେମିତି ଗୁବଣ୍ଡି ହୋଇଯାଉଥାଏ ।

"ଯା ଲକ୍ଷ୍ମୀ ଯାଆନ୍ତାଣି !···ଘର ଶୂନ୍ୟ କରିଦେଇ ବାହାରିଯାଉଚୁ···ଯା-ଯା !"

"ଅଞ୍ଚଳ ଗୁଡ଼ ମହାବାହୁ, ଏ ଜନ୍ମେ ଭେଟ ନାହିଁ ଆଉ !"

ବଡ଼ ଧୀରେ ଧୀରେ କାନ୍ଦିଲା ପରି ଦାସେ ମନକୁ ମନ କହୁଥାନ୍ତି । କେହି ତାଙ୍କ କଥା ଶୁଣିନାହିଁ କି ବୁଝିନାହିଁ ।

ରଘୁର ବଡ଼ପୁଅ ଉଠିଛି । ତାକୁ କେଉଁଏ ଲମ୍ବ ବଳିତା ଜାଳି ଯତ୍ନରେ ଧରେଇ-ଦେଇଛନ୍ତି । ସେଇଟା ସହରରେ ରହି ବଡ଼ ସିଆଣିଆ ହୋଇଯାଇଚି । ବଡ଼ ଗରଧାରେ ସେ ଆଗେ ଆଗେ ଗ୍ଲଲୁଥାଏ । ରଘୁ ଖଇ କଉଡ଼ି ମିଶେଇ ବାଣ୍ଟି ବାଣ୍ଟି ଯାଉଥାଏ । ଭାଇଗ ଟୁକୁଆ ହାତଧରି ଗୋଟିଏ ଗୋଟିଏ ଗ୍ଲଲୁଥାଏ । ଟିକଏ ଆଗକୁ ବଟ ।

ମାଲଖଇ ଗ୍ଲଲୁଥାନ୍ତି ନୀରବରେ ।

ସବା ଆଗରେ ଡେଙ୍ଗୁରା, ସମସ୍ତଙ୍କ ପଛକୁ ଦାସେ ।

ସକାଳୁଆ କାକରଆ ପବନରେ ରଘୁର ପୁଅ ଚେଙ୍ଗା ହୋଇଯାଇଛି । ତାକୁ ଲାଗୁଛି, ଏସବୁ ଗୋଟାଏ କ'ଣ ପଟୁଆର । ସେ କାହିଁକି କେଜାଣି ହସି ହସି ଲେଟିଯାଉଚି । ପିଅ ବଳିତା ଚର୍ ଚର୍ ହେଇ ଜଳିଲାବେଳକୁ ତାକୁ ହସ ମାଡ଼ୁଚି ।

ଯାଇପଡ଼ଣାରୁ ମାଇକିନା ସବୁ କବାଟଫାଙ୍କରୁ ଦେଖୁଛନ୍ତି । ଯାକୁ ସେ ତାଙ୍କୁ ସେ ଏ ପଚରାପଚରି ହଉଛନ୍ତି—ଆହା, ଚ୍ ଚୁ କରୁଛନ୍ତି । ମଝିରେ ମଝିରେ ଦାସଙ୍କ କାନରେ

ପଡ଼ୁଛ—"ଲକ୍ଷ୍ମୀ ସାଆନ୍ତାଣୀ, ଅଦ୍ଭୁଅ ସାଆନ୍ତାଣୀ, କମିତ ହସେଇ ଖେଳେଇ ଯାଉଛୁ ଦେଖ ଲେ !"

ଆଖିରୁ ଲୁହ ଶୁଖିଆସିଲାଣି । ଦାସେ ସମ୍ଭବତ୍ତ ଚ୍ଛଲିଛନ୍ତି ।

ସେ ଜସ୍ମୀ ଟୋକା ମଧ୍ୟ ମନରେ ଅଭିମାନ ଧରି ଚ୍ଛଲିଗଲା । କେତେ ଜରି କହୁଲା, "ନନା, ମତେ ଖଣ୍ଡେ, ପିଲେ ଯେମିତ ନଉଛନ୍ତି, କନାମୁଣା କଣଦଅ—ମୁଁ ସେଥିରେ ବାନ୍ଧି ନେବ ।" ମୁଁ ଚଣ୍ଡାଲ ଆଜ କରିଦେବ କାଲି କଣଦେବ ବୋଲି ତାକୁ ଠକିଲି । ଶେଷରେ ସେ ଚ୍ଛଲିଗଲା ।···କେଡ଼େ ଗୁଣବନ୍ତ ପୁଅ ମୋର, କୁଳକୁ ଭଗୀରଥ ଜନ୍ମହୋଇଥିଲା । ଏଡ଼େ ଭାଗ୍ୟ କପାଳ ତ ନାହାଁ ନାହିଁ—ଗଲା ଚ୍ଛଲି !! ସେ କ'ଣ ଏ ଗରିବ ଘରେ ସ୍ଥାନମାନ ଆ ହେଇ ବଞ୍ଚିଥାନ୍ତା ?

ବୋଉ ଚୋରି କେତେ ଆଡ଼ୁ ଖର୍ଚ୍ଚ ଚ୍ଛପିଚ୍ଛପି ଗୁଡ଼ ଚ୍ଛଉଳ କିଣି ରଖିଥିଲା, ଏ ବର୍ଷ ବୈଶାଖରେ ତୋର ପଇତା ଦିଏ ପକେଇବ !···ଆହା, ବାପାରେ, ବଞ୍ଚିଥିଲେ କେତେବେଳେ ପାଣି ପାଞ୍ଜି ଏ ଦେଇଥାନ୍ତୁ—ମୁଁ ଫେର୍ ଏ କଥା ଦେଖିବାକୁ ଥିଲି !!

ଚ୍ଛଦାତକୁ ଝୁନୁମା' ପାଦ ପାଖକୁ ଶଣା କାନ ପରି ଦ'ଟି ସରୁ ସରୁ ପାଦ ନୁଡ଼ୁ-ନୁଡ଼ୁ ହଉଥାଏ ।

ହାଡ଼ ଫଟେଇ ପୁଣି ଲୁହ ଝରିଲା । ଆଗରେ ଆଉ କୋକେଇ ଦେଖାଗଲା ନାହିଁ । ଖାଲି ଧଡ଼ସରେ ଆଗକୁ ଚ୍ଛଲିଥାନ୍ତି ଦାସେ ।

ପଛକୁ ଲେଉଟି ରଘୁ ଭାଇଗକୁ କହିଲା—"ରୁ ପିଲାଙ୍କୁ ନେଇ ଏଇଠୁ ଫେରିଯା ।" ଭାଇଗ ଝୁନୁଆ ହାତ ଧରିଲା । ବଟ ରଘୁ-ପୁଅର ହାତ ଧରିଲା । କାନ୍ଦିଲାଆ କାନ୍ଦିଲାଆ ଝାପ୍‌ସା ଝାପ୍‌ସା ହୋଇ ଅବୁଝା ମୁହଁଗୁଡ଼ାଏ ଦାସଙ୍କ ପାଖକୁ ଲାଗି ପଛେଇଗଲେ ।

ଝୁନୁଆଟା କାନ୍ଦୁ କ'ଣ ବୁଝୁଥାଏ କେଜାଣି, ଲେଉଟି ଲେଉଟି ଚ୍ଛହୁଁଥାଏ । ତା'ର ଛଳଛଳ ଆଖି ଦ'ଟାରେ ଯେମିତ ତାର ପଞ୍ଚପ୍ରାଣ କାନ୍ଦୁଛି ! ଚ୍ଛରି ପାହୁଣ୍ଡ ଚ୍ଛଲିଛି କ ନାହିଁ, ଠିଆ ହୋଇ "ବୋଉ···ଉ" ବୋଲି ଚ୍ଛହାଁ ଟେକି କାନ୍ଦଦେଲା । ନିଶ୍ଚୟ ମାଆ-ଛେଉଣ୍ଡ କୋଡ଼ପୋଛାଟାର କନକନିଆ କାନ୍ଦ !!!

ବୋଉ···ଉ-ଉ-ଉ !!!

ଉଃ !!!

ଆକାଶଟା କ୍ଷଣକ ପାଇଁ ସୋଷ ସୋଷ ଚରୁଡ଼ା ଚରୁଡ଼ା ହୋଇଗଲା । ପାଦତଳୁ କୁହୁଳ କୁହୁଳ ଭୂଇଁଟା ଧସି ଚ୍ଛଲିଗଲା କାହିଁ ତଳକୁ । ଏଡ଼େ ବଡ଼ ଡିମା ପଥରଟାଏ ଦାସଙ୍କ ପେଟ ଭିତରୁ ଫୁଲି ଫୁଲି ଉଠିଆସିଲା ତୋଟି ପାଖକୁ । ଆଉ ଦମ୍ଭ ନାହିଁ ସମ୍ଭାଳିବାକୁ, ଫାଟିଯିବେ—ଧସିଯିବେ ଏଥର !! ମାଡ ପଥର ପରି ଠିଆହେଉଥାନ୍ତି ଦାସେ ।

କାଉଁ କାଉଁ ଶୀତରେ କୁକୁଡ଼ିହୁଅଟିଏ ପରି ଝୁନୁଆ ଭାଇଗ କାନ୍ଧରେ ମୁଣ୍ଡ ଦେଇ ଠକ୍ ଠକ ଥରୁଥାଏ, ଆଉ ଯେମିତ ବୋବଉଥାଏ । ଭାଇଗ ଦୁରେଇଯାଉଥାଏ । ଝର୍ ଝର୍ ହୋଇ ପଥର ତରଳ ଲୁହ ଝରିଗଲା । ପ୍ରାଣବାୟୁ ତୋଟି ପର୍ଯ୍ୟନ୍ତ ଉଠିଆସି ପୁଣି ତଳକୁ

ଖସିଗଲା । କ'ଣ ଟିକଏ ପୁଟ୍ ପୁଟ୍ ହୋଇ ଦାସଙ୍କ ଅଣଲା ଅରଲା ଲୁଣିଆ ଓଠରେ ଲାଖିଗଲା । ଶୁଭୁଥିଲେ ଶୁଭୁଥାନ୍ତା, "ଆଉ ଖୋଜଲେ କାହିଁ ପାଇବୁ, ତୋ ପାଇଁ ଆଜନ୍ମ ବୋଉ-ଡାକ ସରିଗଲା ।"

ମୁହଁ ଫେରିଲା । କୋକେଇ ଆଗେଇଲା ।

ଲୋକ ଆଗରୁ ଯାଇ ନଈବାଲିରେ କାଠ ସଜାଡ଼ି ରଖିଦେଇଥିଲେ । ପାଉଁଶମିଶା ଶୁଖିଲା ବାଲି ମଣିଷ, ବାଲୁଆ ପାହୁଲ ପଡ଼ି ହୁଡ଼ାହୁଡ଼ା ହୋଇଥାଏ । ଏଠି ସେଠି ଦରପୋଡ଼ା ଦଉଡ଼ିଆ ଖଟ ଖଣ୍ଡେ, ଛେଲା ଛେଲା ହୋଇ ଗୋଟେ ଦି'ଟା ମାଟିହାଣ୍ଡି, ଚରାଚର ହୋଇ ଖଣ୍ଡେ କୁଳା, ଘୁରୁ ଛ' ଖଣ୍ଡ ପୋଡ଼ଖଣ୍ଡା ।

ହୁଡ଼ା ଉପରେ ବୁଢ଼ିଆ ପୁରୁଣା ଆମ୍ବଗଛ, ଅଧେ ମରି ଶୁଖିଗଲାଣି ।

ପଧାନ ଘର ଇଟାଗଦାରେ ଆଉ ଇଟା ନାହିଁ । ଖାଲି ଭଙ୍ଗା ଗୁଣ୍ଡ ଇଟା, ଉଇମାଟି ପାଉଁଶ ଆଉ ଭେଜବାଇଗଣର ଗୋଟାଏ ଅପଲକ୍ଷୀ ବୁଦା ।

ଇଆଡ଼େ ଅନ୍ତ୍ୟେଷ୍ଟି କ୍ରିୟା ଗୋଟିକ ପରେ ଗୋଟିଏ ଚାଲିଥାଏ । ଦାସେ ସ୍ୱପ୍ନ ଦେଖିଲା ପରି ଯେମିତି ଝାପି ଝାପି ସବୁ କରିଯାଉଥାନ୍ତି । ଦେହଟା କଳାକାଠ ପଡ଼ିଯାଇଛି । ଇସ୍, ମଣିଷ ପୁଣି ଏମିତି ଅଲକ୍ଷଣିଆ ଦିଶେ ! ଦେହରେ ଶିରା ନାହିଁ । ମୁହଁରେ ବୋଝେ ଦାଢ଼ି । ଆଖିଯୋଡ଼ାକ ଭିତରେ ପଶିଯାଇଛି । ଦି'ପୁରିଆ ମଣିଷ ବୋଲି ଟିକଏ ଗୁହିଁ ହଉଛି ସିନା, ନ ହେଲେ କେମିତିଆ ବୁହିଁ ହେଲା ପରି ଲୋକଟା ଝିଙ୍କିଲିଯାଇଛି ।

'ହରେ' 'ରାମ' 'କୃଷ୍ଣ' କାହାକୁ ପଢେ ବୋଲି ସେ ପାଟି ଫିଟଉ ନାହାନ୍ତି । କିଏ କ'ଣ ପଚାରିଲେ ଖାଲି ବଲବଲ ତା' ମୁହଁକୁ ଗୁହିଁଛନ୍ତି, କିଛି ବୁଝିପାରୁନାହାନ୍ତି । ମଝିରେ ମଝିକେ ଯେମିତି ତାଙ୍କ ଧ୍ୟାନ ଭାଙ୍ଗିଯାଉଛି ।

"ରହ, ରହ, ଏ ପିଲାକୁ ନେଇ ମା' ପାଖେ ଲଗେଇ ଶୁଆଇଦେବା ।"

ମୁହୂର୍ତ୍ତିକ ପାଇଁ ଦାସଙ୍କ ନିଦ ଭାଙ୍ଗିଯାଏ । ସେ ସେତିକରେ କଥାଟାର ଅର୍ଥ ବୁଝି-ଯାଆନ୍ତି । ପୁଣି ତାଙ୍କୁ ଲାଗେ ସେ ସ୍ୱପ୍ନରେ ପହଁରୁଛନ୍ତି ।

"ଆରେ, ହାତରୁ ପୁଦଶାବ୍ରତଟା ଫିଙ୍ଗେଇଦିଅ, ପୋଡ଼ିଯିବ ଯେ !" ମଟମଟ କରି ଦାସେ ପୁଣି ଅରେ ଗୁହିଁଦିଅନ୍ତି । କ୍ଷଣକେ ପରେ ପୁଣି ଯେମିତି ଦୁଇଟା ଦୃଷ୍ଟିହୀନ କାଚ ଅଖି ଶୂନ୍ୟକୁ ଗୁହିଁ ରହିଯାଏ ।

ଚିତା ହୁତ୍ ହୁତ୍ ହୋଇ ଜଳୁଥାଏ ।—ଦିନବେଳେ ନିଆଁଟା ମଧ୍ୟ କେଡ଼େ ହତଶ୍ରୀ, କେମିତି ଅଲକ୍ଷଣିଆ ଦେଖାଯାଏ !

ସମସ୍ତଙ୍କ ଦେହରୁ ଝାଳ ଫିଟିପଡ଼ୁଛି । ରଘୁ ମଧ୍ୟ ଦୋହଲିଗଲାଣି । ସେ ବା ତ ହେଇ କାଲିକା ପିଲା—ଏସବୁ କାମ କିଏ, ସେ କିଏ ?

ମାଲସ୍ତ୍ରାଇ ଭିତରୁ ଯେ କକେଇଲେଖା ହେବେ ଆସି ରଘୁକୁ କହିଲେ, "ଆରେ ରଘୁ, ଏଇନାଙ୍କୁ ନେଇ ତୁ ଏଥର ଘରକୁ ବାହାରିଯା । ଆମେ ତ ଅଛୁ । ସବୁ ସାରି ଗାଧୁଆ-ପାଧୁଆ କରି ଆମେ ଆସୁଛୁ । ତାଙ୍କ ମନ ଭିତରେ କୋହ ପଶିଯାଇଛି । କେମିତି

ମୂକ ହୋଇ ବସିଛନ୍ତି ଦେଖୁନୁ ! ତାଙ୍କୁ ଘରକୁ ନେଇ ପିତା ଟିକଏ ଖୁଆଇଦବୁ, ଟିକଏ ବୁଝେଇବୁ, ଯା !"

"ନନା, ଚାଲ ଘରକୁ ଯିବା ।"—ସେ ଆଶା କରିଥିଲା ଦାସେ ଆଗ ପର ତା' ମୁହଁକୁ ଖାଲି ଚାହିଁବେ । ମାତ୍ର ନଆଁ ଉପରୁ ଆଖି ଟେକି ଦାସେ ତାକୁ ଚାହିଁ ପରିଷ୍କାର ଗଳାରେ କହିଲେ, "ତୁ ଯା, ମୁଁ ଏଠି ଟିକଏ ବସିଛି । ସବୁ କାମ ସରୁ, ମୁଁ ଯାଉଛି ଯେ !···ମୋ ଦୋକାନଟା ଡିବାଟା କାହିଁ କରେ ପୁଅ ?" ଉତ୍ତର ପାଇଲେ ନାହିଁ ।

ପୁରିଆ ଦାସଙ୍କ ଭାଇଲେଖା ହେବ । ସେ ଆଶ୍ଚର୍ଯ୍ୟ ହେଲା ପରି ଶୁଣୁଥାଏ । ଅଧିପୋଡ଼ା ଦୋକାନ ଡିବାଟାକୁ ଦାସଙ୍କୁ ବଢ଼େଇଦେଲା । ଦାସେ ଲେଡ଼କୁ ଦୋକାନ ଝାଡ଼ୁଥାନ୍ତି, ପୁରିଆ କହିଲା, "ଭାଗ୍ୟରେ ଯାହା ଗାର କାଟି ଲେଖିଦେଇଚି ବିଧାତା, ତାକୁ ତ ଅବଶ୍ୟ ଭୋଗିବା—ଆମେ କ'ଣ ଆଉ କଏ କ'ଣ !! ସେଇ ଦେଇଥିଲା, ସେ ଏବେ ନେଇଗଲା—ଏଥିରେ ଆଉ ମନରେ ଦୁଃଖ କଲେ କ'ଣ ହବ ? ଭାଗ୍ୟବନ୍ତୀଆଣୀ, ପୁଅ ଘଇତା ବସେଇ ଚାଲିଗଲା । ଆଉ ସେ ଟୋକାଟାର ତ ଭାଗ୍ୟରେ ନାହିଁ, ବଞ୍ଚିବ, ସଂସାର-ଭୋଗ କରିବ ବୋଲି । ତା' ମାଣକ ଏଥକରେ ପୂରିଗଲା, ସେ ଚାଲିଗଲା ।"

ଦାସେ କିଛି କହିଲେ ନାହିଁ; ମାତ୍ର ମୁହଁଟା କେମିତି ଟିକଏ ଅଳ୍ପ ହସିଲା ପରି ଦେଖାଗଲା । ଦୋକାନ ଲେଡ଼ଟା ପାଟିକି ପକେଇ ସେ କେବଳ ମୁଣ୍ଡ ନାଡ଼ି ଜଣେଇଲେ ଯେ ସେ ମଧ୍ୟ କିଛି କିଛି ସେଇଆ ବୁଝିଛନ୍ତି ।

ଝଡ଼-ତୋଫାନ ପରେ ଭଙ୍ଗାରୁଜା ଡାଳ-କୁଟ ଭିତରେ ଭୁଇଁ ଯେମିତି କାଦୁଅ-ମାଦୁଅ ହୋଇ ପଡ଼ିରହେ, ପତ୍ର ଉପରେ ଖରା ଝିର୍ ଝିର୍ ପଡ଼ୁଥାଏ ମାତ୍ର ଭିତରେ ଭିତରେ ଓଦା ମଲା ଡାଳରୁ କ୍ଷୀର ଝରୁଥାଏ, ଟପ୍ ଟପ୍ ପାଣି ଝରୁଥାଏ, ମଝିରେ ମଝିରେ ଗୁଣ୍ଡୁଚିଟାଏ ଟିକଏ ଦୌଡ଼ଯାଏ, ଚଟିଆଟିଏ ଫୁର୍ ଫୁର୍ ହୋଇ ଉଡ଼ି ପୁଣି ଓହ୍ଲେଇ ଆସେ -ସେମିତି ଦାସଙ୍କ ମୁହଁଟି, ସେମିତି ଖାଲି ଖାଲି, ଶୂନ୍‌ଶାନ୍, ଭଙ୍ଗାରୁଜା ହାଲିଆ !!

"ତା ହେଲେ ନନା, ମୁଁ ଘରକୁ ଯାଉଚି ।"

"ଯିବୁ ? ହଉ ଯା ! ଆରେ, ତୁ ଆଉରି ଯାଇନାହୁଁ, ଯା' ଯା' । ମୁଁ ଏଇଠି ଟିକଏ ବସିଛି ।"

ଚିତା ଲିଭିଆସୁଛି । ତାକୁ ଏକାଲୟରେ ଚାହିଁ ଦାସେ ବସିଛନ୍ତି । ଦୁଇଟି ଛୋଟ ବଡ଼ ଗୁଣ୍ଡ ଆସ୍ତେ ଆସ୍ତେ ପୋଡ଼ି ପାଉଁଶ ହୋଇଯାଉଛି । ଦାସେ କିଛି କେମିତି ହଜିଲା ପରି ତାକୁ କେବଳ ଚାହିଁ ବସିଥାନ୍ତି ।

"ଭାଇନା, ବେଳ ଗଡ଼ିଲା । ଚାଲ, ଉଠ, ପଛେ ଫେର୍ ଆମେ ଆସି ହାଡ଼ ଶୀତଳେଇ ଦେବା । ଚାଲ, ଏଥିରେ ଗୁଡ଼େ ଏମିତି ଆଉ ଭାବନା କର ନାହିଁ । ଜାଣିବା ଶୁଣିବା ଲୋକ ତମେ, ଉଠିବଟି, ଚାଲ ।"

ନିଶ୍ୱାସ ମାରି ଦାସେ ଉଠିଲେ । ବାଟଯାକ ତାଙ୍କ ଗୃହପଟ୍ଟ କ'ଣ ସବୁ ଗଜର ଗଜର ହେଉଥାନ୍ତି । କିନ୍ତୁ ଦାସେ ପାଟି ଫିଟେଇ ନାହାନ୍ତି । ଯେମିତି ଆସି ଘରେ ପହଞ୍ଚିଲେ ।

ଦାଣ୍ଡଦୁଆରେ ଘଟ ପୋତା ହୋଇଥାଏ । ପିଣ୍ଡାରେ ରଘୁ ଠିଆହୋଇଥାଏ—ହତଶ୍ରୀ, ଅଲକ୍ଷଣିଆ, ଛେଉଣ୍ଡ ଟୋକାଟା । କ୍ଷୌର ପରେ ତା' ମୁହଁକୁ ଆଉ ଚାହିଁ ହେଉନାହିଁ ।

ହେଲେ ଏସବୁର ଅର୍ଥ ଦାସଙ୍କୁ ଅଧାଅଧି ବୁଝାପଡ଼ୁନାହିଁ । ଜୀବନର ସବୁ ଜିନିଷ ଉପରେ ଯେମିତି ଚତାର ଗ୍ରାଇ ପଡ଼ି ସେଗୁଡ଼ାକ କୁହୁଳିଆ, ମଇଳିଆ ଦେଖାଯାଉଛି । ଏମିତି ବୋଧେ ଯାହା କିଛି ଘଟିଗଲେ ମଧ୍ୟ ଦାସଙ୍କର କିଛି ଯାଏଆସେନା । ଟୁକୁମା' ଆଉ ଜସ୍ମୀ ସାଙ୍ଗରେ ସଂସାରର ବଡ଼ ଭାଗ ମୂଲ୍ୟ ମଧ୍ୟ ଜଳିଯାଇଛି । ଯେ ମରିଗଲେ ତାଙ୍କ ପାଇଁ ଆଉ କୋହ ଉଠୁନାହିଁ, ଯେ ବଞ୍ଚିଗଲେ ତାଙ୍କ ପ୍ରତି ମୋହ ମଧ୍ୟ ହୁଗୁଳିଯାଇଛି ।

ସଂସ୍କାରରୁ ଫେରିଥିବା ମାଲଭାଇଙ୍କୁ ରଘୁ ନୂଆ ପଇତା, ତେଲ ଆଦି ଦଉଚି, ସେମାନେ ଗାଧେଇଯିବେ । କ'ଣ ତାଙ୍କ ଭିତରେ କଥା ଆଗରୁ ଚାଲିଥିବ, ମଝିରୁ କିଛି ଦାସଙ୍କ କାନରେ ପଡ଼ିଗଲା । ରଘୁ କହୁଚି, "ନା, ଏଠି ଆଉ କାହିଁକି ରହିବା ? ଭାଇଗ ପାଇଁ ମଧ୍ୟ ସେଇଠି ଖଣ୍ଡେ କାମ ଯୋଗାଡ଼ କରିଛି, ସମସ୍ତେ ମଦନପୁର ପଳେଇବୁ । ଆଉ···ଏ ଘର କଥା ଦେଖିବା, ଯାହା ହେଲେ ବ୍ୟବସ୍ଥା କରିବା ।"

ଦାସେ ଶୁଣିଲେ ।···କାହିଁ କୋଉ ଦୂରରୁ ଯେମିତି ସେ ଏସବୁ ଦେଖୁଛନ୍ତି, ଶୁଣୁଛନ୍ତି । କିଛି କହିଲେ ନାହିଁ । ପିଣ୍ଡାରେ କାନ୍ଥକୁ ଲାଗି ବସିପଡ଼ିଲେ ।

"ହଇରେ ବଟ, ମୋ ଦୋକତା ଡିବାଟା ଟିକିଏ ଆଣିବୁ କିରେ !"

"ବଟ ଶୋଇଚି ନନା !" କହି ଭାଇଗ ସେ ଘରୁ ଡିବାଟାଏ ଆଣି ପହଞ୍ଚିଲା ।

"ଭାଇନା ଆସି କେତେ ଖୋଜିଲେ ମିଳିଲା ନାହିଁ, ଏଇ ବୋଉର ଗୁଣ୍ଡି ଡବାଟା ମିଳିଲା, ନବ ?"

ହାବୁକାଏ କୋହ କଣ୍ଠ ପର୍ଯ୍ୟନ୍ତ ଉଠିଆସିଲା । ବଡ଼ କଷ୍ଟରେ ଦାସେ ସମ୍ଭାଳି ନେଲେ । ଆଖି ଛଳଛଳ କରି ତଳକୁ ମୁଣ୍ଡ ନୁଆଁଇନେଲେ ।

ନୀରବରେ ଭାଇଗ ମୁହଁକୁ ନ ଚାହିଁ ବଢ଼େଇଦେଲେ ହାତଟା ।

# ତୋ ମାସ୍ତ୍ରବଳେ ଆତଯାତ

ଗାଁ ଗ୍ରୁତ୍ ମଦନପୁରକୁ ଆସିବାର ଆସି ମାସେହେଇଗଲା । ଦାସେ ନୂଆ କରି ଦାଣ୍ଡକୁ ବାହାରିବାର ଉପକ୍ରମ କରୁଥିବାର ଦେଖି ରଘୁ ଖୁସି ହୋଇ ପଚାରିଲା— "କ'ଣ କୁଆଡ଼େ ମନ୍ଦିରକୁ ଯିବ କି ନନା ?"

ରଘୁ ଯେଉଁ ଘରେ ରହେ ସ୍ଲେଟ ହେଲେ ମଧ୍ୟ ବାରିଆଡ଼େ ଖଣ୍ଡେ କୂଅ । ନିତି ସକାଳୁ ଦାସେ ସେଇଠି ଟେକାପାଣି ମୁନ୍ଦାକରେ ଗାଧୋଇ ଘରେ ବସି ପ୍ରାୟ ପୂଜା-ପାଠ କରୁଥାନ୍ତି । କଥା କହିବା ତ ମୂଳରୁ ତାଙ୍କର ସେତେ ଅଭ୍ୟାସ ନାହିଁ, ଏବେ ତା' ମଧ୍ୟ କମିଯାଇଛି । ହାନରେ କି ଲାଭରେ ପଦେ ମୁହଁ ଫିଟେଇବାକୁ ନାହାନ୍ତି ।

ତାଙ୍କ ମନ ବଦଳେଇବାକୁ ରଘୁ ଥରେ ଥରେ ତାଙ୍କୁ ବଜାର ପଠାଇ ଦେଖିଛି ଯେ ଦାସଙ୍କୁ ତାହା କେଜାଣି କାହିଁକି ଆହୁରି ବେଶି କଷ୍ଟ ଦେଉଛି । ମାତ୍ର ମନକଷ୍ଟରେ ଦାସେ ଧନେ ହେଲେ ଘୁକୁଘୁକୁ ହେଇ କାନ୍ଦ ନାହାନ୍ତି, ଖାଲି ଉଦାସିଆଟା ଦେଖା-ଯାଆନ୍ତି । ପଦେ କଥାକୁ ଦୁଇ ଥର ନ କହିଲେ ମନୋଯୋଗ ଦେଇପାରୁନାହାନ୍ତି । କଥା କହୁଛନ୍ତି ତ ସେଥିରେ ସରଗ ନାହିଁ । ଟିକିଏ ବୋଲି ମମତା ନାହିଁ । କାହିଁ କେଉଁ ରାଜ୍ୟରେ ଥିଲା ପରି ଘଡ଼ିକେ ପହରକେ ଉତ୍ତର ଦେଉଛନ୍ତି । ଖାଇବାକୁ ଦେଲେ ହଁ, ନ ଦେଲେ ହଁ । ପିତାଖଣ୍ଡ କରି ହେଇଥିଲେ ହଁ, ନହେଇଥିଲେ ହଁ । କୌଣସି କଥାରେ ତାଙ୍କର ଆଉ ମନ ଧରୁନାହିଁ । ମଝିରେ ମଝିରେ ଟୁକୁଆ ଖେଳୁଥିଲେ ତାକୁ ଅନେକ ସମୟ ଧରି ଚାହିଁରହନ୍ତି । ସେ ଟୋକା ଥାଏ ପାଇପିଲାଙ୍କ ମେଳରେ । ଘରେ ମଧ୍ୟ ଭାଇନା ଭାଉଜର ସ୍ନେହ ପାଇ ଆଦରିଗଲାଣି । ଖେଳ ଲହସରେ ସେ କେତେବେଳେ ସେଇଠୁ ପଳାଏ । ଗଲାବେଳେ କେମିତି ତରଳ ତରଳ ଆଖିରେ ଦାସଙ୍କୁ ଥରେ ଚାହେଁ । ମାତ୍ର ଦାସେ ଏକଲୟରେ, ସେ ଯେଉଁଠି ଖେଳୁଥିଲା ସେଇଠିକି ଚାହିଁ କାଠପରି ଠିଆହୋଇ ରହିଥାନ୍ତି । କେତେବେଳକେ ଚମକିଲା ପରି ଚାରିଆଡ଼କୁ ବଲବଲ ଚାହିଁ ଲୁଚେଇ କରି ଦୀର୍ଘନିଶ୍ୱାସଟିଏ ମାରି ଚାଲିଯାନ୍ତି ।

ସେଦିନ ସକାଳୁ ଗାଧୋଇ ଜାଫଡ଼ା-ମଡ଼ା ଧୂଆ ଗାମୁଛା ପିନ୍ଧି ଦଉଁ ଥାଳରେ ଗଣ୍ଡେ ବାଡ଼ିରୁ ଦୁଦୁରା ଫୁଲ ଧରି ଧବଳେଶ୍ୱରଙ୍କ ପାଖକୁ ଯିବାକୁ ମନସ୍ଥ କରିଛନ୍ତି । ରଘୁ ଆସି ପଚାରିଲା, "କ'ଣ କୁଆଡ଼େ ମନ୍ଦିରକୁ ଯିବ କି ନନା !"

ଦାସେ ପୁଅ ମୁହଁକୁ ଚାହିଁଲେ । ଅଳ୍ପ ହସି କହିଲେ, "ହଁ !"

ସେ ହସ ଯେଡ଼େ ଶୁଖିଲା ହେଉ ପଛେ, ରଘୁକୁ ଭାରି ଭଲ ଲାଗିଲା । "ଆସୁ ଆସୁ ଖରା ହବ ନନା, ମୋ ଛତାଟା ନେଇଯାଅ ।"

ରଘୁ ସେତେବେଳକୁ ଆଉର ଗାଧୋଇ ନାହିଁ । ଛତାଟା ଆଣି କାନ୍ଧକୁ ଡେଙ୍ଗେଦେଲା ।

ଦାସେ ନୀରବରେ ତାକୁ କାଖରେ ଜାକି ବାଁ ହାତରେ ପୁଞ୍ଜାଥାଳି, ଡାହାଣ ହାତରେ ବାଡ଼ି ଧରି ଦାଣ୍ଡକୁ ବାହାରିଲେ । ତାଙ୍କ ପଛେ ପଛେ ରଘୁ, ତା' ପଛକୁ ତା' ସ୍ତ୍ରୀ, ବଡ଼, ଝିଅ ଆଉ ପିଲେ ସମସ୍ତେ ଶୂନତାକ ଦାଣ୍ଡଦୁଆରମୁହଁ ପର୍ଯ୍ୟନ୍ତ ଯାଇ ଠିଆ-ହୋଇ ଦେଖିଲେ । ଅଳ୍ପ ତଳକୁ ମୁଣ୍ଡ ପୋତିଲାପରି ଦାସେ ଦୂରେଇଯାଉଛନ୍ତି । ସଜାଳୁଆ ଖରା ପିତଳ ଥାଳି ମଝିରେ ପଡ଼ି ପୁନାପରି ଦାଉ ଦାଉ କରୁଛି । ଦାସେ ଦୂରେଇ-ଯାଉଛନ୍ତି । ରଘୁ ବୁଲିପଡ଼ି ଦେଖିଲା, ତା' ପଛରେ ସମସ୍ତେ ଠିଆହୋଇଛନ୍ତି । ସେ ସବୁ ବୁଝିଲା, ମାତ୍ର ଟିକିଏ ମୁରବିପଣିଆ ଦେଖାଇ କହିଲା, "କ'ଣ କରୁଚ ଏଠି ସବୁ ? ଯା, ଘରକୁ ଯା' ।"

ମାତ୍ର ସେ ନିଜେ କାହିଁକି ଦାନ୍ତକାଠିଟା ପାଟିରେ ପୁରେଇ ଦାଣ୍ଡଦୁଆରକୁ ଚାଲି ଆସିଥିଲା ।

ଦାସେ ଗୋଟିଏ ଗୋଟିଏ ଚାଲିଛନ୍ତି । ବୋଧହୁଏ ଠିକ୍ ରାସ୍ତାରେ ଚାଲିଛନ୍ତି । ବୋଧହୁଏ ଏଇଆ ମଧ୍ୟ ଭାବୁଛନ୍ତି—'ଦେଖିଲେ ଶତପଥୀ ମହାଶୟଙ୍କ ପତ୍ନୀଶବ, ଏସବୁ କଅଣ ? ସଂସାରଟା କ'ଣ ତା'ହେଲେ ଏଇଆ ?···ସେ ତ ଚାଲିଗଲା । ସେଥିପାଇଁ ଯାହା କଷ୍ଟ ଥିଲା, ସେ ବି ମୋର ଗଲାଣି ନା କଣ ! ତେବେ ଜୀବନରୁ ସାର ନିଗିଡ଼ିଗଲା ପରି କାହିଁକି ଲାଗୁଛି ! କେତେ ଲୋକଙ୍କର ତ ଫେର୍ ଏମିତି ହେଉଥିବ ! ବାକି ଯେ ରହିଗଲେ ତାଙ୍କ୍ର ଯେନ ସେ ଫେର୍ କେମିତି ସମ୍ଭାଳୁଛନ୍ତି ? ଆଉ ଅରେ ସେଥିରେ ପଶିବାକୁ ତାଙ୍କ ମନ ବଳୁଛି ? ବଳୁ ନ ବଳୁ କାମ ତ ଚଳେଇବାକୁ ହେବ ! ଝିଅଟା ସିନା ଖଣ୍ଡେ ଘରକଣ ପାଇଗଲା; ଆଉ ଦ'ଟା ତ ଫେର୍ ମଣିଷ ହେବେ ! ଆଉ କିଛି ନ ହେଉ ମା'ଖିଆ ପିଲା ଯୋଡ଼ିକୁ କୋଳ ଉଷୁମ ଦେଇ ବଢ଼େଇଲେ ତ ପୁଣ୍ୟ ଟିକିଏ ହବ । ତାକୁ ତ ଫେର୍ ମୁଁ ଆସ୍ତାରୁ ଜାତ କରିଛି । କିନ୍ତୁ କାହିଁକି ଜମା ମନ ଧରୁନାହିଁ ? ମଝିରେ ମଝିରେ ସେ ଟୁକୁଆଟାକୁ ଦେଖିଲେ ମନ ଘାଣ୍ଟି ନ ହେଉଚ ବୋଲି ନାହିଁ । ମାତ୍ର ପଚେଇଗଲା ପରି ପିଲାଟାକୁ ପାଖକୁ ନବାକୁ ମନ ବଳୁନାହିଁ କାହିଁକି ? ତା'ର ମଧ୍ୟ ଦେଖୁଛି ମନ ନାହିଁ ମୋ ପାଖକୁ ଆସିବାକୁ । ସେ ବୋହୂ ପିଲାଟାକୁ ସେ ଆଦରେଇଲାଣି । ନିଜର ହୋଇ କେହି ରହିଲେ ନାହିଁ, ଲକ୍ଷ୍ୟ ବୋଲି କିଛି ରହିଲା ନାହିଁ । ଖାଲି ହାରିପାଇଁ ଲାଗିଲାଣି । ଆଉ ବୋଧେ ବେଶି ଦିନ ନୁହେଁ । ଜୀବନଟା ଯେତେବେଳେ ସାରଶୂନ୍ୟ, ଭେଳଚଡ଼ା ହୋଇ ପଡ଼ିରହେ, ଆଉ କ'ଣ ବଞ୍ଚିହୁଏ, ନା ବଞ୍ଚିଲେ କିଛି ତା'ର ମୂଲ୍ୟ ଅଛି ? ଏମିତି ଅଘଟନକ ବିପଦ ଘୋଟିଆସିବ ବୋଲି ମୁଁ କ'ଣ ଜାଣିଥିଲି ? କସିକି ଠେଲି ଦୟା ନାହିଁ ହରି ! ଯେ ଓଳିଏ ଖାଇଲେ ଆର ଓଳି ଉପାସ ରହେ, ଯେ ଜୀବନର ସ୍ୱର ତଳେ ଲଇଁଯାଇଛି, ହାରିଯାଇଛି, ତା ଉପରେ କୋରଡ଼ା ମାରିବାକୁ ତୁମର ଟିକେ ହେଲେ ଦୟା ସମ୍ଭବୁ ନାହିଁ ? ତମ ପେଟ ଭିତରେ ଏତେ ମାୟା, ଏତେ କପଟ ବୋଲି ତ ମୁଁ ଜାଣିନଥିଲି !

ମନ୍ଦିର ପାଖେଇ ଆସିଲାଣି । ସକାଳୁ ସକାଳୁ ଦୁଇ ଚାରିଟା ଲୋକ କ'ଣ ସେବାଟେ ଯା' ଆସ କରୁଛନ୍ତି । ଦାସେ ଦେଖିଲେ, ପାଟମାଳୀ ଟେଙ୍ଗେଇ ଟେଙ୍ଗେଇ ପୋଖରୀ ଆଡ଼େ ଆସୁଛି । ଆଗ କଥା ସବୁ ମନେପଡ଼ିଗଲା । ଅତି ପରିଚିତ ଜାଗା, ପରିଚିତ ଲୋକଟା ମଧ୍ୟ । କାକରଆ, କାକରଆ ସ୍ନିଗ୍ଧ ପାହାନ୍ତିଆ ପବନ ପରି ମନଟାକୁ ଟିକିଏ ଚେଙ୍ଗା କରିଦେଲା ।

କ'ଣ ପାଟମାଳୀକୁ ଆଉ ଦିଶୁନାହିଁ କି ? ସେ ତ କ'ଣ ଦାସଙ୍କୁ ଜମା ଚିହ୍ନି ପାରୁନାହିଁ !···ନା ଦୋ-ଦୋ ଚିହ୍ନା ହେଉଚି ?

ଗାଲରେ ହାତଟାଏ ମାରି ପାଟମାଳୀ କହିଲା, "ଆଜ୍ଞା, ଦାସେ ଆପଣେ ! ଓହୋ, କ'ଣ ହେଇଯାଇଚନ୍ତି ଆପଣ ? ଆଗ ଦେହରୁ ଆଉ ଭାଗେ ବୋଲି ନାହିଁ । ଆହା, କେଡ଼େ ମଣିଷ, ଦେଖିଲେ ଆଉ ଚିହ୍ନି ହେଉ ନାହାନ୍ତି !"

ଦାସେ ଅଳ୍ପ ହସି ଠିଆହେଲେ ।

କହିଥିଲେ କହିଥାନ୍ତେ--"ଶୁଣ ପାଟମାଳିଏ, ଝଡ଼ିଗଲାଠୁ କ'ଣ ଏମିତିଆ ହେଇଗଲା ! ଆଉ କୁ' ବସ୍ତୁସବୁଡ଼େ ଅଛି ଯେ ଦେହଟାକୁ ଜଗିରଖିବା ! ହେଇ ପାଣି-ଫୋଟକା, ଏଇଲାଗେ ଅଛି ତ ଆଉ ଟିକକୁ ନଥିବ ।"

"ମୁଁ ସବୁ ଶୁଣିଛି ଆଜ୍ଞା ! ଆପଣଙ୍କ ପ୍ରାଣକୁ ବାଧିଗଲା । ଏମିତିଆ ଲୋକର ପୁଣି ଦୁର୍ଯୋଗ ଆସେ ! ମୁଁ ଆଜ୍ଞା, ପଅରିଦିନ ନା ତା' ଆଗଦିନ ହବ, ବଜାରରୁ ଶୁଣିଆସି ଦି'ପହରବେଳେ କାହାକୁ ଗୋଟେ ଏଇଠି ଠିଆହେଇ କହୁଛି, ଏତିକବେଳେ ଶତପଥୀ ମହାଶୟ ମନ୍ଦିରକୁ ବାହାରିଆସି ପହଞ୍ଚିଗଲେ । ତାଙ୍କ କାନରେ କ'ଣ ପଡ଼ିଲା କେଜାଣି, ମତେ ବୁଲିପଡ଼ି ଚାହିଁଲେ ।···ମୁଁ ବୁଝି ତାଙ୍କୁ ସବୁକଥା କହିଦେଲି । ଆପଣଙ୍କ ନାଁ ଶୁଣି ସେ ଟିକିଏ କ'ଣ ଚିନ୍ତା କଲା ପରି ଦିଶିଲେ । ସେଇଠୁ କିଛି ନକହି ଚାଲିଗଲେ । ଆପଣ ମନ୍ଦିରକୁ ଯାଉଚନ୍ତି ଆଜ୍ଞା ? ଯାଆନ୍ତୁ । ସେ ଧବଳେଶ୍ୱରେ ଆପଣଙ୍କ କଷ୍ଟ କ'ଣ ବୁଝିପାରୁନାହାନ୍ତି ! ଯାଆନ୍ତୁ, ସେଇଠି ମନ ଫିଟେଇ ସବୁ କହିଦେଲେ ଉଶ୍ୱାସ ଲାଗିବ ।"

ଦାସେ ମୁହଁ ଫେରେଇ ମନ୍ଦିରକୁ ଉଠିଲେ ।

ମନ୍ଦିର ଭିତରଟା ଏଡ଼େ ନିର୍ଜନ ହେଇଚି ଯେ କହିବା କଥା ନୁହେଁ । ଖାଲି ମହାଦେବଙ୍କ ଉପରେ ଅଭିଷେକପାତ୍ରରୁ ଜୁପାତାର ପରି ପାଣି ଧାରେ ଟିକ୍ ଟିକ୍ ହୋଇ ଝରୁଛି ।

ଦାସେ ମଧ୍ୟ ବଡ଼ ସନ୍ତର୍ପଣରେ ଭିତରେ ପଶିଲେ । ପଶିଯାଇ ଦେଖିଲେ, ତାଙ୍କର ସେଇ ପୁରୁଣା ଜାଗାଟିରେ ଶତପଥୀ ମହାଶୟ ପଦ୍ମାସନ ପକେଇ ଧ୍ୟାନରେ ବସିଛନ୍ତି । ସେମିତିଆ ଆଗ ଭଳି ତମ୍ବା ତାର ପରି ଦେହ । ଦାସଙ୍କ ମନରେ ଭୟ, ଭକ୍ତି, ଭରସା ଏକାଠି ତେଜିଉଠିଲା । ଆସ୍ତେ ଛତା ବାଡ଼ି, ଥାଳି ଥୋଇଦେଇ ଆସି ବୃଷଭ ପଛରେ ଲମ୍ବ ହୋଇ ଶୋଇଗଲେ । ମନ୍ଦିର ଯାହା ହେଇଚି ସେଥିରେ ନିଶ୍ୱାସ ମାରିଲେ ମଧ୍ୟ ଶବ୍ଦ ଶୁଭିବ । ଦାସଙ୍କ ଭୟ, କାଳେ ଶତପଥୀ ମହାଶୟଙ୍କ ଧ୍ୟାନରେ ବାଧାଆସିଯିବ । ବୃଷଭ ପଛରୁ ଉଠିଯାଇ ଶତପଥୀଙ୍କୁ ଧୀର ମୁଣ୍ଡି ଆଟିଏ ମାରୁଛନ୍ତି, ତାଙ୍କ ମୁଣ୍ଡ ଉପରେ ଶତପଥୀଙ୍କ

ହାତ ରହିବାର ସେ ଜାଣିଲେ । ମୁଣ୍ଡ ଟେକି ତାଙ୍କ ଆଗରେ ଶୂନ ହୋଇ ବସିଲେ ।

ମହାଶୟେ ଅଳ୍ପ ଅଳ୍ପ ହସୁଥାନ୍ତି । ସେ ହସଟିକିକରେ ଅବଶ୍ୟ କେବଳ ସ୍ନେହ ନୁହେଁ, କେମିତିଆ ଦୟା, କରୁଣା ମିଶିରହିଥାଏ ଦାସଙ୍କ ପାଇଁ । ଦାସଙ୍କର କହିବାର କିଛି ନାହିଁ, ତାଙ୍କୁ ମଧ୍ୟ ଅଜଣା କିଛି ନାହିଁ । ନୀରବରେ ଜଣେ ଆଉ ଜଣକର ମନକଥା ବୁଝିଗଲେ । କିଛି ସମୟ ଉତ୍ତାରୁ ଶତପଥୀ ମହାଶୟ ଉଠି ଗମ୍ଭୀର ଭିତରକୁ ଦାସଙ୍କୁ ହାତ ଠାରି ଡାକିଲେ ।

ଦାସେ ଦୁଦୁରାଫୁଲ ଗଣ୍ଡାକ ଶିବଲିଙ୍ଗ ଉପରେ ଚଢ଼େଇ ଦେଇ ଶତପଥୀଙ୍କ ଇଙ୍ଗିତରେ ତାଙ୍କ ଗ୍ଲେଟ ଅଭିଷେକପାତଟି କାଢ଼ି ତା' ଦେହରେ ପାଣି ପୁରାଇ ଟେକିଧରିଲେ ।

"ଅ-ଅ-ଉ-ମ୍ ନମଃ ଶିବା···ଆ···ୟ"

ଦେଉଳର ପଥର କାନ୍ଥ ଭିତରେ ଗୁମୁରି ଗୁମୁରି ଏ ମନ୍ତ୍ର ଦାସଙ୍କ ପ୍ରାଣ ପର୍ଯ୍ୟନ୍ତ ଛୁଇଁଆସୁଥାଏ । ଦାସେ କେତେବେଳେ ତନ୍ମୟ ହୋଇ ବଡ଼ ବିହ୍ୱଳ ଅବସ୍ଥାରେ ଶତପଥୀଙ୍କ ସାଙ୍ଗରେ ସ୍ୱର ମିଶାଇଦେଇଛନ୍ତି, ତାହା ସେ ନିଜେ ଜାଣନ୍ତି ନାହିଁ ।

ଏହିପରି ଅନେକ ସମୟ ପର୍ଯ୍ୟନ୍ତ ଦାସଙ୍କ ପ୍ରାଣରେ ଶୀତଳ ମନ୍ତ୍ରର ଏ ଅଭିଷେକ ଝରୁଥାଏ । ନନ୍ଦ ଉପରୁ ଘଣ୍ଟି ଟା କିଏ ଭିଡ଼ରେ ଧରି ବଜେଇଦେଲା । ପାଟିଗୁଣ୍ଡି, ଘୋ-ଘା ଗୁଡ଼ାଏ ଶୁଭିଲା । ବଡ଼ ବଡ଼ ପିତ୍ତଳ ଥାଳି ପଥର ଉପରେ ଝଣ୍‌ଝାଣ୍ ହୋଇ ଥୁଆହେଲା । ଦେଖିଲାବେଳକୁ ମାଢ଼ୁଆଳୀଘର ଆସି ପହଞ୍ଚିଛନ୍ତି, ତାଙ୍କ ପଛରେ ପାଟମାଳୀ ଠିଆହୋଇଛି । ବୋଝେ ପାଚିଲା କଦଳୀ, ଦୁ' ବାଲ୍‌ଟି କ୍ଷୀର ଧରି ଚନଟା ମୋଟୀ ମାଢ଼ୁଆଳୀ ମାଇକିନିଆ ଆସି ପହଞ୍ଚିଛନ୍ତି । ତାଙ୍କ ପଛରେ ଏଡ଼େ ପେଟ କାଢ଼ି ଗୋଟେ ନିଶୁଆ ମାଢ଼ୁଆଳୀ ଠିଆହୋଇଛି । ନିହାତ ବିରକ୍ତିକର ଦୃଶ୍ୟ ।

କିନ୍ତୁ ଶତପଥୀଙ୍କର ମୁହଁରୁ ଜଣାଯାଉଛି ଯେପରି ସେ କହୁଛନ୍ତି, "ଆରେ ବାଃ ! ଏତେ ସକାଳୁ ଉଠି ଏମାନେ ଈଶ୍ୱର ମନ୍ଦିରକୁ ବାହାରି ଆସିଛନ୍ତି ! ବେଶ୍ ତ !"

କଷାନନିଆ ହେଇ ପିଲା ଉଠିଲେ ଯେମିତିଆ ଟିକିଏ ଖିଙ୍ଖିଣ୍ ହୁଏ, ଦାସଙ୍କର ସେମିତି ଅଳ୍ପ ଟିକିଏ ବିରକ୍ତ ଭାବ ଜଣାପଡ଼ୁଛି । ଦୁହେଁ ସେଇଠୁ ଉଠି ଚାଲିଆସିଲେ । ପଣ୍ଡିତେ ତାଙ୍କର ଆଗରୁ ପଡ଼ିଥିବା ଆସନ ଖଣ୍ଡକରେ ବସିଲେ । ଦାସେ ମଧ୍ୟ ସ୍ଥିର ହୋଇ ସେଇଠି ଘଡ଼ାଏ କାଳ ବସିଲେ । ଏଆଡ଼େ ବେଶ୍ ମାଢ଼ୁଆଳିଆ ଖିଦରେ ପାଟିଗୁଣ୍ଡି ଚାଲିଥାଏ, ଥରକୁ ଥର ଟଣ୍ ଟଣ୍ ହୋଇ ଘଣ୍ଟି ବାଜୁଥାଏ । ପିତ୍ତଳ ଥାଳି ସର୍ ସର୍ ହୋଇ ପଥର ଉପରେ ଘୋଷରା ହେଉଥାଏ । କ୍ଷୀର ବାଲ୍‌ଟି ଦୁମ୍‌ଦାମ୍ କଚଡ଼ାହେଉଥାଏ ।

କିଛି ସମୟ ପରେ ଦାସଙ୍କ ମନହେଲା ସେ ତାଙ୍କୁ ଦୁ'ପଦ ପଚାରିବାକୁ ଲାଗିଲା ଭଲ କଥା କିଏ କହନ୍ତା ! କିଏ ଟିକିଏ ଆହା କହି ସାନ୍ତ୍ୱନା ଦିଅନ୍ତା ! ଆଶ୍ଚର୍ଯ୍ୟ ! ଏତେ ଦିନ ହେଲା ଥରେ ବୋଲି ତାଙ୍କୁ ଏମିତି ଲାଗିନଥିଲା ।

"ଖୁବ୍ କଷ୍ଟ ହେଇଗଲା ନା ?" ଶତପଥୀଙ୍କ ସ୍ୱରରେ ଯେମିତି ଏ ପ୍ରଶ୍ନ । ଦାସେ

ଯାହା ତାଙ୍କ ମୁହଁକୁ ଚାହିଁଥିଲେ, କିଛି ନକହି ମୁହଁ ଅନ୍ୟଆଡ଼େ ଫେରେଇନେଲେ ।

ଶତପଥୀଙ୍କ ହାତ ତାଙ୍କ ପିଠିରେ ଆସ୍ତେ ବାଜୁଛି—"ହଉ, ଏମିତଆ ତ ଜୀବନରେ ଅବଶ୍ୟ ହବ । ନ ହେଲେ ଜୀବନର ଦର କମିଯିବ ନାହିଁ ? ଅର୍ଥ ବଦଳିଯିବ ନାହିଁ ?"

ଦାସେ ଫେର ତାଙ୍କ ମୁହଁକୁ ଚାହିଁଲେ । ତାଙ୍କ ଆଖିରେ ନିରୀହ ପ୍ରଶ୍ନଟିଏ—"ଆଚ୍ଛା, ମୋ'ର ଭାଗ୍ୟରେ ଏଇଆ ଘଟିବାର ଥିଲା ?"

ବୁଝିଲା ପରି ଆକାଶ ସେପାଖକୁ ପଣ୍ଡିତ ମହାଶୟେ ଆଙ୍ଗୁଠି ଟେକି ଦେଖାଇଲେ । "ଈଶ୍ୱରଙ୍କ ଉପରେ ବଡ଼ ଅଭିମାନ ଆସୁଥିବ, ଅବିଶ୍ୱାସ ମଧ୍ୟ ଟିକିଏ ହଉଥିବ, ନୁହେଁ ?"

ଦାସେ ବଲବଲ ଖାଲି ଚାହିଁଥାନ୍ତି ।

"ହଁ, ସେଇଆ । ଅଭିମାନ କାହିଁକି ନ କରିବି ? ମୁଁ ଯାହାକୁ ଭରସା କରି ଆସିଛି, ସେ ଶେଷକୁ ଏମିତି ଦଗା ଦେଲା ! ମୁ ତ କାହାର କିଛି କ୍ଷତି କରିନଥିଲି !"

ଏଇଠି ପଣ୍ଡିତେ ପାଟି ଫିଟେଇ କହିଲେ—"ଆମେ ନିଜ ଦୋଷରୁ ନିଜେ କଷ୍ଟ ପାଉଥାଉଁ । ଅଜ୍ଞାନରେ ପଡ଼ି ଆମର ତ ମୂଲ୍ୟବୋଧ କିଛି ନଥାଏ । ଏଣୁ ଗୁଡ଼ାଏ ଜଡ଼ ଚେତନକୁ ନିଜର କରି ଗୁଡ଼ାଏ ବନ୍ଧନ ତିଆରିକରି ବସିଥାଉଁ । ସେଇଟା ଛିଣ୍ଡିଗଲେ ପୀଡ଼ା ହୁଏ । ମମତାଟା ଆମର ଲଇ, ଆମେ ତାକୁ ମଡ଼େଇଥାଉଁ । ସେଥିରେ ଚୋଟେ କେଉଁଠି ପଡ଼ିଗଲେ ମନରେ ରକ୍ତସ୍ରାବ ହୁଏ । ସମ୍ପର୍କ ଯା'ର ଯେତେ ଶିଥିଳ, ସେ ସେତେ ନିର୍ଲିପ୍ତ; ଏଣୁ ସେତିକି ତାପମୁକ୍ତ ।"

ଦାସେ ଏଥିରୁ ଅଧେ କ'ଣ ବୁଝିଲେ—କିନ୍ତୁ ଠିକ୍ ବୁଝିଲେ । କହିଲେ—"ଆମେ ତ ନିର୍ମୀସ୍ପା ଯୋଗୀ ପୁରୁଷ ନୋହୁ ଯେ ଆମକୁ ବନ୍ଧନ ଲାଗିବ ନାହିଁ ! ସେସବୁ ନୁହେଁ ଆଜ୍ଞା, ଏହାକୁ ମାନିଲେ ଦର୍ପ, ନ ମାନିଲେ ପଥର । ମୋ ମନ ଫାଟିଗଲାଣି । କୌଣସି ବିଷୟରେ ଆଉ ଶ୍ରଦ୍ଧା ରହୁନାହିଁ । ବିଶ୍ୱାସ ମଧ୍ୟ ତୁଟିଗଲାଣି ।"

"ବିଶ୍ୱାସ ଜମା ତୁଟିନାହିଁ । ଏଟିକି ନହେଲେ କାହିଁକି ଆସିଥାନ୍ତ ? ଶ୍ରଦ୍ଧା ମରିଯିବା କଥା ବି ଠିକ୍ ନୁହେଁ । ସେଇଟା ବୋଧହୁଏ ମୋହ ହୁଗୁଳିଯାଉଛି । ସେଇଟା ତ ଶୁଭ ଲକ୍ଷଣ । ଆଉ ଆମକୁ ବାନ୍ଧି ନ ପକାଇଲେ ସାଧନା ଆସିବ କୋଉଠୁ ? ସାଧନାର ସଂଘର୍ଷ ନଥିଲେ ଆତ୍ମାର ବଳ ତ ଅସିବ ନାହିଁ ! ନଦୀ ଅବଶ୍ୟ ଯାଇ ସମୁଦ୍ରରେ ମିଶିବ; କିନ୍ତୁ ତା ପାଇଁ ଏତେ ବାଧାବିଘ୍ନ କାହିଁକି ? ତାର ଶକ୍ତି ପରୀକ୍ଷା ପାଇଁ ଗୋଟାଏ ସୁଯୋଗ ଦେବା କଥା ତ ! ବିପଦ ପରି ମଣିଷର ଯୋଗ୍ୟତା ପରୀକ୍ଷା କରେ ! କ'ଣ ମନକୁ ଏ କଥାଗୁଡ଼ା ଧରୁନାହିଁ ?"

"ବୁଝୁଛି ଯେ, ମାତ୍ର ଏ ମହାଜ୍ଞାନ—ଗହନ କଥା । ଗୋଟାଏ ବିଷୟ ମୁଁ ଭାବୁଛି ଆପଣଙ୍କୁ ପଚାରିବି ବୋଲି । ଆପଣ ଜ୍ଞାନୀ ଲୋକ । ଆପଣଙ୍କ ଉପରେ ଭରସା ହବାରୁ କହୁଛି । ସେ ତ ତା' ବାଟେ ଗଲା, ବାକି ଯେ ରହିଲା ତାଙ୍କଠେଇ ମୋର କ'ଣ ସମ୍ପର୍କ ? ମୁଁ ମୋର ସେ ସାନପିଲାଟାକୁ ଚେଷ୍ଟା କରୁଛି ପାଖରେ ପୂରେଇ ଆଶ୍ୱାସନା କରିବି; ମାତ୍ର

ମୋତେ ଲାଗୁଚ ସେ ସେ ମତେ ଜମା ଧରୁନାହିଁ । ଲାଗୁଛି, ମୋ ସଙ୍ଗରେ ତାର କିଛି ବୋଇଲେ କିଛି ସଂପର୍କ ନାହିଁ । ତା'ର ଭଲ ମନ୍ଦ ମଧ୍ୟ ମତେ ଲାଗୁନାହିଁ । ଏଇଟା ମୋ ମନ ଭିତରୁ ଆପଣଙ୍କୁ କହୁଦେଉଚ—ବଡ଼ ବିପରୀତ ପରି ମନେ ଲାଗୁଛି, ଆପଣ ଗୁରୁ ତୁଲ୍ୟ ଲୋକ, ମତେ ବୁଝି ବତାନ୍ତୁ ।"

"ବୁଝିଲ, ଭିତର ଘା'ଟା ଆଉରି ଠିକ୍ ଶୁଖି ପାରି ନାହିଁ । କେତେକଙ୍କର ଘା' ସେଇ କଷ୍ଟ ଥାଉ ଥାଉ ପାଖରେ ଯାହାକୁ ପାଏ ତାକୁ ଧରନେଏ, ଆଉ କାହାର କାହାର ସମସ୍ତ ହଜେ । ମାତ୍ର ଦୂରରେ ରହି ଯଦି କା'ର ମନକୁ ମନ ଖୋଲପା ବାନ୍ଧିଗଲା ଏବଂ ସେ ଖୋଳ ଝଡ଼ିଗଲା—ଝଡ଼ିବ ନିଶ୍ଚୟ—ତା'ପରେ ଯେଉଁ କଅଁଳ ଝକ୍‌ଝକ୍ ମନଟିଏ ହେବ, ଆହା, ତା'ର ତୁଳନା ନାହିଁ !! ତା ପାଖରେ ଯେତେ ଘଷିହେଲେ ମଧ୍ୟ ଆଉ ତାକୁ କିଛି ବାନ୍ଧି ପାରିବ ନାହିଁ । ମାତ୍ର ପବନ ବାଜିଲେ ବି ସେ ଜାଣିଦେବ, ସହଜ କରୁଣାରେ ଯୋପି-ପଡ଼ୁଥିବ ।"

ଅଳ୍ପ ହସି ଶତପଥୀ ମହାଶୟେ ଦାସଙ୍କ ହାତଟାକୁ ଧରିପକାଇଲେ । ଦାସେ କଥାଟା ପୂରା ନ ବୁଝିଲେ ମଧ୍ୟ ତା'ର ଆବେଗ, ତା'ର ଚମକଟାକୁ ମୋଟାମୋଟି ଧରି-ନେଇଛନ୍ତି । ଅଳ୍ପ କିଛି ଚିନ୍ତା କରି ବଡ଼ ଶ୍ରଦ୍ଧାରେ ମହାଶୟେ କହିଲେ, "ଆଜ୍ଞା, ଥରେ ପୁରି ତୀର୍ଥ କରିଆସିଲେ କେମିତି ହୁଅନ୍ତା ?"

"ଓ୍ଵ, ଏଇଆ ତା'ହେଲେ ମହାଶୟେ ଏତେ ଆଡ଼ୁ କରି କହୁଛନ୍ତି—ବୁଝିଲି ।" ଟିକିଏ ହସି କହିଲେ—

"ଆମର ସେ ଭାଗ୍ୟ କାହିଁ ଆଜ୍ଞା ! ଆମେ ତ ଆଉ ଆପଣଙ୍କ ସାଙ୍ଗେ ଲେଖା ହୋଇ-ପାରିବୁ ନାହିଁ ! ଆମର ଓଳିଏ ଚୂଲି ଲାଗିଲେ ଆଉ ଓଳି ଲାଗେନାହିଁ ।"

"ଆରେ, ଏମିତିଆ ଆଡ଼ବାଗେ କ'ଣ କଥାଟା ବୁଝିଲ ମ ! ମୁଁ ଭୁଲ କହିଲି କି ଆଉ ? ସେ କଥା ଜମା ନୁହେଁ । ମୁଁ କ'ଣ କହୁଚ କି, ଆଶ୍ଵିନ ପୂର୍ଣ୍ଣିମୀ ଦୁଇ ଦିନ ଥିବ, ଭାବୁଛି, ବର୍ଷେ ପାଇଁ ମୁଁ ତୀର୍ଥବାସ କରିବ । ଇଚ୍ଛା ଥିଲା, ଏକୁଟିଆ ଯିବି ବୋଲି । ମାତ୍ର ଚାଲ ଆମେ ଦୁହେଁ ଚାଲିଯିବା । ଜଣକ ଖର୍ଚ୍ଚରେ କ'ଣ ଦୁଇ ଜଣ ଯାଇପାରିବେ ନାହିଁ । ଚାଲିଯିବା କଥା ତ ! ଦେଖ, ଆଜିକୁ ଠିକ୍ ଆଠ ଦିନ ରହିଲା । ବିଚାର କର, ମନ ଦୃଢ଼ କର । ଚାଲ, ଧର ଏ ମହାଜନଙ୍କ ପନ୍ଥା । ମୁଁ ପରିଷ୍କାର ଦେଖିପାରୁଛି ଯେ ଏଥିରେ ତାର ସଦିଚ୍ଛା ରହିଛି ।"

ଦାସେ ବିହ୍ଵଳ ହୋଇ ଚାହିଁଥାନ୍ତି । ଏ କ'ଣ ସବୁ ଘଟିଯାଉଛି ? ହେଇ, କାଲି ପରି ଲାଗୁଛି—ଗୋବିନ୍ଦ ଦ୍ଵାଦଶୀକୁ ଏଇଠୁ ପୁରୀ ସେ ଯାଇ ପାରି ନଥିଲେ । କ'ଣ ନା, ଟଙ୍କାନା ଟେକ ନେଇ ତାଙ୍କୁ ପୁରି ତୀର୍ଥ ବୁଲେଇ ଆଣିବ !!

ଗମ୍ଭୀର କବାଟ ଫିଟିଗଲେ କେମିତି ଧାଉଁକିନା ଆଲୁଅ ପଶିଆସେ, ତାଙ୍କ ଭିତରଟା ସେମିତି ଉଥଲିଉଠିଲା । ସେ ଆଖିରେ ଆଖିଏ ଲେଖାଁ ଲୁହ ଭରି ଶୂନ୍ୟକୁ କେବଳ ଚାହିଁ-ରହିଥାନ୍ତି ।

ଯିଏ ଭିତରେ ମହାଶୟେ ସେଇଠୁ ଉଠି ଭିତରକୁ ଚାଲିଗଲେଣି । ଆଚ୍ଛା, ମତେ ତୋ ପାଖକୁ ଟାଣିନବାକୁ ଏତେ ଖେଳ ଖେଳିଦେଲୁ ? ହେଲେ ଏମିତିଆ ନିର୍ଦ୍ଦୟ ହୋଇ ଡେର ମୂଳ ଛିଣ୍ଡେଇ କ'ଣ ଦୟା ଦେଖାନ୍ତି ? ହଉ, ସେ ତ ତୋର ପୁରୁଣା ଅଭ୍ୟାସ । ଯାହାକୁ ନେବୁ ତା'ର ସବୁ ଦଉଡ଼ି ଆଗ ଛିଡ଼େଇଦବୁ । ହେଲେ ଝୁଲୁମା'ଟା କ'ଣ ଭଳେ କଣ୍ଟା ହଉଥିଲା ? ଆହା ବିଚ୍ଛା, ଦେଖିବ, ଦେଖିବ ବୋଲି କେଡ଼େ ଉଚାଟ ହୁଏ । ପିଲା-ମନଟିଏ ତା'ର କେଡ଼େ ଖୁସି ହୋଇଆନ୍ତା—ଗୁଡ଼ ! ! ସେ ତ ବାଟ ଭାଙ୍ଗି ଚାଲିଗଲା ଅଣାୟତ୍ତରେ ! କ'ଣ କରିବା ? ଯେତେ ଦିନ ସାଙ୍ଗ ରହିବାର ଯୋଗ ଥିଲା ! ବାଟର ଏ ସୋଭରେ ମୁଁ ଆଉ ଆର ସୋଭରେ ସେ ହେଇ ଚାଲିଲୁ । ଦୋଛକଠେଇଁ ସେ ଚାଲିଗଲା ଟାଣି ହେଇ, ଆଉ ମୁଁ ପଡ଼ିଗଲି ଛଟପଟ ହେଇ ଏ ଜଞ୍ଜାଳରେ । ଓଃ, ଏ ଡୋର ଛିଣ୍ଡିବା ବଡ଼ କଷ୍ଟ ! ପ୍ରଭୁ, ନେଉଛୁ ଯଦି ସେଇ ପାଟଡୋର ଲଗେଇ ଏକାଥରେ ଟାଣିନେ । ମୋର ସବୁ ଆଡ଼ୁ ମୂଳ ଓଳଡ଼ା ଖାଇ ଦୋହଲିଗଲାଣି । ଏଣିକି ତୁହି ସକଳ ଆଶା, କଲି ହରି ଭରସା ।

କାନ୍ଧକୁ ଆଉଜି ଦାସେ ବସିଥିଲେ । ଲୁହ ବୋହି ତାଙ୍କ ବୁକୁରୁ ଚନ୍ଦନ ଧୋଇ-ହୋଇଗଲାଣି । ସେ ତରବରରେ ଗାମୁଛାରେ ମୁହଁ ପୋଛି ଚାହିଁ ଦେଖିଲେ, ମହାଶୟେ ନାହାନ୍ତି । ମନ୍ଦିର ଭିତର ଶୂନ୍‌ଶାନ । ମାଡ଼ୁଆଲୀ ପଞ୍ଝା କେତେବେଳୁ ପଳେଇଲେଣି । ଉଠି ଦେଖିଲେ, ମହାଶୟେ ଗମ୍ଭୀରା ଭିତରେ ଏକଲୟରେ ଧ୍ୟାନରେ ବସିଛନ୍ତି ।

ଦାସେ ଚାଲି ଚାଲି ହୋଇ ମନ୍ଦିର ବାହାରକୁ ଆସିଲେ । ବେଶ୍ ହୁଲୁହୁଲିଆ ପବନ ଟିକିଏ ବହୁଥାଏ । ପୋଖରୀରେ କଇଁ ଫୁଲଗୁଡ଼ିଏ ଫୁଟିଥାଏ । ଦାସଙ୍କୁ ହଠାତ୍ କେମିତିଆ ହଣ୍ଡାସିଆ ବୋଧହେଲା । ଜଣାଗଲା, ସେମିତି ତାଙ୍କ ଭିତରେ ଅନେକ ଓଲଟପାଲଟ ହୋଇଯାଉଛି, ଅନେକ ବଦଳିଯାଉଛି । ଅଗୁଞ୍ଜା କୋହଟାଏ ନଳିଚଟିଆ ଗହ୍ୱରରେ ଧୂଆଁର ସରୁ କୁଣ୍ଡଳୀ ପରି ଉଠିଆସୁଥାଏ । ମନ କନ୍ଦା ଗୁଡ଼ାଏ ଆଲୁଅ, ଗୁଡ଼ାଏ ବତାସରେ ଘୁଡ଼ି ପରି ଛନ୍ ଛନ୍ ଧରିଥାଏ । ଟିକିଏ ଟଣା ପାଇଲେ ଭୁଇଁ ଛାଡ଼ି ଉଡ଼ିଯିବ ।

ଦାସଙ୍କ ଆଖିପତା ଯୋଡ଼ିକ ଓଦା, ମୁହଁଟା କାନ୍ଦ କାନ୍ଦ ।

ପାହାଡ଼ର କଳା ଦାଢ଼ୁଆ ପଥରଟାକୁ କେବଳ ଅନ୍ୟମନସ୍କ ଭାବରେ ମଝିରେ ମଝିରେ ଆଉଁସିପକାଉଥାନ୍ତି ।

# ପଙ୍ଗୁ ଲଙ୍ଘୟତେ ଗିରମ୍

ରେଲଗାଡ଼ି ଚାଲିଛି ।

ଗୋଟିଏ ଡବାରେ ପ୍ରାୟ ଦେଢ଼ଶହ ଲୋକଙ୍କ ଭିଡ଼, ଆଉ ତାଙ୍କର ଅନେକ ପ୍ରକାର କଥା । ସେଇଠୁ ପ୍ରଶ୍ନ ହେଲା ବୁଝାଇଲା ମଣିଷଙ୍କୁ ହାଙ୍କି ଜବାବ ଦଉଚ, "ଆରେ, ଆମେ ବି ଟିକଟ୍ କାଟି ବସିଛୁ, ଆମକୁ ଆଡ଼େଇ ବସିଯାଉଛୁ, ଏଟା କ'ଣ ତୋ ବାପର ଗାଡ଼ି ! ଖାଲି ଭିଡ଼···ଖାଲି ଗନ୍ଧାଳ । ବିଡ଼ିଧୂଆଁ, ଝାଳ, ପାଇଖାନା, ମଇଳା ଲୁଗାର ଗନ୍ଧ ମିଶି ଡବା ଖଣ୍ଡ ଉବେଇ ଝୁବେଇ ହେଉଛି । ଏମିତି କେତେ ଖଣ୍ଡ ଡବା ଧରି, କାନ ଅତଡ଼ା ପକେଇ ରେଲ ଚାଲିଛି ।

ଦାସଙ୍କର ଧ୍ୟାନ କିନ୍ତୁ କହୁ ପ୍ରକାରେ ଭଙ୍ଗ ନାହିଁ । ସେ ଷ୍ଟେସନରେ ଶତପଥୀଙ୍କ ସାଙ୍ଗେ ଗାଡ଼ିରେ ଚଢ଼ି ଯେଉଁଠି ବସିଯାଇଛନ୍ତି ଗୋଟେ କୁଣରେ, ଠିକ୍ ସେଇଠି, ସିମିତି ଅବସ୍ଥାରେ ଆସି ଅନେକ ଘଣ୍ଟା ହେବ ନିଶ୍ଚଳ ହୋଇ ବସିଛନ୍ତି । ତାଙ୍କ ଆଗକୁ ଶତପଥୀ ମହାଶୟ ବସିଛନ୍ତି, ମାତ୍ର ଦାସେ ତାଙ୍କୁ ଜମା ଦେଖିପାରୁନାହାନ୍ତି । ମୁହଁରେ ହଜିଲା ହଜିଲା ଭାବ । ଶତପଥୀ ମହାଶୟ ତାଙ୍କୁ ଦେଖୁଛନ୍ତି, ମାତ୍ର କହୁ ନ କହି ଫାଙ୍କରେ ପଶି ବସିଛନ୍ତି । ଦାସଙ୍କ ଭିତରେ କୁରୁକ୍ଷେତ୍ର ଯୁଦ୍ଧ ଲାଗିଛି, ଭୟଙ୍କର ରକ୍ତପାତ ହେଉଛି ।

ଅକୂପାର ରଣ ନଦୀ । ପାଣ୍ଡବଙ୍କୁ ପାରି କରାଉଛନ୍ତି କର୍ଣ୍ଣଧାର ହରି । ସେଇଟା ତାଙ୍କ ପୁରୁଣା ଅଭ୍ୟାସ ।···ଶତପଥୀଏ ଠିକ୍ ବୁଝିପାରୁଛନ୍ତି କ'ଣ ହେଉଛି, ଆଉ କ'ଣ ହେବ । ଏଣୁ କେବଳ ନୀରବ ଦ୍ରଷ୍ଟା ରୂପେ କୌତୂହଳୀ ହୋଇ ଅପେକ୍ଷା କରିରହିଛନ୍ତି । -

ରାତି ସେତେବେଳକୁ ପ୍ରାୟ ଦୁଇଟା ।

ସ୍ତ୍ରୀ ଭିତରେ କେତେ ଷ୍ଟେସନ ଗଲାଣି । କେତେ ଲୋକ ଚଢ଼ିଲେଣି, ଓହ୍ଲେଇଲେଣି । ଡବା ଭିତରେ ସମସ୍ତେ ଘୁମଉଛନ୍ତି—ସ୍ତ୍ରୀ ଉପରେ ସେ ତା' ଉପରେ ସେ ଲଦାଲଦି ହୋଇ ଘୁମଉଛନ୍ତି । ବଡ଼ ଶାନ୍ତ ନିରୀହ ଅସହାୟ ପିଲାଗୁଡ଼ିଏ ଏମାନେ । ସବୁ ଗୋଟିଏ ପ୍ରକାର—ସମସ୍ତେ ଏକ ଡଗର ଯାତ୍ରୀ । ବାକ୍ସ, ପେଡ଼ି, ପେଟରା, ତା ଭିତରେ ପିଲାଟିଏ, ମାଆଟିଏ--ସବୁ ଘୁମନ୍ତି ।

ଦାସଙ୍କର ଆସ୍ତେ ଆସ୍ତେ ଚେତା ଆସିଲା ।

କିନ୍ତୁ କହୁ କହି ପାରୁନାହାନ୍ତି । ଭାରି ହାଲିଆ ହୋଇ ଯାଇଛନ୍ତି ଯେମିତି । ଶତପଥୀଙ୍କୁ ଲାଗିଲା, ଦାସେ ଖୁବ୍ ଚେଷ୍ଟା କରୁଛନ୍ତି ଘଟଣାଟାକୁ ବୁଝିବାକୁ । ଆବା କାବା ହୋଇ ଇଆଡ଼େ ସିଆଡ଼େ ଚାହିଁବା ପରେ ତାଙ୍କ ଆଖି ପଡ଼ିଗଲା ଶତପଥୀଙ୍କ ଉପରେ ।

ଟିକଏ ଗଲା ଖର୍ଡାଣ୍ଡ ବାହାରର ଅନ୍ଧାରଟାକୁ ଗୁହିଁଲେ ଏବଂ ତା'ପରେ କିଛି ସମୟ ପର୍ଯ୍ୟନ୍ତ ପରସ୍ତ ହେଲେ । ଶତପଥୀ କହିଲେ—"ବଡ଼ ଭିଡ଼ ହେଉଚି ଡବାଟା ଭିତରେ । ଏମିତ ପ୍ରାୟ ହୁଏ । କଲକତାଠି ଗାଡ଼ି ବଦଳ ହେଲେ ଭିଡ଼ ଆହୁରି ବେଶି ।"

ଦେଟିଲେ କଥା ଧରୁ ନାହିଁ, ଏଣ୍ଡେ ଉନପଡ଼ିଗଲେ ।

ଦାସେ ଟିକଏ ଦୋ' ଦୋ' ପାଞ୍ଚ ହୋଇ ପଚାରିଲେ, "ମୁଁ କ'ଣ କହୁଥିଲି କି, ଷ୍ଟେସନ ପାଖକୁ ରଘୁ ତ ଆସିଥିଲା । ତା ସ୍ତ୍ରୀ ମଧ୍ୟ ଆସିଥିଲା କି ? ମତେ କାହିଁ ଲାଗୁଚି ବୋହୂପିଲା ଅବଶ୍ୟ ଆସିଥିଲା ।"

"ନାହିଁ ତ, ମୁଁ କାହିଁ ଦେଖିଲି ପରି ମନେହେଉ ନାହିଁ । ଆଚ୍ଛା, ଚନ୍ଦ୍ରଶେଖରର ସ୍ତ୍ରୀ କଥା କହୁ ନାହିଁ ତ ?···ସେଇଟା ମୋର ବଡ଼ ବୋହୂ,···ଘର ତକସାଲ କରୁଥାଏ ହେଷ୍ଟି ପଇସା ଡବାରେ ବସେଇବା ପାଇଁ ।···ସେ ଠିକ୍ ବୁଝିବ ଯେ, ମାତ୍ର ବୁଝିବାକୁ ତାକୁ ଟିକଏ ସମୟ ଦରକାର । ତା' ବାହାରେ ଆଉ ତ କାହିଁ···କେହି···ଆସି ନ ଥିଲେ । ···ହେଁ ବୁଝିଲି, ସେ ହେଉଚି କ'ଣ ବଇଲେ, ରଘୁ ଖଣ୍ଡେ କାଗଜ ଠୁଙ୍ଗାରେ ଭଙ୍ଗାପାନ ବଢ଼େଇଦେଲା ବେଳେ ମୋ କାନରେ ପଡ଼ୁଥିଲା···ସେଇଟା ତମ ବୋହୂ ଘରଁ ପଠେଇଥିଲେ, ନୁହେଁ ?"

"ଠିକ୍ କହିଲେ । ମତେ ଲାଗିଲା ବୋହୂପିଲା ଆସିଥିଲା ବୋଲି ।" ମୁଣାରୁ ଖଣ୍ଡେ ପାନ କାଢ଼ି ଖାଇଲେ । ଶତପଥୀ ମହାଶୟ ତ ପାନ ଖାଆନ୍ତି ନାହିଁ, ଦୋକତା ପାଖ ପଶନ୍ତି ନାହିଁ ।···ଅଃ, ବଡ଼ ଅସୁବିଧା କଥା । ଏଥିରୁ ଟିକଏ ଖାଇଲେ କ'ଣ ସବୁ ମାସ ହୋଇଯିବ ! ମାତ୍ର ଲୋକଟା ସବୁ ଦ୍ୱାର ରୁନ୍ଧି ଦେଲାଣି । ଯେତେ କହିଲେ ଛୁଇଁବ ନାହିଁ । ଶୁଣିବ ତ ନାହିଁ, କ'ଣ କରିବ ତମେ ?

"ଆସି ପାହାନ୍ତିଆ ପହରି ହେଲା । ସକାଳୁ ସକାଳୁ କଲକତା ପହଞ୍ଚିଯିବା । ଆଉ ଗାଡ଼ି ପାଇଁ ଯଥେଷ୍ଟ ସମୟ ମିଳିବ । ଟିକଏ ଦକ୍ଷିଣେଶ୍ୱର ଯାଇ ଦର୍ଶନ କରିଆସିଲେ ହୁଏ । ଦେଖାଯାଉ, ସେଇଠି ପହଞ୍ଚିଗଲେ ଠିକ୍ କି ଦେଖିବା ।"

ଦାସେ ତାଙ୍କ ମୁହଁରୁ ଅନେଇଥାନ୍ତି ଏକଲୟରେ । ଶେଷକୁ କହିଲେ, "କ'ଣ କରିବ ମହାଶୟେ, ଏ ଟଙ୍କୁଆଟା ମୋତେ ବଡ଼ ହଇରାଣ କରୁଚି ।···ମତେ ଶେଷକୁ କାହିଁକି ସେ ଚୋକାଟା ଏମିତିଆ ଡରିଲା ?"

ଶତପଥୀ ମହାଶୟେ ବୁଝିଲେ—ଦାସେ ତା'ହେଲେ କିଛି ଶୁଣି ନଥିଲେ । ସେ ମନେ ମନେ ଟିକଏ ହସିଲେ । ଫେର୍ ଦାସେ କହୁଛନ୍ତି, "କାଲି ଦନସାସ୍ ସେ କେମିତିଆ ଖାଲି ବଲବଲ ଗୁହଁଥାଏ । ତା ସ୍ୱଭଜ ପାଖ ଜମା ଗ୍ରୁଞ୍ଜୁ ନ ଥାଏ ।···ମୋ ମନଟା ସବୁଥିରୁ ଓହରି ଆସିଲାଣି ଯେ ହେଲେ ମତେ ଲାଗୁଛି, ମୁଁ ଆଉ ତାଙ୍କୁ କାହାକୁ ଦେଖିପାରିବ ନାହିଁ ।"

"ହେ, ସେ ଫେର୍ ଗୋଟାଏ କ କଥା ! ଯିବା, ନାନା ପୁଣ୍ୟକ୍ଷେତ୍ରରେ ବର୍ଷେ କାଳ୍ପାରେ କଟେଇ ଗୁଲିଆସିବା । ତା ପରେ ତୁମେ ଆସି ସେଇ ଘରେ ରହିବ । କିନ୍ତୁ

ବୁଝିବ, ମୋହ ନ ଥିବ; ସଂସାରଟା କେଡ଼େ ନିର୍ମଳ । ଦେଖ ପ୍ରଭୁଙ୍କ କି ଇଚ୍ଛା ! ସେ ତୁମକୁ ଧୋଇଧାଇ ଠନ୍ ଅଣି ଛାଡ଼ିଦେବେ ।”

“ହଉ, କୌଣସି କଥାରେ ତ ମୁଁ ଆଉ କିଛି କହୁ ନାହିଁ । ଘୁଞ୍ଚି ସକଳ ଆଶା, କଲି ହରି ଭରସା । ଏବିକି ତା'ର ଯାହା ଇଚ୍ଛାନା ! ସେ ଭାବିବ, ଗୁଡ଼ାଏ ଦୁରବଗ ବୁଲେଇ ସମୁଦ୍ରରେ ନେଇ ବୁଡ଼େଇବ । ବୁଡ଼େଇବ, ଏବେ ସେଥିରେ ମୋର କ'ଣ ବା ଆପତ୍ତି ଅଛି !···ନଇଲେ ଆଜ୍ଞା, ମୁଁ କିଏ ଏ ଗୃହସ୍ଥ କିଏ ! ଆପଣ ବା କାହିଁକି ମୋ ଉପରେ ଏମିତି ଦୟା ଦେଖେଇଆନ୍ତେ ?”

“କଥା ପ୍ରକୃତ ବାପେ, ତାର ଇଚ୍ଛା ନ ଥିଲେ ଗଛରେ ପତ୍ରଟିଏ ସୁଦ୍ଧା ହଲିବ ନାହିଁ ।”

ଗୋଟେ ଷ୍ଟେସନରେ ଆସି ରେଲ ରହିଲା । ବାହାରେ ଧାଁ ଦଉଡ଼, ଡକାହକା । ଶେଷକୁ ଦଶପନ୍ଦର ଜଣ ଏକାଠି ଉଠିଲେ ସେଇ ଡବାରେ । ଭିତରେ ଯୋଗଷ ପକେଇବାକୁ ଜାଗା ନାହିଁ । ଗୁଡ଼ାଏ ପାଟିତୁଣ୍ଡ ଭିତରେ କଳି ତକରାଳ ନ ମାନି ସବୁ ପଶି-ଆସିଲେ । କିଏ କାହାକୁ ପେଲି ବସିଲା, କିଏ ତା' ବାକସଖଣ୍ଡ ଥୋଇ ତା' ଉପରେ ବସିପଡ଼ିଲା । ଗୋଟାଏ ସେଥିରୁ ତା ପାଖ ଷ୍ଟେସନରେ ଓହ୍ଲେଇବ ନା କ'ଣ ତାକୁ ସବୁଠୁଁ ବେଶି ତଡ଼ବଡ଼—ସେ ଉପର ଥାକକୁ ଚଢ଼ିଯାଇ ସେଠି ଆଗ ଶୋଇପଡ଼ିଲା ।

‘ଅଦ୍ଭୁତ !' ତାଙ୍କୁ ବାପେ ଦେଖୁଥାନ୍ତି ଆଉ ଭାବୁଥାନ୍ତି । କେତେ ସଂସାରର କେତେ ଲୋକ ଏ ଭିତରେ ଏକାଠି ବସିଯାଇଛନ୍ତି । ଠେଲି ପେଲି ତ ଯିବାକୁ ହେବ, ନ ଗଲେ ନ ଚଳେ । କିଏ କୋଉ କାମରେ ଯାଉଥିବ । ସବୁ କଷ୍ଟ କରି ଯାଉଥିଲେ ଏତେ ଦିନ କି ସେତେ ଦିନ ଭିତରେ ସିଏ ଯାହା ଘରକୁ ଫେରିଆସିବେ ।

ଛବି ଦେଖିଲା ପରି ସେ ଦେଖୁଚନ୍ତି । •

ସେ ଲୋକଟାର ବଡ଼ଟଣା ମୁହଁ, ସୁନାମୁଦିଆ ହାତ । ତା ପାଖକୁ ମେଲା ଦେହରେ ସେ ପିଲଟା ।···ଇଃ, ସେ ବୁଢ଼ା କି ଭୟଙ୍କର ଦଣ୍ଡୁଛି ଶୋଇପଡ଼ିଲେ । ସବୁ ବୁଢ଼ାଯାକ ଏମିତି ଅପଚ୍ଛନ୍ଦିଆ ଦିଶୁଥିବେ । ପାଟିଟା ମେଲା ହୋଇଯାଇଚି, ଭିତରେ ଗୋଟେ ବୋଲି ଦାନ୍ତ ନାହିଁ ।

ଓଃ କେତେ ଲୋକ ମ ସତେ ଏ ଡବାଟାରେ !

ସେଆଡ଼୍ ମୁହଁ ଫେରେଇନେଇ ସେ ବାହାରକୁ ଚାହିଁଲେ । ତାରାଗୁଡ଼ାକ ବେଶ୍ ପରିଷ୍କାର ଦେଖାଯାଉଥାନ୍ତି । ସପ୍ତର୍ଷିମଣ୍ଡଳର ଟେନଟା ତାରା ଦାଉଦାଉ ହୋଇ ଦିଶୁଥାନ୍ତି ।

ଶତପଥୀଏ ମଧ୍ୟ ସେଇ ଲୋକଗୁଡ଼ାକୁ ଦେଖୁଥାନ୍ତି । ସେମାନଙ୍କର ଅଗଣିତ ଇଚ୍ଛା କଳନା କରିବାକୁ ଯାଇ ବିସ୍ମୟରେ ହଟିଯାଉଥାନ୍ତି । ଏସବୁ ମୋହ-ଜାଲରେ ପଡ଼ି କି ଆବେଗରେ ଅଥଚ କି ଅସହାୟ ଭାବରେ ନିଜ ନିଜ ବାଟ ଧରି ଚାଲିଛନ୍ତି । କାର କେତେ ପ୍ରକାର ବୁଜୁଲା, କେତେ ପ୍ରକାର ଦାୟିତ୍ୱ ଟିକିଏ ଭିତରକୁ ଚାହିଁଲେ କ'ଣ ବୁଝିଯାନ୍ତେ ନାହିଁ ? କିନ୍ତୁ ସେଥିପାଇଁ ତାଙ୍କୁ ଡର କାହିଁ ? ତାଙ୍କୁ ତ ପଛରୁ ତଡ଼ୁଛି, ଆଗରୁ ଟାଣୁଛି ।

ତା'ର ନିଜର ଉଦ୍ଦେଶ୍ୟର ଏଗୁଡ଼ିକୁ ନିମିତ୍ତ ରୂପେ ବ୍ୟବହାର କରୁଛି । ଅଭ୍ରଭେଦୀ ଏ କୋଟି କୋଟି ମୂର୍ତ୍ତି ପରିଗ୍ରହ କରି ଏ ଜଡ଼ ଚେତନର ମହାଯାତ୍ରାରେ କ'ଣ ଯେ କରେ ତା' ସେହି କେବଳ ଜାଣେ ! "ହେ ସହସ୍ରଶୀର୍ଷା ପୁରୁଷ ସହସ୍ରାକ୍ଷ, ସହସ୍ରପାତ୍ ତୁମକୁ ନମସ୍କାର !"

ହାତଯୋଡ଼ି ଶତପଥୀ ମହାଶୟେ ଆଖିବୁଜି ବସିଗଲେ ।

ଏମିତି କେତେ ସମୟ କଟିଯାଇଛି ।

ଅକସ୍ମାତ୍ ଡବା ଭିତରେ କିଏ ଜଣେ ବଡ଼ପାଟିରେ ଗାଇଉଠିଲା—"ମହିମା ଶୁଣିମା ହେଉ ଗରିବ ଡାକ, ନିରକ୍ଷ ଜନକୁ ରଖ ପଙ୍କଜମୁଖ ହେ !"

"ଆରେ ରଃ !" କିଏ ଜଣେ ଗୁଡ଼ି ହିଦର ବେହୋସ ଭିତରୁ କହିଲା, "ରାତି ଅଧରେ ଆସି ଗୋଟେ ବୋବେଇଲା !"

"ସକାଳ ହେଲାଣି ଅଜ୍ଞ ! ତୁଣ୍ଡରେ ଶ୍ରୀହରି ଜପି ଉଠନ୍ତୁ । ଅନ୍ଧକୁ ଦୟା କରନ୍ତୁ, ପୁଣ୍ୟ ହେବ । ସେଇ ବଳିଆରଭୁଜ ଆପଣଙ୍କର ସକଳ କାର୍ଯ୍ୟ ସିଦ୍ଧ କରିବେ ।

ଦୟା ସାଗର କାହିଁକି, ମୋ ବେଳକୁ ଗଲ ଶୁଖି
ଜାଣିଲି ମୋ କର୍ମ ବାଙ୍କ ନୁହେ ସଳଖ ହେ !
ମହିମା ଶୁଣିମା ହେଉ ଗରିବ ଡାକ ।"

ଦାସେ ଧଡ଼ପଡ଼ ଅଣ୍ଟାରୁ କ'ଣ ପଇସା ଥିଲା, କାଢ଼ି ଅନ୍ଧର ପାପୁଲିରେ ପକେଇଦେଲେ ।

"ପ୍ରଭୁ ଆପଣଙ୍କର ମଙ୍ଗଳ କରିବେ ଆଜ୍ଞା !"

ଦେଖାଦେଖି ଆଉ କେତେ ଜଣ ମଧ ପଇସା ତା ହାତରେ ଦେଲେ । ସେ ସମସ୍ତଙ୍କର ମଙ୍ଗଳ ମନାସି କରି କରି ଆଗେଇଲା । ଶତପଥୀ ମହାଶୟେ ମଧ ଶେଷକୁ ଆଠଣିଟାଏ ତା ହାତକୁ ପକେଇଦେଲେ । ସେ ଶବ୍ଦକୁ ବାରିଦେଲା । ଟିକିଏ ଦଣ୍ଡି ଦେଇ କୃତକୃତ୍ୟ ହୋଇ ଗୁଡ଼ାଏ କ'ଣ କହିଲା ।

ତବାର ଅନ୍ୟ ସମସ୍ତେ ଅଳ୍ପ ବୁଝିଲେ; ଅଳ୍ପ ଆଶ୍ଚର୍ଯ୍ୟ ହୋଇ ଶତପଥୀଙ୍କ ଆଡ଼େ ଚାହିଁଲେ । ସେ କିନ୍ତୁ ନିସ୍ପୃହ ଭାବରେ ସେମିତି ବସିଥାନ୍ତି । ଦାସେ ତ ସହଜେ କିଛି ବୁଝିବା ଅବସ୍ଥାରେ ନଥାନ୍ତି, ସେ ବି ସେମିତି ତୁନି ହୋଇ ବସିଗଲେ ।

ରେଳ ଚାଲିଥାଏ !

ଦାସେ କିଛି ସମୟ ପରେ ବାହାରକୁ ମୁଣ୍ଡ ଗଳେଇ ଚାହିଁଲେ । ତାଙ୍କ ହୃଦୟରେ ଆତୁର ଗୋଟିଏ ପାହାନ୍ତିଆ । ଇସ କେଡ଼େ ନିର୍ମଳିଆ ନୂଆ ରାଜ୍ୟ ଏଗୁଡ଼ାକ ! ଆଉ ଏ ତାରାଗୁଡ଼ାକ କେଡ଼େ ପୁରୁଣା !! ପାତଳ ଅନ୍ଧାର ଭିତରେ କଳା କଳା ଜାକରିଆ ଗଛ ସାଇଁ ସାଇଁ ପଛକୁ ଛୁଟି ହୋଇ ଯାଉଥାନ୍ତି । ଟିକିଏ ଦୂରକୁ ଢେଉଆ ମାଟିଆ ଧାନବିଲ ଉପରେ କୁହୁଡ଼ିମିଶା ଅନ୍ଧାର ଶୋଇ ରହିଥାଏ । ହଠାତ୍ ଦାସଙ୍କୁ ଲାଗିଲା, ରେଳର ଘୁଘୁ ଶବ୍ଦ କେମିତିଆ ଦୂରେଇଯାଉଛି । କେତେ ଦୂରରେ ଏ ତାରାଟା ଆଉ ଜମା ହଲୁନାହିଁ ।

ଏ ଆକାଶଟା ବ ବେଶ୍ ସ୍ଥିରହୋଇ ରହିଛି । —କାହିଁ, ଆଉ ତ ଜମା ଗର୍ଜ୍ଜନ ଶୁଭୁ-ନାହିଁ କ ରେଲଟା ମଧ୍ୟ ଚାଲୁ ନାହିଁ !···ଆରେ ମୁଁ ଏମିତିଆ ଛଣ୍ଣାସିଆଟା କାହିଁକି ହୋଇଯାଉଛି ?

ବାସ୍ତବିକ, ଗୋଟାଏ ଅଜାଗାରେ ରେଲ ରହିଯାଇଛି । ଷ୍ଟେସନ ନୁହେଁ ଯେ ଲୋକ ଚଢ଼ିବେ ବା ଓହ୍ଲେଇବେ । ଭିତର ବାହାର ନିସ୍ତବଧ ହୋଇ ରହିଛି । ଦାସେ ଝରକା ବାଟେ ବାହାରକୁ ଅନେଇ ବସିଥାନ୍ତି । କୌଣସି ଗମ୍ଭୀରଆ ଆବେଗ ପାଇଁ ବୋଧହୁଏ ତାଙ୍କ ଦେହସାରା ଥରୁଥାଏ । ଶତପଥୀ ମହାଶୟେ ଦେଖିଲେ, ମାତ୍ର କିଛି ନ କହି ଆଖିବୁଜି ବସିଲେ ।

ଅଳ୍ପ ସମୟ ଯାଇଛି କି ନାହିଁ, ଏକ ପ୍ରକାର ଅଦ୍ଭୁତ ଚିତ୍କାରରେ ଘୁରିଦେଲେ । ଦାସେ ଆସ୍ତେ ବାହାରୁ ମୁହଁ ବୁଲେଇ ଆଣୁଛନ୍ତି । ଆଖି ଦୁଇଟା ତାଙ୍କର ତରାଟି ହୋଇ ରହିଥାଏ । କପାଳରେ ଘମଝାଳର ଚାମ୍ପ । ସେ ଶତପଥୀଙ୍କର ହାତଟାକୁ ଅଶ୍ରା ପାଇଲା ପରି ଧରି ପକାଇଲେ । ହାତ ଯୋଡ଼ାକ ତାଙ୍କର ଠକ୍‌ଠକ୍ ହୋଇ ଥରୁଥାଏ । ପଣ୍ଡିତେ ଅନୁମାନ କଲେ ଯେ ଦାସଙ୍କ ମନରେ ଖୁବ୍ ଆଘାତ ଦେଲା ଭଳି କିଛି ଗୋଟାଏ ଭାବନା ଆସିଛି । ଏତିକିବେଳେ ରେଲ ଭୁସ୍ ଭୁସ ଧୂଆଁ ଗୁଡ଼ି ଆଗେଇଲା । ଡବାଟା ଭିତରେ ଟିକିଏ ଖସ୍‌ଖାସ୍ ହେଲା । ଅଳ୍ପ ନିଦୁଆ ସ୍ୱରରେ କଥାଭାଷା ଶୁଭିଲା । ଅଳ୍ପ ଥଙ୍ଗେଇଲା ପରି ଦାସେ କହିଲେ, "ବଡ଼ ଅସୁସ୍ଥ ଲାଗିଲା ଆଜ୍ଞା, କାହିଁକି କେଜାଣି ମୁଣ୍ଡଟା ଝାଉଁକିନା ବୁଲେଇଦେଲା । ···ମତେ ଲାଗିଲା ମୁଁ ଡବା ଭିତରୁ ଏମିତିଆ ଅସ୍ତନକ ଶୂନ୍ୟକୁ ଗଳି ପଡ଼ୁଛି !! ···ମଝିଶିରୁ ହୃଦ୍‌ଟା ଠକ୍ ଠକ୍ ହୋଇ ଥରିଲା । ଭୟରେ ପାଟିଟାଏ କରିଦେଲି । ···ଓହୋ, ମତେ କାହିଁକି ଲାଗୁଛି ଯେ, ଏମିତି ସକାଳ ପହରଟାରେ କେଉଁଦିନ ହେଲେ ମୁଁ ମରିବି !!"

ଶତପଥୀ ମହାଶୟେ ଦାସଙ୍କ ମନର ଅବସ୍ଥା ବୁଝିନେଲେ । ଏଇ ନିଗ୍ରୁଟିଆ ପାଆନ୍ତିଆ ପହର । ଡବାର ସମସ୍ତେ ଘୁମଉଛନ୍ତି । କେବଳ ରେଲଟା ଗୁଡ଼ାଏ ଶବ୍ଦ କରି ଆଗେଇଚି—ଏସବୁ ଯେ କୌଣସି ବୁଝିବା ଲୋକ ମନରେ ଭାବାନ୍ତର ଆଣିବ । ଦାସଙ୍କର ଏକେ ଯାଉଡ଼ିଆ ମନ, ଟିକିଏ ଖୋଲା ପବନ ବାଜିଗଲେ ସିର୍‌ସିର୍ ହୋଇ ରକ୍ତ ଝରିଯାଉଛି !

ସେ ପ୍ରସଙ୍ଗ ବଦଳାଇ କହିଲେ, "ଆଚ୍ଛା, ଆମେ ଯାଇ ଏକାଥରେ ଦକ୍ଷିଣେଶ୍ବରରେ ଶୌଚ ହୋଇଗଲେ ଯାଏ ।"

"ହଉ, ଆପଣ ଯାହା କହିବେ । ମାତ୍ର ମୋ'ର ତ ସଂସାରରୁ ମନ ଭାଙ୍ଗିଗଲା ବୋଲି ମୁଁ ଏ ତୀର୍ଥାଟନରେ ବାହାରିପଡ଼ିଲି; ମତେ କାହିଁକି ଏମିତି ଲାଗୁଛି କହିଲେ ? ମତେ ଲାଗୁଛି ଯେ ରଘୁନାଥ, ତା ପିଲାପିଲି, ଟୁକୁଆ, ଭାଇଗ, ବଟ ସବୁ ମିଶି ମତେ ଡାକୁଛନ୍ତି; ଆଉ ମୁଁ ତାଙ୍କ ଆଡ଼କୁ ନ ଚାହିଁ ଏକମୁହାଁ କୁଆଡ଼େ ପଳେଇଲି ପରି ଲାଗୁଛି । ···ଟାଣି ହୋଇ ଏମିତି ଭିଡ଼ା ଓଟରୁ ଖାଇ ଭିତରଟା ମୋର ଦୁହିଁ ହୋଇଗଲା ପରି ଲାଗୁଥିଲା । ମାତ୍ର

ବେଳଗେ ମନେ ହିକଏ ଉଣ୍ଡାପିଆ ଲଗୁଛ । ମୁଁ ବୁଝିପାରୁଛି ଯେ ମୋର ଆଉ ଫେରିବାର ନୁହେଁ ।...ଝୁଣ୍ଟିପଡ଼ ନଖଟା ରକ୍ତ ସଳଖଳ ହୋଇ ଉଳୁଣିଗଲେ ତାକୁ ତ ଆଉ ଯୋଡ଼ିଲେ ଯୋଡ଼ି ହେବ ନାହିଁ ! ତାକୁ ଯେତେ କଷ୍ଟ ହେଉ ପଛେ ଛିଣ୍ଡେଇ ପକେଇଦେବାକୁ ହେବ । ରଘୁନାଥର ବଡ଼ ପୁଅଟା ଦେହ କ'ଣ ଅସୁସ୍ଥ ଥିଲା । ଏଇ ବଡ଼ ନାତିଟା ତାକୁ ଖାଇ ଦେଲେ ।"

"ଗ୍ରହଙ୍କୁ, ସେଥିରେ ଆଉ କ'ଣ ଥାଏ ?"

ମୁଣ୍ଡ ଉପରେ ହାତଟା ବୁଲାଉଥାନ୍ତି ଦାସେ । ହିକଏ ଅନ୍ୟମନସ୍କ ଭାବରେ ମନକୁ ମନ କଥା କହିଲା ପରି କହିଲେ, "ଦୂରେଇ ଗଲେ ପରେଇ ଯାଆନ୍ତି ପରା !!"

ମହାଶୟେ ଦାସଙ୍କ ମନ ଭିତରର ଧର୍ମଯୁଦ୍ଧ ଠିକ ଦେଖିପାରୁଥାନ୍ତି ଯେ ହେଲେ ସେଥିରେ ଶୁନପଡ଼ି ରହିବା ଛଡ଼ା ଆଉ କିଛି କହିବା ବା କ୍ରୋବା ବଧ୍ୟ ନୁହେଁ ବୋଲି ସେ ବୁଝି ଯାଇଛନ୍ତି । ଯାହା ତାଙ୍କୁ ଜଣାଯାଉଥାଏ, ବୋଧହୁଏ ଯୁଦ୍ଧ ସରି ଆସିଲାଣି । ଏଣିକି ଯୁଧିଷ୍ଠିରଙ୍କ ଧର୍ମଚକ ତାଙ୍କୁ ରାଜଗାଦିରେ ବସେଇବ, କୁରୁକୁଳ ନିପାତ ହେବେ ।

ଏଇଠୁ କିନ୍ତୁ ଶତପଥୀ ମହାଶୟଙ୍କ ଭାବାନ୍ତର ଆସିଲା ।

"ଆହା ବିଚରା ଧୃତରାଷ୍ଟ୍ର ! ଶହେ ପୁଅ ତାର କୌଣସି କାମକୁ ହେଲେ ନାହିଁ । ଶେଷକୁ ପାଞ୍ଚଟି ପାଣ୍ଡବ ତାଙ୍କୁ ନିପାତ କରିଦେଲେ । ...ଏଇଟା ତ କାଳକାଳ ଧରି ଘଟିଆସୁଛି । ସେଥିରେ ପରା ନିଜେ ନିସ୍ପୃହା ରହିଯାଉଛି, ନିରାସ୍ୱାଦ ହୋଇ ରଥ ଦଉଡ଼ି ଧରୁଛି, ଏଣେ ସମସ୍ତଙ୍କୁ ବୁଦ୍ଧିରୁ କାଟ ଯାଏ ନିମିତ୍ତ କରି ଉପଯୋଗ କରୁଛି । ଏଥିରେ ଅର୍ଜୁନ ଜିଣିବ ନାହିଁ ତ ଆଉ କିଏ ଜିଣିବ ? ମହାସମର ଯଜ୍ଞରେ ନିମିତ୍ତ ହେବା କ'ଣ କମ୍ ଯୋଗ୍ୟତାର ବିଷୟ !"

ଆଖି ଫିଟେଇ ଦେଖିଲେ, ଖୁବ୍ ଆଲୁଅ ହେଇଗଲାଣି । ଅରୁଣୋଦୟ ହୋଇ ଅସୁଥାଏ । ପଣ୍ଡିତେ ମନ ସ୍ଥିର ରଖି ମନ୍ତ୍ରପାଠ କଲେ:—

"ଯଜ୍ଜାଗ୍ରତୋ ଦୂରମୁଦୈତି ଦୈବଂ ତଦୁସୁପ୍ତସ୍ୟ ତଥୈବୈତି,
ଦୂରଙ୍ଗମଂ ଜ୍ୟୋତିଷାଂ ଜ୍ୟୋତିରେକଂ ତନ୍ମେ ମନଃ ଶିବ ସଂକଳ୍ପମସ୍ତୁ ।"

ଦାସଙ୍କ ଆଖି କିଛି ସମୟ ପାଇଁ ବୁଜି ହୋଇଯାଇଥିଲା । ସେ ଆଖି ମିଟିମିଟି କରି ଫିଟେଇ ଭାବିଲେ, ନୀଳକଣ୍ଠ ପଣ୍ଡିତ କୋଉଠୁ ଆସି ବେଦ ବୋଲୁଛି । ସେ ଅବିକଳ ଏମିତିଆ ସ୍ୱର ଲମ୍ବେଇ ଗାଏ ବୋଲି ଦାସେ ମନେମନେ ତାକୁ କେତେ ହସନ୍ତି । ଦେଖିଲେ, ପଣ୍ଡିତ ମହାଶୟେ ନିବିଷ୍ଟ ମନରେ ଗାଉଚନ୍ତି । ଜବା ଭିତରେ ଗୁରିଆଡ଼େ ଆଖି ପକେଇ-ନେଲେ । କୋକବାକ ସବୁ ଚେତା ହେଇଗଲେଣି । ବେଶ୍ ଆଲୁଅ ହେଇଗଲାଣି । ସେ ବହୁଦିନ ତଳେ ଯେମିତି ବୋଲୁଥିଲେ, ସେମିତି ଅଳ୍ପ ଅଳ୍ପ କରି ପ୍ରଭାତି ପଢ଼ିଲେ—

"ବ୍ରହ୍ମା ମୁରାରି ସ୍ତ୍ରୀପୁରାନ୍ତକାଶ୍ଚ, ଭାନୁ, ଶଶୀ ଭୂମିସୁତୋ ବୁଧଶ୍ଚ,
ଗୁରୁଶ୍ଚ ଶୁକ୍ରଂ ଶନି ରାହୁ କେତୁ କୁର୍ବନ୍ତୁ ସର୍ବେ ମମ ସୁପ୍ରଭାତଂ ।"

ପଣ୍ଡିତ ମହାଶୟେ ଏକ ଲୟରେ ବାହାରକୁ ଚାହିଁ ରହିଛନ୍ତି । ଆଖିଯୋଡ଼ିକ ଅଧା ବୁଜା ହୋଇଛି । ଜଣାଯାଉଛି, ସେ ଯେପରି ଆଉ ଏକ ରାଜ୍ୟରେ ଯାଇ ପହଞ୍ଚିଗଲେଣି । କାହିଁ ଭିତରୁ ତାଙ୍କର ଅଧା ଅଧା ଶୁଣାଯାଉଛି ଶବ୍ଦ—"ଜୟ ପ୍ରଣାସନ ରାଗି ।..."

ଦାସଙ୍କ ମନରେ ଭକ୍ତି ଆସିଛି । ସେ ଶତପଥୀଙ୍କୁ ମନେ ମନେ ନମସ୍କାର ଜଣାଇ ଅପେକ୍ଷା କରି ବସିଥାନ୍ତି । ତାଙ୍କ ଭିତରୁ ଅହଂକାର ବାହାରିଯାଇଛି । ପାହାନ୍ତିଆ ପହରର ଦ୍ୱନ୍ଦ୍ୱ ମଧ୍ୟ ଚାଲିଯାଇଛି । ବାହାରେ ଆଲୁଅ ଫାଟିପଡ଼ିଲା ପରି ତାଙ୍କ ଭିତରେ ମଧ୍ୟ ପ୍ରସ୍ତୁ ପ୍ରସ୍ତୁ ହୋଇ ଆଲୁଅ ଗ୍ରାସି ହୋଇଆସୁଛି ।

ରାତିର ମଶିଆ କୋଚଟିଆ ଯାତ୍ରୀସବୁ ଅଧେ ଓହ୍ଲେଇ ଗଲେଣି । ବାକି ଅଧେ ଜିନଷପତ୍ର ସମ୍ଭାଳୁଥାନ୍ତି, ପିଲାଙ୍କ ଉଠାଉଥା'ନ୍ତି ଆଉ ବୁଝୁଥାନ୍ତି । ଯୋଗଦ୍ୟାୟିକିଆ କେତେ ଜଣ ନୂଆ ଲୋକ ଆସି ଚଢ଼ିଗଲେଣି । ସେସବୁ କାହା ଦେହକୁ କେହି ନ ଲାଗି ଛଡ଼େଇ ହୋଇ ବସିଛନ୍ତି । ସମସ୍ତେ ଯାଇ କଲିକତାରେ ଓହ୍ଲେଇବେ ।

ଦାସେ ଉଠି ଟିକିଏ ଗୋଡ଼ହାତ ସଳଖିଲେ । ଗଣ୍ଠି ଗୁଡ଼ାକ ଲଖିଯାଇଥାନ୍ତି । ଶତପଥୀ ମହାଶୟେ ସେମିତି ବସିଥାଆନ୍ତି । ଦାସଙ୍କୁ ଆଶ୍ଚର୍ଯ୍ୟ ଲାଗିଲା ଯେ, ସେ ଏ ମହାତ୍ମାଙ୍କ ସାଙ୍ଗରେ ଛନ୍ଦ ହେଲେ କେମିତି ? ସ୍ୱାମୀଙ୍କର ତ କୌଣସି ବିଷୟରେ ଆଉ କିଛି ଥିଲା ପରି ଜଣା ପଡ଼ୁ ନାହିଁ । "ହରି ପ୍ରଭୁ, ତୁମରି ଇଚ୍ଛା ।"

ପାଠପଢ଼ୁଆ ଟୋକା ଦି'ଜଣ କବାଟକୁ ଜଗି ଠିଆ ହୋଇଥା'ନ୍ତି । ଶତପଥୀଙ୍କୁ ଚାହିଁ ତାଙ୍କ ମନକୁ ମନ ହସୁଥାନ୍ତି । ଏ ବୁଢ଼ାଟା ଏମିତି କ'ଣ ଚାହିଁଛି ! କ'ଣ ଗୁଡ଼ାଏ ଏମିତିଆ ଶ୍ଳୋକ ବୋଲି ପକଉଛି !!

କେତେବେଳକେ ଶତପଥୀଙ୍କ ଅଖିରେ ମଟକା ପଡ଼ିଲା । ସେ ଚାରିଆଡ଼କୁ ବଡ଼ ସରାଗରେ ଚାହିଁଗଲେ, ଯେମିତି ଆଶୀର୍ବାଦ କରୁଛନ୍ତି !

ବାହାରେ ଖାଲି ଧାଡ଼ି ଧାଡ଼ି, ଯୋରି ଯୋରି ହୋଇ ସାପ ପଡ଼ିଲା ପରି ରେଲପଥ, କାହିଁ କେତେ ବାଟ ପର୍ଯ୍ୟନ୍ତ ପଡ଼ିଛି । ଆରପଟେ ମଧ୍ୟ ସେଇଆ । ଓଃ, କେତେ ରେଲ ଏଠି ଗତାଗତ ହଉ ନ ଥିବ ! ଦାସେ ପିଲାଟିଏ ପରି ଚାହିଁ ରହିଥିବା ଦେଖି ପଣ୍ଡିତଙ୍କୁ ଆହୁରି ଆମୋଦ ଲାଗୁଛି । ଗାଡ଼ିଟା ଧଡ଼ର ଧଡ଼ର ହୋଇ ରହିଲା ଚହିଲା ପରି ଅଟେଇ ଅଟେଇ ଚାଲିଛି । ଏତେବେଳକୁ ଯାତ୍ରୀସବୁ ଡବାର ବାଟ ଆଗୁଳି ଠିଆହୋଇ ଲମ୍ବି ଲମ୍ବି କ'ଣସବୁ ଦେଖୁଛନ୍ତି । ଦାସେ ଭାବୁଥାନ୍ତି, ଏଇ ରହିଲା, ମାତ୍ର କାହିଁ ? ଆହୁରି ଚାଲିଛି !

କାହିଁ କେତେବେଳକୁ ଯାଇ ଗାଡ଼ି ଠିଆହେଲା ।

ଟୋକା ଯୋଡ଼ିକ ଆଗ ଓହ୍ଲେଇଗଲେ । ସାଙ୍ଗେ ସାଙ୍ଗେ କାହାକୁ ଦେଖି ମୁଣ୍ଡ ନୁଆଁଇ ଓଳଗି ହୋଇ ବାଟ ଛାଡ଼ି ଠିଆହେଲେ । ତାଙ୍କୁ ବୟସ ବୋଧହୁଏ ହେବ ପଚିଶ । ଖୁବ୍ ମୋଟାସୋଟା, ବେକକୁ ମୁଣ୍ଡ ଲାଗି ଜଣେ ଲୋକ । ସେ ଏକମୁହାଁ ଡବା ଭିତରେ ପଶିଆସି ଶତପଥୀଙ୍କ ପାଦ ଉପରେ ମୁଣ୍ଡ ଲଗାଇ ଅନେକ ଥର ମୁଣ୍ଡିଆ ମାରିଲା ପରେ ଉଠି ଠିଆହେଲେ ।

ଶତପଥୀ ମହାଶୟ ତାଙ୍କ ମୁଣ୍ଡରେ ହାତ ରଖି ଆଶୀର୍ବାଦ କଲେ ।

"କହେ ବିମଳ ; ତୁମେ କୁଆଡ଼େ ଆସିଲ ?"

"ଆମାକେ ସମ୍ଭୁ ଜାନିୟେଛିଲ ଯେ ବାବା ଯାଚ୍ଛେନ୍ କଲକାତା । ଏବାର୍ ଉନି ଆର୍ଡ୍କ୍ସାସେ ଯାଚ୍ଛେନ୍ ବଲେଓ ଲିଖେଛିଲ୍ । ସମ୍ଭାଏ କିଛୁ ଅସୁବିଧା ହଏନି ତ ସାର୍ ?"

ବାହାରୁ ଟୋକା ଦ'ଟି କାବା ହୋଇ ଚାହିଁଥାନ୍ତି । କଥାଟା ବୁଝିବାକୁ ବୋଧହୁଏ ତାକୁ ସମୟ ଲାଗୁଥାଏ ।

ଦାସଙ୍କୁ ଦେଖି ଭଦ୍ରଲୋକଟି ଅଳ୍ପ ଦୋଦୋପାଞ୍ଚ ହୋଇ କହିଲେ, "ଇନି କି, ଆପ୍‌ନାର୍···ମାନେ···"

"ହଁ ସେ ମୋ ସାଙ୍ଗେ ପରା ଆସିଛନ୍ତି । ଆମେ ସାଙ୍ଗ ହୋଇ ତୀର୍ଥାଟନ କରିବୁ ।"

ଏକଥା ଶୁଣିବା ମାତ୍ରେ ସେ ଦାସଙ୍କ ପାଦଧୂଳି ନେଇ ମୁଣ୍ଡରେ ଲଗେଇଲେ, ଆଉ ଭାରି ଉତ୍ସାହରେ ଲୋକ ଲଗେଇ ପଣ୍ଡିତଙ୍କ ବାକ୍ସ ଖଣ୍ଡ କଢ଼େଇନେଲେ । ଦାସଙ୍କ ଝୋଲାଖଣ୍ଡିକ ନିଜେ ଧରି ଓହ୍ଲେଇଲେ ।

ଶତପଥୀ ମହାଶୟେ ଦାସଙ୍କୁ ବୁଝାଇ କହିଲେ ଯେ ସେ ଜଣେକ ତାଙ୍କର ପୁରୁଣା ଛାତ୍ର, ବର୍ତ୍ତମାନ ପ୍ରଫେସର କାମ କରନ୍ତି—ଭାରି ଭଲ ପିଲା । ରେଲରୁ ଓହ୍ଲେଇ ଦାସେ ତଳେ ଦେଖିଲେ ହଜାର ହଜାର ଲୋକଙ୍କ ଭିଡ଼ । ଉପରେ ଚନ୍ଦ୍ରଉଦିଆ ପରି ଆଲୁଅ ଜଳୁଛି । ତା ଉପରେ ତା ଉପରେ ଲଦି ସାତଟା ବାକ୍ସ ମୁଣ୍ଡରେ, ଏ ହାତରେ ବୋଝ, ସେ ହାତରେ ପାଣି ପୁରେଇ ଧରି ହାତୀ ଚାଲିଲା ପରି ଗୋଟେ କୁଲି ଚାଲିଗଲା ।···ଓଃ କେତେ ସେ ବୋହୁଛି, ଅଉ ଯଦି ପଡ଼ିବ ତ କ'ଣ ହବ !!

କୁଲି ପଛରେ ସେ ଗୋଟିଏ ପରିବାର ହେବ ପରା ! ଓଃ କି ଗୋରା ସମସ୍ତେ ! ଲୋକଟିକ ବୟସ ହବ ଚାଳିଶ ଉପରକୁ, ହେଲେ ବେଶ୍ ଚକ୍‌ଚକ ଦେଖେଇ । ତାଙ୍କ ପଛକୁ ଲାଗି ମୋଟୀ ହୋଇ ମାଇକିନିଆ ଜଣେ । ମୁହଁରେ ଆଙ୍ଗୁଠି ହଲେଇଲେ ଦିଶିବ—ଖାଲି ଯାହାକୁ କହନ୍ତି ଦାଉ ଦାଉ ଗୋରା । ତାଙ୍କ ପଛକୁ ଡେଙ୍ଗୀହୋଇ ଝିଅଟିଏ । ମୁଣ୍ଡରେ କଳା ମଚମଚ ବାଳ । ପାଳ ନୋଳ ପରି ଗୋଟା ବେଣୀ ଗୋଡ଼ୁ ପର୍ଯ୍ୟନ୍ତ ପଡ଼ିଛି । ସେ ସାଏବ ଟୋକା ପରି ବାର ଚୌଦ ବର୍ଷର ପିଲାଟାକୁ—ତା ଭାଇ ହେବ ନିଶ୍ଚୟ—କ'ଣ ଧରିଥିଲା, ଧରେଇ ଦେଇ ତରତର ହୋଇ ଦାସ ହେରକାଙ୍କ ଆଡ଼କୁ ଚାଲିଆସିଲେ । ବିମଳବାବୁଙ୍କ ମୁଣ୍ଡ ନୁଆଇଁ ଦଣ୍ଡବତଟିଏ କରି ଠିଆହେଲା । ସେ ଝିଅଟିକୁ ଥରେ ମାତ୍ର ଚାହିଁ ପଚାରିଲେ, "କୋଥାଏ ଗିଏଛିଲି ରେ !"

ଝିଅଟିର ବାପ ମା' ମଧ୍ୟ ଚାଲିଆସି ତାଙ୍କୁ ନମସ୍କାର କଲେ । ସେ କିନ୍ତୁ ଶତପଥୀ ମହାଶୟଙ୍କ ବାକ୍ସଟି କୁଲି ମୁଣ୍ଡକୁ ଟେକ ଦଉଥାନ୍ତି । ଶେଷକୁ ପାଦ କାଢ଼ି ସେମାନଙ୍କୁ କହିଲେ, "ଅପନି କିଛୁ ମନେ କରବେନ୍ ନା ! ଆମି ଏଖନ୍ ଏକଟୁ ବ୍ୟସ୍ତ ଆଛି ।"

ସେମାନେ ଶତପଥୀଙ୍କୁ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ । ଦାସଙ୍କୁ ମଧ୍ୟ ଗୋଡ଼ଠୁଁ ମୁଣ୍ଡ ଯାଏ ଚାହିଁଗଲେ । ମନକୁ ମନ ତାଙ୍କ ଭିତରେ ଫୁସ୍‌ଫାସ୍ କଥା ହୋଇ ଚାଲିଗଲେ ।

ଷ୍ଟେସନ ବାହାରେ ଲୋକ, ଘୋଡ଼ାଗାଡ଼ି, ମଟର ଅନେକ । ଦାସଙ୍କୁ ଆକାଶିଆ ଆକାଶିଆ ଲାଗୁଥାଏ । କେଡ଼େ ବଡ଼ ଜାଗା କଲିକତା ସହର, କେତେ ଲୋକବାକ—ଇସ୍, ମଣିଷଟା ମାଛିଟାଏ ଏଠି । ହାଁ,ଅଡ଼େ ଚାହିଁଲେ କେଡ଼େ ବଡ଼ ହାବଡ଼ା ପୋଲ । ଏଇଆ ଦେଖିବାକୁ ଅନେକ ଲୋକ ଆସନ୍ତି···ନୂଆ ଜାଗାରେ ଦାସେ କାହାକୁ ଚିହ୍ନି ନାହାନ୍ତି । ସେଠି ଅଧେ ତାଙ୍କୁ ଦିଶୁଛନ୍ତି ଏ କୁଲି ପରି, ଆଉ ଅଧେ ଦିଶୁଛନ୍ତି ସେ ତେଲୀ ପୁଅ, ଆଉ ତା ବାପ, ମା', ଭାଇ ଭଳି । ଆଉ ଗୁଡ଼ାଏ ବେଖାପିଆ ଦିଶୁଛନ୍ତି— ଟିକିଏ ଜୋଚଟ, କାଲିଆ, ଅସଫା । ଏଥିରୁ କାହାକୁ ସେ ଚିହ୍ନନ୍ତି ନାହିଁ, କି ଏ ଅଗଣନ ଲୋକ ଭିତରେ ଜଣେ ମୁଦ୍ଧା ତାଙ୍କୁ ଚିହ୍ନେ ନାହିଁ । ଭଲ ଘଟଣ !

ବିମଳବାବୁଙ୍କ ଚକଚକିଆ ମଟରଗାଡ଼ି । ଆଗ ଶତପଥୀ ମହାଶୟେ, ତା'ପରେ ଦାସେ, ଆଉ ଶେଷରେ ସେ ନିଜେ ବସିଲେ । ଖୁବ୍ କଅଁଳିଆ ଗଦି, ଖୁବ୍ ଚକ୍‌ଚକିଆ କଳା । ଦାସେ ଡରିଲା ଡରିଲା ପରି ପ୍ରଥମେ ଟେକି ହୋଇ ଟିକିଏ ବସିଲେ, ତା'ପରେ ବସିଗଲେ ।

ଗାଡ଼ି ଚାଲିଛି । ଦୁଇ ପାଖେ କେଡ଼େ କେଡ଼େ ଘର, ଅଟି ପାଉ ନାହିଁ । ସଡ଼କ-ଯାକ ଭର୍ତ୍ତି ହୋଇଚନ୍ତି ଲୋକ । ଗାଡ଼ି, ମଟର ଅଗଣିତ । ଦାସେ ବିସ୍ମୟରେ ଅନେଇଛନ୍ତି । ଓଃ, ଏ ମାଚିସ୍‌ବାକ୍ସ ପରି ଘରଗୁଡ଼ାକରେ ପୁଣି ମଣିଷ ରହୁଛି !

ଶତପଥୀ ମହାଶୟେ କହିଲେ, "କ'ଣ,···ବିମଳ କହୁଛି ଆଜି ଦିନକ ତା ଘରେ ଅତିଥି ହେବାକୁ । ତାର ସ୍ତ୍ରୀ ମଧ୍ୟ ମୋର ଛାତ୍ରୀ । ଖୁବ୍ କରି କହୁଛି ଯିବାକୁ । ସେ ନିଜେ ଆସିଥାନ୍ତା । ଅସୁବିଧାରେ ଆସିପାରିନି ନାହିଁ । କ'ଣ··ଯିବା ?"

ଦାସେ ଟିକିଏ ହସିଲେ । କିଛି କହିଲେ ନାହିଁ । ପଣ୍ଡିତେ ବୁଝିବାକୁ ହସର ଅର୍ଥଟି ହେଲା, ତାଙ୍କୁ ପଚାରିବାର ଲାଭ କ'ଣ ।

ସେଇଠୁ ଶତପଥୀଏ କହିଲେ, "ଦେଖ ବିମଳ ! ଆମର କଲିକତାରେ ରହିବାର ଇଚ୍ଛା ନାହିଁ । ଖାଲି ଦକ୍ଷିଣେଶ୍ୱର ଦେଖି ଆସିଲେ ଏଠି ଆମ କାମ ଶେଷ । ତମ ଘରେ ଅଳ୍ପ ସମୟ ଶୌଚ ହୋଇ ଦକ୍ଷିଣେଶ୍ୱର ଯିବା । ସେଇଠି ଦିନଟି କଟିଯିବ । ରାତିରେ ତୁମ ଘରେ ରହି କାଲି ସକାଳୁ କାଶୀ ଚାଲିଯିବା ।"

ଶତପଥୀଙ୍କ କଥାରେ କାହାରି ଦ୍ୱିରୁକ୍ତି କରିବାର ଇଚ୍ଛା ହୁଏ ନାହିଁ । ଲାଗେ ଯେ ସେ ଯାହା କହୁଛନ୍ତି, ତାହା ହିଁ କେବଳ ଠିକ୍ ।

ଆଉ ବାଟଯାକ କଥାବାର୍ତ୍ତା କିଛି ନାହିଁ ।

ବିମଳବାବୁଙ୍କର ଖୁବ୍ ବଡ଼ ଘର । ଆଗରେ ଅନେକ ଫୁଲ ଗଛ । ଦେଖି ଦେଲା ପରି ସ୍ତ୍ରୀଟିଏ ତାଙ୍କ ଘରଣୀ । ଜଳଛବି ପରି ଦିଟି ପିଲା । ବେଶ୍ ଭରପୂର ସଂସାରଟିଏ । ସେମାନେ ଆସି ପ୍ରଥମେ ଶତପଥୀଙ୍କୁ ତା' ପରେ ଦାସଙ୍କୁ ମୁଣ୍ଡିଆ ମାରିଲେ । ଦାସେ ମନେ

ମନେ ଆଶୀର୍ବାଦ କଲେ, "ଅଇ ସୁଲକ୍ଷଣୀ ହୋଇଥା ମା', ପୁଅ ବୁଢ଼ାଟିଏ ହେଇଥାଉ।" ଆରେ, ଏ ସାନ ପିଲାଟି ତ ଅବିକଳ ଝୁଲୁଆ ଛୁଆଟିକା ଦିଶୁଛି । ଝୁଲୁଆ ଭଲ ଖାଇବାକୁ ପାଇଲେ, ପିନ୍ଧାପିନ୍ଧି କଲେ ଏମିତିଆ ଦିଶନ୍ତା ସିନା !!

ପଣ୍ଡିତଙ୍କ କଥା ଲାଗିଲା ଯେ, ଚଞ୍ଚଳ ପ୍ରସ୍ତୁତ ହେବାକୁ ହେବ । ମନକଥା ମନରେ ମାରି ଦାସେ ଧଡ଼ପଡ଼ ସବୁ ନିତ୍ୟକର୍ମ ସାରିବାକୁ ବାହାରିପଡ଼ିଲେ । ପିଲାଟିକି ବାରମ୍ବାର ଦେଖୁଥାନ୍ତି । ସେ ଆସି ଗାଧୋଇବା ଘର ଦେଖେଇଦେଲା; ତାଙ୍କ ମୁଣା ଭିତରୁ ଗାମୁଛା କାଢ଼ି ଆଣିଦେଲା ।

ତା ମୁଣ୍ଡରେ ହାତ ମାରି ଶେଷରେ ଦାସେ ପଚାରିଲେ, "ବାପା, ତୋ ନାଁ କ'ଣ ?"

ସେ ବାଇଲା ପରି କହିଲା, "ନାମ୍ ? ଆମାର୍ ନାମ୍ ସନ୍ତୋଷ ।"

ଇସ , କେଡ଼େ ସୁନ୍ଦର ପିଲାଟିଏ ମ !···ଦାସଙ୍କ ମନ ପାଗଳ ଧରିଆସିଲା, ସେ ହାତ ବଢ଼େଇଲେ; କିନ୍ତୁ ଫେର୍ କ'ଣ ଭାବି ତା କାନ୍ଧ ଦି'ଟି ଅଳ୍ପ ଖାଲି ଚିପିଦେଲେ, ତା'ପରେ ହାତ ଚଟକିନା କାଢ଼ି ଆଣିଲେ । ପିଲାଟି ପରିଷ୍କାର ତାଙ୍କ ମୁହଁକୁ ଚାହିଁ କହିଲା ।

"ମା' ବଲ୍‌ଲେନ୍ ଆମି ଆପନାର୍ କାଜ୍ କର୍‌ବୋ । ଯଖନ୍ କିଛୁ ଅସୁବିଧେ ହବେ ଆପନି ଆମାକେ ଡାକବେନ୍···ସନ୍ତୋଷ'—ଆମି ଛୁଟେ ଚଲେ ଏସେ ଆପନାର୍ କାଜ୍‌ଟି କରିଦବୋ । ଆର ଅପ୍‌ନାକେ ନମୋ ନମୋ କର୍‌ବୋ, ଆପନି ଗୁରୁଜନ କି ନା !"

ତା'ର ସେଇ ଗୁଲୁଗୁ ଗୁଲୁଗୁ କଥା, ପୁଚୁ ପୁଚୁ ଗାଲ, ଦାସଙ୍କୁ ଖୁବ୍ ଭଲଲାଗିଛି । ସେ ମନେ ମନେ କହିଲେ, "ପ୍ରଭୁ ଜଗନ୍ନାଥ, ଏହାକୁ ଦୀର୍ଘଜୀବୀ କର !"··ମାତ୍ର ପାଟି-ଖୋଲି କହିଲେ, 'ହଉ', 'ହଉ' ! ତାପରେ ଗାଧୁଆ ଘରକୁ ପଶିବାକୁ ବାହାରିଲେ ।

"ହୋଁ ! ଏ ହୋଁଟା କି ?"···ତାପରେ ହଠାତ୍ ବଡ଼ ଲାଜରେ କାନଯୋଡ଼ିକ ଧରି ମୁଣ୍ଡ ତଳକୁ ପୋତି କହିଲା "ଅଞ୍ଚ, ଆମାର୍ ଭୁଲ୍ ହୟେଗେଛେ । ଆପ୍‌ନାକେ ହିରକ୍ତ କର୍‌ବୋ ନା, ମା' ବଲେଛେନ୍ । ଆମି ଯାଇ ତାକେ ଜିଗେସ୍ କର୍‌ବୋ ।"

ଦୌଡ଼ି ଦୌଡ଼ି ସେ ଚାଲିଗଲା ।

ପିଣ୍ଡା କବାଟ ପକେଇ ସେ ଯେମିତି ଚାଲିଯାଇଛି ଦାସେ ଟିକିଏ ସେଇଆଡ଼େ ଚାହିଁରହି ଠିଆହେଲେ । ତା'ପରେ ଦୀର୍ଘଶ୍ୱାସଟିଏ ମାରି ହର୍ଷାସରେ କହିଲେ, "ଚଗଲା !"

ସବୁ କାମ ସାରି କମଳବାବୁଙ୍କ ଗାଡ଼ିରେ ଦକ୍ଷିଣେଶ୍ୱର ବାହାରୁ ବାହାରୁ ବେଳ ଦୁଇଘଡ଼ି । ଆଗରେ କମଳବାବୁ ଗାଡ଼ି ଚଲଉଛନ୍ତି, ପଛରେ ଶତପଥୀ ମହାଶୟେ ଏବଂ ଦାସେ ।

ଦେଖୁ ଦେଖୁ କଲିକତାର କୋଠାବାଡ଼ି ସବୁ ପଛକୁ ପଡ଼ିଗଲା । ସଡ଼କର ଖୁବ ତଳକୁ ନାଲ ନର୍ଦ୍ଦମା ରି ଜାଲ ଭିତରେ ଖପରଲି ଘର, ନଡ଼ା ଚୁଆଣି କୁଡ଼ିଆ; ଲଙ୍ଗଳ ନୁଖୁରା ଅନେକ ପିଲା । ଚୁମଟଡ଼ା, ଧଡ଼ିଆ ବୁଲା କୁକୁର ବି ଅନେକ । ···ଏ ମଧ୍ୟ କଲିକତା !

ଦକ୍ଷିଣେଶ୍ୱର ଯିବା ରାସ୍ତାରେ ହଜାର ଲୋକ ଏସବୁ ଦେଖୁଥିବେ । କେହି ଜଣେ ଗାଡ଼ି ରଖି ସ୍ୱାମୀଙ୍କୁ ଭଲକରି ଥରେ ଦେଖିଛୁ ?···ଏପରି କି ବିମଳବାବୁ ପରି ଲୋକ ଖାଲି ଆଗକୁ ଚାହିଁ ସାରିଁକଲା ଗାଡ଼ି ଚଳେଇନେଲେ ! ଦାସେ ମଧ୍ୟ ଦୀର୍ଘଶ୍ୱାସଟିଏ ମାରି ମୁହଁ ଫେରାଇ ଆଣିଲେ । ଭିତରେ ଦେଖିଲେ, ଶତପଥୀ ମହାଶୟ ସ୍ଥିର ଦୃଷ୍ଟିରେ ଆଗକୁ ଚାହିଁଛନ୍ତି ।

ବାଁ ମୋଡ଼ରେ ଗାଡ଼ି ଯାଇ ଠିଆହେଲା । ତିନି ଜଣଯାକ ଓହ୍ଲେଇଲେ । ଦାସେ ଯେଉଁଆଡ଼େ ଚାହିଁଲେ ସେଇଆଡ଼େ ବାଳ ମୁକୁଳା କରି ସାନ, ବଡ଼ ଅନେକ ସ୍ତ୍ରୀ ଲୋକ । ···କିଏ ଫୁଲଧଣ୍ଡା କିଣୁଛି ତ କିଏ ପ୍ରସାଦ ଲଗେଇବାକୁ ମିଠେଇ କିଣୁଛି । ହଠାତ୍ କାହିଁକି ଦାସଙ୍କର ମନେହେଲା ଯେ ଏ ଦେଶଟା ବଡ଼ ସ୍ତ୍ରୀବହୁଳ ନା' କ'ଣ ? ସେତେବେଳକୁ ଶତପଥୀ ମହାଶୟ ଗମ୍ଭୀର ହୋଇଗଲେଣି । କଥାବାର୍ତ୍ତା ଆଉ ନାହିଁ ।

ମନ୍ଦିର ପାଖେଇ ଆସିବାରୁ ଅଧେ ଇଙ୍ଗିତରେ ଦି'ପଦ କଥା ସେ ବିମଳବାବୁଙ୍କୁ କିଛି କହିଲେ । ଦାସଙ୍କୁ ଚାହିଁ ନୀରବରେ ଟିକିଏ ହସିଲେ ଏବଂ ମନ୍ଦିର ଭିତରେ ଆଉ ପଛକୁ ନ ଚାହିଁ ଏକୁଟିଆ ପଶିଗଲେ । ବିମଳବାବୁ ଅଳ୍ପ ହସି ବିନୟରେ ଦାସଙ୍କୁ କହିଲେ, "ଅପନାର୍ ଦାୟିତ୍ୱ ଉନି ଆମାକେ ଦିଏଗେଛେନ୍, ଆପନି ଆମାର ସଙ୍ଗେ ଆସୁନ୍ !"

ବେଢ଼ା ଭିତରେ ଆହୁରି ଅନେକ ମନ୍ଦିର । ଗେରୁଆ ଲୁଗା ପିନ୍ଧା ମୁଣ୍ଡିତମସ୍ତକ କେତେ ସନ୍ନ୍ୟାସୀ ସେଇଠି ବୁଲୁଥିବାର ଦାସେ ଦେଖିଲେ । ଶେଷରେ ତାଙ୍କ ଭିତରୁ ଜଣେ ଆସି ବିମଳବାବୁଙ୍କୁ କୁଣ୍ଢେଇପକାଇଲେ । ତାଙ୍କ କଥାବାର୍ତ୍ତାରୁ ଦାସେ ଅନୁମାନ କଲେ ଯେ ସେ ଦୁହେଁ ପରମବନ୍ଧୁ ଏବଂ ବାରମ୍ବାର ଶତପଥୀଙ୍କ ନାଁ ପକେଇ ତାଙ୍କ ଉଦ୍ଦେଶ୍ୟରେ ନମସ୍କାର କରିବାରୁ ବୁଝିଲେ ଯେ ଶତପଥୀ ମହାଶୟେ ଖୁବ ଉଚ୍ଚଦରର ଲୋକ । ବେଢ଼ା ବାହାରେ ଗୋଟିଏ ଝାମ୍ପୁରା ଗଛମୂଳେ ସେହି ସନ୍ନ୍ୟାସୀଙ୍କ ସହିତ ଦାସଙ୍କର ଆଳାପ ହେଲା । ସେ ଦାସଙ୍କୁ ରାମକୃଷ୍ଣ—ବିବେକାନନ୍ଦଙ୍କ ଦର୍ଶନ ସମ୍ବନ୍ଧେ ଅନେକ କଥା ବିନୟରେ ଶୁଣେଇଲେ । ଦାସଙ୍କର ବୋଧହେଲା ପୁରାଣର ଅପୂର୍ବ ଚରିତ ପରି ଏ ଦୁଇଟି ମଧ୍ୟ ବଡ଼ ପବିତ୍ର ପୁରୁଷ ।

ବଙ୍ଗଭାଷା ଖୁବ୍ ସରଳ କରି କହିଲେ ବୁଝିବା ସହଜ । ଦାସେ ସେଥିରେ ମଜ୍ଜିଗଲେ । ···ଆସି ବେଲଗଛିଆ ଉପରେ । ବିମଳବାବୁ ଆସି ତାଙ୍କୁ ଡାକନେଇଗଲେ । ତିନି ଜଣ ଯାଇ ଦେବୀ ମନ୍ଦିରରେ ପଶିଲେ । ଦାସଙ୍କୁ ଗନ୍ଧ ଗନ୍ଧ ଲାଗିଲା । ସେ ସାଷ୍ଟାଙ୍ଗ ପ୍ରଣିପାତ ହୋଇ ପଡ଼ିଏ ପଡ଼ିରହିଲେ । ଉଠି ଦେଖିଲେ, ଗୋଟେ କୋଣରୁ ଶତପଥୀ ମହାଶୟେ ପଦ୍ମାସନରେ ବସିଛନ୍ତି । ସେ ସେମିତି ଚାହିଁ ରହିଛନ୍ତି, ଜମା ମନରେ ନାହିଁ ତାଙ୍କୁ ଡାକିଦେବା ବା ତାଙ୍କ ଧ୍ୟାନରେ ବାଧା ଦେବେ; ମାତ୍ର ବିମଳବାବୁ ଇଙ୍ଗିତରେ ତାଙ୍କୁ ବାହାରି ଆସିବାକୁ ଅନୁରୋଧ କଲାପରି ତାଙ୍କୁ ଲାଗିଲା । ବଡ଼ ସନ୍ତର୍ପଣରେ ଅବଶ୍ୟ ସେ ଇଙ୍ଗିତ ଦେଲେ । ଦାସେ କିଛି ନ କହି ବାହାରିଆସିଲେ, ତାଙ୍କ ସାଙ୍ଗରେ ତାଙ୍କର ସେଇ ସନ୍ନ୍ୟାସୀ ବନ୍ଧୁ ଜଣକ ଆଆନ୍ତି !

ସେଇଠି ଦ୍ରବ୍ୟ ଭୋଗ ମିଳେ । ସେଇ ପ୍ରସାଦ ପାଇ ଦାସେ ଓପରଓଳି କାକର ପିଣ୍ଡାଟି ଉପରେ ବିଶ୍ରାମ ନେଲେ । ନାନା ଚିନ୍ତା କରୁ କରୁ ସନ୍ଧ୍ୟା ହେଲା । ଗୋଟିଏ ଧର୍ମ-ସଭାର ଆୟୋଜନ ହେଲା । ଅନେକ ତରୁଣ ଆଉ ପରିଣତ ବୟସ୍କ ସନ୍ନ୍ୟାସୀ ଆସି ନୀରବରେ ସେଇଠି ତଳେ ବସିଗଲେ । ମାତ୍ର ଅନ୍ଧାର ସମୟକୁ ବିମଳବାବୁ ଶତପଥୀ ମହାଶୟଙ୍କ ସାଙ୍ଗରେ ଆସି ସେଇଠି ପହଞ୍ଚିଲେ । ଅତ ସମ୍ଭ୍ରମରେ ଜଣେ ଉଠି ପଣ୍ଡିତଙ୍କୁ କିଛି କହିବାକୁ ଅନୁରୋଧ କଲେ । ଶତପଥୀ ମହାଶୟେ ଭାରି ପ୍ରସନ୍ନ ଦେଖାଯାଉଥାନ୍ତି । ମୁହଁଟା ତାଙ୍କର ଦୀପ ଜଳାଲା ପରି ଜଳୁଥାଏ । ସେ ଖଣ୍ଡେ ଉଚ୍ଚ ଆସନ ଉପରେ ଚକା ପକେଇ ସଳଖି ହୋଇ ବସିଲେ ତେଣିକି ଯାହା କହିଲେ ଏଠି ସେଠି କିଛିଏ ଦାସେ ବୁଝୁଥାନ୍ତି । ପଣ୍ଡିତେ ବିଶୁଦ୍ଧ ସଂସ୍କୃତରେ ଅନେକ ଗହନ କଥା କହୁଥାନ୍ତି, ଖୁବ୍ ଧୀରେ ଧୀରେ କହୁଥାନ୍ତି । ସମସ୍ତେ ମୁଣ୍ଡ ତଳକୁ ପୋତି ଶୁଣୁଥାନ୍ତି । ଦାସଙ୍କୁ ଅଧିକ ଅଧିକ ବିସ୍ମୟ ଘାରିଲା ।

'ବାବା, ଏ କଏ, ମୁଁ କଏ ! ଏମାନଙ୍କ ସାଙ୍ଗରେ ଠିଆହବାର ଯୋଗ୍ୟତା ମୋର କ'ଣ ଅଛି ? ସେଇ ଜଗନ୍ନାଥ ମନ୍ଦିରେ ଥାଇ ସବୁ ଭିଆଣ କରୁଛ ନା ! ନ ହେଲେ ଅସମର୍ଥ, ଅପଢ଼ୁଆ, ମୋ ପରି ମୂର୍ଖ ଆସି ଏ ଗୋଷ୍ଠୀରେ ବସନ୍ତା ।'

ଦାସଙ୍କ ଆଖି ଭାବରେ ଛଳଛଳ ହୋଇଯାଉଥାଏ । ସେ ବିହ୍ୱଳ ହୋଇ ଭଗବତ୍ ଲୀଳା କେବଳ ଚିନ୍ତାକରୁଥାନ୍ତି । ତାର ଥଳକୂଳ ପାଉନଥାନ୍ତି ।

ସଭା ସାଙ୍ଗହେଲା । ସମସ୍ତେ ପ୍ରାୟ ସେହିପରି ନୀରବରେ ବିମଳବାବୁଙ୍କ ଗାଡ଼ି ପର୍ଯ୍ୟନ୍ତ ଆସିଲେ । ଶତପଥୀଙ୍କ ପାଖକୁ ଲଗି ବସିବାକୁ ଦାସଙ୍କର ଭୟଙ୍କର ସଙ୍କୋଚ ହେଲା । ଶତପଥୀ ମହାଶୟେ ହାତ ଧରି ବସେଇଦେଲେ । ବିଦାୟବେଳେ ସମସ୍ତଙ୍କ ପ୍ରଣାମ ମହାଶୟେ ଗ୍ରହଣ କଲେ । କିନ୍ତୁ ତାଙ୍କୁ ନମସ୍କାର କଲେ ମଧ୍ୟ ଦାସେ ହାତ ଟେକି ଆଉ ଆଶୀର୍ବାଦ କରିବାକୁ ସାହସ କଲେ ନାହିଁ ।

କୁସୁମ ପରିଣରେ ପଟ ହସ୍ତରିଲା ପରି ଦାସଙ୍କୁ ଲାଗୁଥାଏ । ତୋଟି ପର୍ଯ୍ୟନ୍ତ କେମିତି ଗୋଟାଏ କୋହ ଉଚ୍ଛୁଳି ଉଠିଲା ପରି ବୋଧହେଉଥାଏ । ବଡ଼ ନିସ୍ପୃହ ସର୍ବସମର୍ପଣ ଭାବ— ପାହାଡ଼ ଉପରକୁ ଟେକିନେଲେ ହିଁ—ସମୁଦ୍ରକୁ ପେଲିଦେଲେ ହିଁ !!

ଗାଡ଼ି ଗଡ଼ିଗଲା ।

କାହିଁ ଦୂରରେ ସିଦ୍ଧା ଟେକ ଗୋଟିଏ ଶଙ୍ଖ ବାଜୁଥାଏ ।

# ମଣିକର୍ଣ୍ଣିକା

ତ୍ରିବେଣୀ ସଙ୍ଗମରେ ମୁଣ୍ଡ ବୁଡ଼େଇ ଆସିବା ଦିନଠାରୁ ଦାସଙ୍କର କେମିତି ଗୋଟାଏ ହକଲ ହକଲ ଭାବ ଦେଖାଯାଉଛି । ବସିଛନ୍ତି ତ ବସିଛନ୍ତି, ଯୋଟିଏ ଆଡ଼େ ଚାହିଁ ରହିଛନ୍ତି ତ ଆଉ ଆଖିରେ ପଲକ ପଡ଼ୁନାହିଁ । କଥାବାର୍ତ୍ତା ପ୍ରାୟ କରୁନାହାନ୍ତି । ମନେହେଉଛି, ଯେପରି ତାଙ୍କର ଚେତନା ଶୋଷି ହୋଇ ପବନରେ ମିଳେଇଯାଉଛି ଏବଂ ମଝିରେ ମଝିରେ ସେ ତାକୁ ପୁଣି ସାଉଁଟି ଆଣି ଚାରିଆଡ଼କୁ ଚାହୁଁଛନ୍ତି । ଦୋ ଦୋ ଚହଲା ହେଲା ପରେ ଘଡ଼ିଏ ଯେମିତି ଫାଙ୍କା ରହିଗଲା ପରେ ଅଳ୍ପ ଉଦାସିଆ ହସଟିଏ ହସି ସବୁ ଗ୍ରହଣ କରିନେଉଛନ୍ତି । ତୀର୍ଥରେ ଏଣେ ଲମ୍ବା ହୋଇ ଆସିଛନ୍ତି ଯେ ଚହଲିଲା ଲୋକ ମଧ୍ୟ ତାଙ୍କୁ ଦେଖି କହିପାରିବ ନାହିଁ, ଏ ସେଇ ସନାତନ ଦାସ ।

ପଣ୍ଡିତ ମହାଶୟେ ସବୁ ଲକ୍ଷ୍ୟ କରୁଆନ୍ତି; କିନ୍ତୁ ଯାହା ହେବାର ତ ବଳେ ହୋଇଯାଉଥାଏ, ସେଥିରେ ତାଙ୍କର କହିବାର ବା କରିବାର କ'ଣ ଥାଏ !···ସଙ୍ଗମ ଘାଟକୁ ଲାଗି କୁମ୍ଭ ମେଳା ପାଇଁ ଆଖି ଯାଇବ ନାହିଁ ପଡ଼ିଆ । ସେଇଠି ପହଞ୍ଚି ଦାସେ ପ୍ରଥମେ ପିଲଟିଏ ପରି ବିହ୍ୱଳ ହୋଇ ଖାଲି ଚାରିଆଡ଼େ ବଲବଲ ଚାହିଁଲେ । ପଣ୍ଡିତେ ସେଇଠି ତାଙ୍କୁ ପଚାରିଲେ, "କେମିତି ଲାଗୁଛି ?" ଦାସେ ନିର୍ବାକ୍ ହୋଇ କେବଳ ତାଙ୍କୁ ଚାହିଁ ରହିଗଲେ । ସେହି ସମୟଠାରୁ ଅକସ୍ମାତ୍ ତାଙ୍କ ପ୍ରାଣ ଭିତରେ ଗୋଟାଏ ବିରାଟତା ଯେପରି ହୁ ହୁ ହୋଇ ପ୍ରବେଶ କରିଗଲା ।

ସେକଥା ଆଜକୁ ପ୍ରାୟ ଦଶ ଦିନ ହେଲାଣି । ଦାସଙ୍କୁ ଏମିତି ଉଦାସୀନ ଦେଖି ପଣ୍ଡିତେ ସବୁ କାମ ନିଜେ ନିଜେ କରିନଉଥାନ୍ତି । ଦାସଙ୍କର ହଠାତ୍ ନିଦରୁ ଉଠିଲାପରି କର୍ତ୍ତବ୍ୟଜ୍ଞାନ ଫେରିଆସେ । ସେ ବଡ଼ ଅପ୍ରତିଭ ହୋଇ ପଣ୍ଡିତଙ୍କ ହାତରୁ କାମ ଛଡ଼ାଇ କରିପକାନ୍ତି; କିନ୍ତୁ ଭେଳକ ଲାଗିଲା ପରି ଅଳ୍ପ ସମୟ ପରେ ପୁଣି ଅନ୍ୟମନସ୍କ ହୋଇଯାନ୍ତି । ମନ ତାଙ୍କର ଶିମିଳିତୁଳା ପରି କାହିଁ କୁଆଡ଼େ ଭାସିଯାଏ । କାଚ ଆଖିଯୋଡ଼ିକରୁ ଦୃଷ୍ଟି ଅପସରି ଯାଏ ।

ପଣ୍ଡିତେ ବୁଝନ୍ତି—ଦାସଙ୍କ ପ୍ରାଣରେ ଧର୍ମଯୁଦ୍ଧ, ଯାହା ସେ ସନ୍ତ୍ରସ୍ତ ପରି କେବଳ ଦେଖୁଥିଲେ, ତାର ଅବସାନ ଘଟିଛି । କିନ୍ତୁ ଯୁଦ୍ଧର କୋଳାହଳ ପରେ ସବୁ ନିସ୍ତବ୍ଧ ହୋଇପଡ଼ିଛି । ଏଡ଼େ ବଡ଼ ଧର୍ମକ୍ଷେତ୍ର ଶ୍ମଶାନ୍ ହୋଇଯାଇଛି । ବହୁ ଦୂରରୁ—କାହିଁ କେଉଁ ଦିଗ୍‌ବଳୟର ପ୍ରାନ୍ତଦେଶରୁ ପାଞ୍ଚଜନ୍ୟ ଗୁମୁରୁଛି—କୁରୁକ୍ଷେତ୍ର ସାରା ବୁଲୁଛି । କିନ୍ତୁ ଦାସଙ୍କୁ ଜଣାପଡ଼ୁନାହିଁ ଏ କି ଶବ୍ଦ, କେଉଁଆଡ଼ୁ ଆସୁଛି, କାହାର ଏ ଶବ୍ଦ ! ଏଇଥିପାଇଁ ବୋଧହୁଏ ଏମିତି ବିସ୍ମୟ !···ପଣ୍ଡିତେ କିନ୍ତୁ କିଛି କହନ୍ତି ନାହିଁ ।

ସେଦିନ ରାତିରେ ପ୍ରୟାଗରୁ ଆସି କାଶୀରେ ପହଞ୍ଚିଥାନ୍ତି । ସକାଳୁ ମଣିକର୍ଣ୍ଣିକାରେ ସ୍ନାନ କରି ବିଶ୍ୱନାଥ ଦର୍ଶନକୁ ଯିବା କଥା । ସେଇ ପାହିଲା ପହରର ବେଳକୁ ଦାସେ ତୃଷ୍ଣିତ ଆଖିରେ ଶୂନ୍ୟକୁ ଚାହିଁରହିଥିଲେ । ହଠାତ୍ ଆଖିରେ ପଲକ ପଡ଼ିଲା । ସେ ଝଟପଟ କରି ଚାହିଁଦେଲେ । ଦେଖିଲେ, ପଣ୍ଡିତଙ୍କ କମ୍ବଳ ଖଣ୍ଡ ଚଉଡ଼ା ହୋଇ ଥୁଆହୋଇଛି ।... ପଣ୍ଡିତେ ବୋଧହୁଏ କେତେବେଳୁ ଉଠି ବାହାରପାଣି ଆଦି ସାରିଲେଣି ।...ରାଗ ଲାଜ ମାଡ଼ିଲା ତାଙ୍କୁ । କ'ଣ ମ ! ଏମିତିଆ ଭକ୍ତଙ୍କ ଭଳି ମୁଁ ଏଠି ବସିଛି ! ମୋ ଆଖି ଆଗରେ ସେ ଉଠି ସବୁ କାମ କରି ଚାଲିଗଲେ ମୁଁ ଦେଖିଲି ନାହିଁ—ଛେଃ !!

ଧଡ଼ପଡ଼ ହୋଇ ଉଠିଲେ । କମ୍ବଳ ଖଣ୍ଡ ଗୁଡ଼େଇ ଥୋଇଦେଇ ପିଣ୍ଡାକୁ ବାହାରିଲେ । ଆଦ୍ୟ କାର୍ତ୍ତିକରେ ଶୀତ ସେତେବେଳକୁ ପଡ଼ିଗଲାଣି । ଧର୍ମଶାଳା ଘରେ ଜନମାନବ କେହି ନ ଥିଲା ପରି ଲାଗୁଥାଏ । ଚକାବସା ବଡ଼ କୂଅଟାଏ ପରି ଥାକ ଥାକ ହୋଇ ତିନି ମହଲା କୋଠା ଘରିଆଡ଼ୁ ନଇଁକି ହୋଇ ତୋଳା ହୋଇଛି । ମଝିରେ ସତକୁ ସତ ଗୋଟେ ବଡ଼ କୂଅ । ଦାସଙ୍କର ମନେପଡ଼ିଗଲା,—'ଆରେ, ଆଜ ପରା ମଣିକର୍ଣ୍ଣିକାରେ ସ୍ନାନ କରି ବିଶ୍ୱନାଥ ଦର୍ଶନ କରିବାକୁ ହବ !' ସେ ତରତରରେ ଯାଇ କୂଅରୁ ପାଣି କାଢ଼ି ବାଲ୍‌ଟିଟା ଥୋଇଛନ୍ତି, ଦେଖିଲେ ପାଖରେ ପଣ୍ଡିତେ ଠିଆହୋଇଛନ୍ତି । ସେ ସସମ୍ଭ୍ରମ ବାଲ୍‌ଟିଟା ତାଙ୍କ ଆଗକୁ କରିଦେଇ ଆଡ଼େଇ ହୋଇ ଠିଆହେଲେ । ସେ କୁହୁଡ଼ିଆ ଅନ୍ଧାରରେ ତାଙ୍କର ମନେହେଲା, ପଣ୍ଡିତ ମହାଶୟେ କୌଣସି କାରଣରୁ ତାଙ୍କୁ ଚାହିଁ ଅଳପ ଅଳପ ହସିଲେ, ଆଉ ହାତ ମୁହଁ ଧୋଇ ଚାଲିଗଲେ । ଦାସେ ତାଙ୍କୁ ଚାହିଁରହିଥିଲେ ଯେମିତି ରହିଯାଇଥାନ୍ତେ; ମାତ୍ର ଚମକିଲା ପରି ବାଲ୍‌ଟିରେ ପୁଣି ପାଣି କାଢ଼ି ନିତ୍ୟକର୍ମରେ ମନଦେଲେ ।

କିଛି ସମୟ ପରେ ଦୁହେଁ ନଗ୍ରଟିଆ ସରୁ ରାସ୍ତାଟିଏ ଧରି ଗଙ୍ଗାଘାଟକୁ ଚାଲିଲେ ।

ରାସ୍ତା ଉପରେ ଇଟା ଗୁଡ଼ିଣୀ । ଦୁ'ପାଖେ ଉପରେ କୁଢ଼େଇ ହୋଇ ପଡ଼ିଲା ପରି ପାଞ୍ଚ ମହଲା, ସାତ ମହଲା କୋଠା । ଗୋବବସା ନୁଆଁଣିଆ କବାଟସବୁ ଯେମିତିଆ ପାତାଳକୁ ବାଟ ରୋଧି ଠିଆହୋଇଛନ୍ତି । ମୋଡ଼ଗୁଡ଼ାକରେ କୁଣେ ଲେଖାଏଁ ଅନ୍ଧାର । ବେଶ୍ କାଲୁଆ ଶୀତଟା ମଧ୍ୟ ପଡ଼ିଛି । ଗଡ଼ାଣିଆ ହେଉ ଦାସଙ୍କ ପାଦୁକା ବେଗି ବେଗି ପଡ଼ୁଥାଏ । ଦୁହେଁ ଆଗ ପଛ ହେଇ ଚାଲିଥାନ୍ତି ।

ଏତିକିବେଳେ ଦୂରରୁ ଝର ଝର୍ ବେଦଧ୍ୱନି ଆସିଲା ପରି ଶୁଭିଲା । ଦୁହେଁ ଏକା ସାଙ୍ଗରେ ଧିମେଇଗଲେ । ଏଥିରେ ସନ୍ଦେହ ନାହିଁ, ଏ ନିଶ୍ଚୟ ବେଦପାଠ ହେଉଛି ।... ଆହୁରି ପରିଷ୍କାର ଶୁଭିଲା । ସମବେତ କଣ୍ଠରେ ବେଦର ମହିମ୍ନ ସ୍ତୋତ୍ର ବୋଲା ହେଉଥାଏ । ଦାସଙ୍କର ରୋମାଞ୍ଚହେଲା । ପଣ୍ଡିତେ ମୁଣ୍ଡ ନୁଆଁଇ, ଛାତି ଉପରେ ହାତ ରଖି ଗୋଟିଏ ପାଦୁଣ୍ଡ ଅଟକିଗଲେ, ପୁଣି ଆଗେଇଲେ । ଆଗକୁ ଆଗକୁ ଆହୁରି ଗହଗହ ଧ୍ୱନି ଉଠିଲା । ଦାସେ ଖାଲି ମନେ ମନେ ନିସ୍ତରିଲି ନିସ୍ତରିଲି ହେଉଥାନ୍ତି । ହଠାତ୍ ଆସି ମେଳି ବଡ଼ ରାସ୍ତା ଉପରେ ଦୁହେଁ ଠିଆହେଲେ । ଡାହାଣ ମୋଡ଼ ଆଡ଼େ ଘାଟ । ଏଠି ପବନ ସୁ ସୁ

ବହୁଥାଏ—କୋହଲିଆ ପାଣିମିଶା ଗଙ୍ଗା ପବନ ।···ଆଃ, ଏଥିରୁ ପେଟେ ଆଗ ପିଇ-ଦିଆଯାଉ । ଏବେ କାନରେ ସାମ ବେଦ ଆସି ଚୋ ଚୋ ବାଜୁଛି । ଗଙ୍ଗାଣିଆରେ ଦାସଙ୍କ ପାହୁଣ୍ଡମାନ କୋଣକେ ଗୋଟେ ତ ପାଆଟେ କ୍ରୋଟେ ପଡ଼ୁଛି । ସେ ଧାଇଁଲା ପରି ପଣ୍ଡିତଙ୍କ ବହୁ ଆଗକୁ ଚାଲିଯାଇଛନ୍ତି ।

ଆଗକୁ ଘରଦ୍ୱାର ଆଉ ନାହିଁ । ···ଏଇ ଯେଉଁ ମେଲା ମେଲା ଆଲୁଅ ଦିଶୁଛି, ସେଇ ବୋଧହୁଏ ପତିତପାବନୀ ଗଙ୍ଗା ।

ଦାସଙ୍କ ମନ ଗଦ୍‌ଗଦ ହୋଇଉଠିଲା । ସେ ପ୍ରାୟ ଡେଇଁଲା ପରି ଚାଲିଥାନ୍ତି । ବାଟରେ ସେଇ କୁହୁଡ଼ିଆ ଅନ୍ଧାର ଭିତରୁ ହଠାତ୍ କେହି ଜଣେ ଓଦା ସର୍‌ସର୍ ହୋଇ ଦାସଙ୍କୁ ଆଡ଼େଇହୋଇ ଚାଲିଗଲା । ···ଏଁ···କିଏ ସେ ? ··ଗଙ୍ଗାରେ ଗାଧୋଇ ଫେରୁଥିବ !!

ସେଇଠି ତାଙ୍କ ଅଜାଣତରେ ଦାସେ ସ୍ତମ୍ଭୀଭୂତ ହୋଇ ଠିଆ ହୋଇ ରହିଗଲେ । ତାଙ୍କ ଆଗରେ ନାହିଁ ନ ଥିବା ଭିଡ଼ !!

ଓଃ, କେତେ ସହସ୍ର ଲୋକ ଏମିତିଆ ଗାଧୋଇ ସାରି ଫେରୁଛନ୍ତି ? ଦାସେ ଖାଲି ଆଖି ତରଟି ଅନେଇ ରହିଛନ୍ତି, ବାଟ ପାଇଲେ ତ ଯିବେ ! ଗୋଟିଏ ଲେଖାଏଁ କମଣ୍ଡଳୁରେ ଗଙ୍ଗୋଦକ ଧରି ହଜାର ହଜାର ସାଧୁ ସନ୍ନ୍ୟାସୀ ଫେରୁଛନ୍ତି । ଦାସଙ୍କୁ ନ ଦେଖିଲା ପରି ସବୁ ଚାଲିଯାଉଛନ୍ତି—ଧସେଇ ଚାଲିଯାଉଛନ୍ତି, ଘଷିହୋଇ ଚାଲିଯାଉଛନ୍ତି । ···କେତେ ଜଟା ଜଣଜଣଙ୍କ ମୁଣ୍ଡରେ !···ମେଲା ମେଲା ଦେହରୁ ତାଙ୍କର କେମିତି ବାମ୍ଫ ବାହାରୁଛି !—ହୁ ହୁ ହୋଇ ପବନର ହାବୁକାରେ ଅସଂଖ୍ୟ ଲୋକ ସେଇ ଆଲୁଅ ଭିତରୁ ଗାଧୋଇ ଉଠିଆସୁଛନ୍ତି !!

ଦାସଙ୍କର ହଠାତ୍ ମନେହେଲା ତାଙ୍କୁ କିଏ ଡାକୁଛି—ବହୁ ଦୂରରୁ ! ଆସ୍ତେ ପାଖେଇଆସି ତାଙ୍କ ହାତ ଧରି ହଲଉଛି !!

ସେ ଚମକି ପଡ଼ିଲେ ଏବଂ ଦେଖିଲେ ତାଙ୍କ ପାଖରେ ପଣ୍ଡିତ ମହାଶୟେ ଠିଆହୋଇଛନ୍ତି ।

"ଏମିତିଆ ବାଟ ମଝିରେ ଠିଆରହିଗଲ ଯେ ଦାସେ ! ଚାଲ, ଚାଲ !"

"ଆଜ୍ଞା,···ଆଜ୍ଞା,···ହଁ !···ମୁଁ···ବଇଲେ ··ଯାଇପାରୁ ନ ଥିଲି ପରା !—ଇଃ, କେତେ ଲୋକ ଗାଧୋଇସାରି ଗଲେ !—ଆପଣ ଦେଖିଲେ ?"

"କାହିଁ···ନାହିଁ ତ !"

"କ'ଣ ହେଲା ? ···ଏଁ ସତେ ତ—ସେସବୁ ଗଲେ କୁଆଡ଼େ ?"

"କିଏ ସବୁ ?"

"ଆଜ୍ଞା, କ'ଣ କହିବି—ହଜାର ହଜାର ସନ୍ନ୍ୟାସୀ, ତାଙ୍କ ମୁଣ୍ଡରେ ଏଡ଼େ ଏଡ଼େ ଜଟା—ସବୁ ଏଇ ବାଟେ ଗଲେ '—ମୋ ପାଇଁ ପରା ଜମା ବାଟ ନାହିଁ !! ଓଃ, କେତେ ଲୋକ !"

"ତୁମ ମନ ଏବେ ଖୁବ୍ ପାତଲ ଅଛି । ଏଣୁ ଏ ପୁଣ୍ୟକ୍ଷେତ୍ରରେ ଭ୍ରମୁଥିବା ଆତ୍ମାସବୁ ଦେଖାଗଲେ । ସେଇଟା ବଡ଼ ଶୁଭ ଲକ୍ଷଣ···ହେଉ ଆସ, ଆସ, ସ୍ନାନ ସମସ୍ତ ଗଡ଼ିଯିବ ।"

"ଭ୍ରମୁଥିବା ଆତ୍ମା !"

"ହଁ···ଏ ତ ହେଲା ମହାଶ୍ମଶାନ, ସେଥିରେ ଆଉ ବିଚାର କ'ଣ !!" ଦାସଙ୍କ ଗୋଡ଼ ତଳୁ ଖସିଗଲା ପରି ତାଙ୍କୁ ଲାଗିଲା । ସେ ପଣ୍ଡିତଙ୍କ ପଛେ ପଛେ ଗୋଡ଼ ଦି'ଟାକୁ ବଡ଼ କଷ୍ଟରେ ସମ୍ଭାଳି ଚାଲିଲେ ।

ରାତି ଆହୁରି ସେତେବେଳକୁ ଅଛି ବୋଲି କହିବାକୁ ହେବ । ମଣିକର୍ଣ୍ଣିକା ଘାଟରେ ଭିଡ଼ ନ ଥିଲେ ମଧ୍ୟ ଲୋକ ଆସି ଗାଧୋଇଲେଣି । ଗୋଟିଏ ଗୋଟିଏ ପାହାଚ ଓହ୍ଲେଇ ପଣ୍ଡିତ ମହାଶୟେ ଚାଲିଗଲେ, ପଛକୁ ଆଉ ଚାହିଁ ନାହାନ୍ତି । ଦାସେ କିନ୍ତୁ ବିଭୋର ହୋଇ କେବଳ ଶ୍ୱେତବାହିନୀ ଗଙ୍ଗାର ଅପୂର୍ବ ରୂପ ଦେଖୁଥାନ୍ତି । ପାହାଚ ଦାଢ଼ରୁ ଗୋଡ଼ ଖସି ଯାଉଯାଉ ସେ ସମ୍ଭାଳି ନେଇ ସେଇଠି ଅଟକା ହୋଇ ବସିଗଲେ ।

କିଏ କେତେ ପ୍ରକାର ସ୍ତୋତ୍ର ବୋଲି ସେଇଠି ସ୍ନାନ କରୁଥାନ୍ତି । ତା ପଛକୁ ତା ପଛ ଦେଖୁ ଦେଖୁ ଅନେକ ଲୋକ ପାଣିରେ ପଶିଲେ ।···ଅନ୍ଧାରରେ ବେଶି ଦୂରକୁ ଦାସେ ଦେଖି ପାରୁ ନ ଥାନ୍ତି, ହେଲେ ଗଙ୍ଗା ପବନ ଦେହରେ ଲାଗି ଭିତରଟା ତାଙ୍କର ଫିଟି ଫିଟି ଯାଉଥାଏ । ଆଉ ଆଖି ଆଗରେ ପହଁରିଲା ପରି ଲୋକଗୁଡ଼ାକ ଦୃଶ୍ୟହେଉଥାନ୍ତି ।

ଦାସଙ୍କୁ ପୁଣି ସେଇ ଅଦ୍ଭୁତ ଦୃଶ୍ୟ ଦିଶିଗଲା !!···ଠେଲା ପେଲା—ଭିଡ଼ର ଆଉ ସୀମା ନାହିଁ । ଅସଂଖ୍ୟ ଲୋକ କାହୁଁ ଆସି ଗାଧୋଇବାକୁ ଯାଉଛନ୍ତି ।···ଅସଂଖ୍ୟ ଲୋକ ଭିତରୁ ଉଠି ଆସୁଛନ୍ତି ।···ଆହୁରି ଲୋକ—ଆହୁରି···ଆହୁରି !! ଆକାଶରେ ଭେଲା ଭେଲା ମେଘ ପରି ସହସ୍ର ସହସ୍ର ଲୋକ ।

ଦାସଙ୍କ ଶ୍ୱାସରୋଧ ହେବାକୁ ଲାଗିଲା । ମୁଣ୍ଡ ବୁଲେଇଦେଲା । ସେ ଆଉ ସମ୍ଭାଳି ନ ପାରି ଆଖି ବୁଜି ବସିଗଲେ । ତଥାପି ସେ ଜନସମୁଦ୍ରରୁ ଉବୁରି ପାରିଲେ ନାହିଁ ।

ଭିତରେ ବାହାରେ ଲହଡ଼ି ମାରୁଛି ସେଇ ଅଦ୍ଭୁତ ମହୋଦଧି । ଥୟ ହେବାକୁ ସେ ମୁଣ୍ଡଟାକୁ ଚିପିଧରିଲେ । କାନ ଝାଁ ଝାଁ ଡ଼ାକୁଥାଏ, ତୋଟି ଶୁଖି ଖଡ଼ ପରି ହୋଇଯାଉଥାଏ । ଦେହରୁ ଗୋଟା ଗୋଟା ଯମଝାଳ ଫିଟିଯାଉଥାଏ !!···ବିହ୍ୱଳ ବିକଳ ହୋଇ ସେଇଆଡ଼େ ଚାହୁଁଛନ୍ତି କୋଟି କୋଟି ମୁହଁ !!···

ଝାଁ ଝାଁ ହୋଇ ତାଙ୍କ ମଟିଶିର ହାଡ଼ଟା କନକନ ହୋଇଉଠିଲା । ତାଙ୍କୁ ଲାଗିଲା ସେ ଯେମିତି ଓସାରିଆ ହୋଇଯାଉଛନ୍ତି ।—ମଣିକର୍ଣ୍ଣିକା ଘାଟ ଗୋଟାଯାକ ସେ ଘୋଟି ଯାଉଛନ୍ତି ଗୋଟେ ଛାଇ ପରି । ମୁଣ୍ଡଟା ଯାଇ କାହିଁ କୋଉ ଉପରେ ଲାଗୁଛି ।···ବର୍ଷାପାଣି ପଶିଗଲେ ହୁଙ୍କାରୁ ପଖିଲଗା ଉଇ ବାହାରିଲା ପରି ଝଟ ଝଟ ଲୋକ ତାଙ୍କର ଭିତର ଦେଇ ସାଇଁ ସାଇଁ ହୋଇ ବାହାରୁଛନ୍ତି—ତାଙ୍କର ଭିତର ଦେଇ ପୁଣି ଫେରି ଯାଉଛନ୍ତି !! ···ସେ ଯେମିତି ଫାଙ୍କା ଭସ୍ମାସିଆ ହୋଇ ପବନରେ ମିଳେଇ ଯାଉଛନ୍ତି !!!···

ତାପରେ ତାଙ୍କୁ ଆଉ କିଛି ଜଣାନାହିଁ । ମେଞ୍ଚାଟିଏ ହୋଇ ସେ କେତେବେଳୁ ସେଇ ଉପର ପାହାଚ ଉପରେ ପଡ଼ିଯାଇଛନ୍ତି ।

ପଣ୍ଡିତ ମହାଶୟେ ନିବିଷ୍ଟ ମନରେ ଗଙ୍ଗା ସ୍ନାନ କରି ତମ୍ବିଏ ପାଣି ଧରି ଉଠି ଆସୁଛନ୍ତି । ଦୃଷ୍ଟି ତାଙ୍କର ପ୍ରାୟ ସ୍ଥିର । ଜାଣିହୁଏ ମନ ଏ ଜଗତରେ ଅଛି, ତାଙ୍କୁ ନେଇ ବିଶ୍ୱନାଥ ମନ୍ଦିରରେ ପହଞ୍ଚେଇ ଦେବ । ନଚେତ୍ ସବୁଆଡ଼ୁ ଟାଣିହୋଇ ଭିତରେ ବାଳକ ଏକାଠି ହୋଇସାରିଛି । ସେ ଦାସଙ୍କୁ ଦେଖି ଦୋ ଦୋ ଚିହ୍ନା ହେଲେ ।···ତା ପରେ ଚଳେ ପାଣି ତାଙ୍କ ମୁହଁ ଉପରେ ମାରିଦେଇ ସିଧା ଗ୍ଭଲିଗଲେ ।

ଦାସଙ୍କ ଆଖିପତା ଥରି ଥରି ଫିଟିଲା । ତଥାପି ତାଙ୍କୁ ଝାଇଁ ଝାଇଁ ଲାଗୁଥାଏ । ହାତରେ ଭରା ଦେଇ ଉଠ ବସିଲେ । ସେତେବେଳକୁ ବେଶ୍ ଆଲୁଅ ହୋଇଗଲାଣି । ଗଙ୍ଗାର ସକାଳୁଆ ତୋଫା ବେଶ୍ ତାଙ୍କୁ ଟିକିଏ ଚେଙ୍ଗା କରିଦେଲା ।

ଘାଟର ଦୁଇ କଡ଼ରେ ଚକା ଉପରେ ଛତା ଟାଣି ତିଳକ କରେଇବାକୁ ଲୋକ ବସିଗଲେଣି । ଯାତ୍ରୀଙ୍କ ପାଲଟା ଜଗିବା ପାଇଁ ଲୋକ ଆସିଗଲେଣି । ମନ୍ତ୍ର ପଢ଼ି ଗଙ୍ଗାସ୍ନାନ କରେଇ ଦେବାକୁ ଧୂଆଳୁଗା ଚୋପଡ଼ା ପିନ୍ଧି ରୁଦ୍ରାକ୍ଷ ମାଳ ପକେଇ ଟୋକା ବୁଢ଼ା ବ୍ରାହ୍ମଣ ସବୁ ବୁଲିଲେଣି ।

ଦାସେ ମନେ ମନେ କ'ଣ ଗୋଟେ ଅଭାବ ଆସ୍ତେ ଆସ୍ତେ ଅନୁଭବ କଲେ । ଯେମିତ ସେ କାହାକୁ ଖୋଜୁଛନ୍ତି । ଓହୋ, ପଣ୍ଡିତ ମହାଶୟେ କାହାନ୍ତି ? ···ପଳେଇଲେ ବୋଧହୁଏ ! ହଉ, ମନ୍ଦିରକୁ ତ ଯାଇଥିବେ, ସେଇଠି ଦେଖାହେବ ନାହିଁ କି !···ମାତ୍ର ମୋର ଏମିତ କ'ଣ ମଝିରେ ମଝିରେ ଚେତା ବୁଡ଼ିଗଲା ପରି ହଉଚ ' ବଡ଼ ଅଦ୍ଭୁତ !

ଏତିକିବେଳେ ଗୋଟିଏ ବାର ତେର ବର୍ଷର ପିଲା—ଚିତା ତିଳକ କରିଛି, ରୁଦ୍ରାକ୍ଷମାଳଟିଏ ପକେଇଛି—ଆସି ତାଙ୍କ ପାଖରେ ଠିଆହେଲା । ଦାସେ ତା ମୁହଁକୁ ଗ୍ଭହିଁଲେ । ସେ ହସି ହସି ଭାରି ଆଦରରେ କହିଲା—"ଚଲିଏ, ଆପ୍‌କୋ ସ୍ନାନ କରୱାଦେ ଲେଆଏଁ ! ସନ୍ତାପନାଶିନୀ ଗଙ୍ଗାମେଁ ଆପ୍‌କା ସବ୍ ଜନ୍ମକା ପାପ ଧୂଲ୍ ଯାଏଗା !···ଉସ୍‌କେ ବାଦ୍ ଆପ୍‌କୋ ବିଶ୍ୱନାଥ ଜୀ କା ଦର୍ଶନ ଭି କରୱାଦେଙ୍ଗେ । ଅନ୍ନପୂର୍ଣ୍ଣା ମନ୍ଦିର୍ ଔଗେରହ୍ ଭି ଉଧର୍ ହେ, ଦିଖ୍‌ୱା ଲାଏଙ୍ଗେ । ···ଆପ୍ ୟହାଁ କିଧର ଠହର୍‌ତେ ହେଁ ? ଆପ୍ ହମାରେ ମେହମାନ୍ କ୍ୟୋଁ ନେହିଁ ହୋତେ ? ବୋଲିଯେ ଆପ୍‌କେ ସବ୍‌କୁଛ ସେବା କର୍ ସକ୍‌ତେ ହେଁ ।"

ଏସବୁ କଥାର ସାଧାରଣ ଅର୍ଥଟା ଦାସେ ଠଉରେଇ ନେଲେ, କିଛି କିଛି ବୁଝିଲେ ମଧ୍ୟ । ମାତ୍ର କିଛି କହିପାରିଲେ ନାହିଁ, ତା ମୁହଁକୁ ବଲ ବଲ ଗ୍ଭହିଁରହିଲେ । ଖୁବ୍ ଗୋରା ହୋଇ ଭାରି ସୁନ୍ଦର କଅଁଳ ମୁହଁଟିଏ । ବଲଲପରି ହାତଗୋଡ଼ ।···ଦାସଙ୍କ ମନ କହିଲା,··· ଧନ୍ୟ ହେଇଯା । କେଡ଼େ ସୁନ୍ଦର ପିଲାଟିଏ ମ ! କେତେ ମିଠା କଥା କହି ଶିଖିଛି !···ତାକୁ କ'ଣ ଆଉ ନାହିଁ କରିଦେବା !

ମାତ୍ର ତାଙ୍କ ଭିତରେ ଘୋର ଅସ୍ଥିରତା । ମନ ସାଙ୍ଗେ କଥା ବା କଥା ସାଙ୍ଗେ କାମ କାହା ସାଙ୍ଗେ କାହାକୁ ସେ ଆଉ ଯୋଡ଼ି ପାରୁ ନାହାନ୍ତି ।···ପିଲାଟି ତାଙ୍କୁ ଅପ୍ରତିଭ ହେଲା ପରି କିଛି ସମୟ ଚାହିଁଲା ଏବଂ ଦାସେ କିଛି କହିବା ପୂର୍ବରୁ ଅନ୍ୟ ଯାତ୍ରୀ ଯୋଗାଡ଼ରେ ଚାଲିଗଲା ।

ଅନେକ ସମୟ ପରେ ଅଳ୍ପ ସ୍ନେହ ଆଉ କରୁଣାମିଶା ଶ୍ରେଷ୍ଠ ହସଟିଏ ଦାସଙ୍କ ମୁହଁରେ ଦେଖାଦେଲା ।···ତାକୁ ଦେଖିବାକୁ ପାଖରେ କେହି ନ ଥିଲେ । ଦାସେ ମଧ୍ୟ ଅନୁଭବ କରିପାରିଲେ ନାହିଁ ଯେ ସେ ହସୁଛନ୍ତି, କାରଣ ତା ସହିତ ତାଙ୍କ ମନର ଆଉ ଯୋଗ ନ ଥିଲା !!

କିଛି ଗୋଟାଏ ଘଟିଲା ବୋଧହୁଏ ।

ଦାସେ ଚମକିପଡ଼ିଲେ । ହଠାତ୍ ସବୁ ଚେତନା ତାଙ୍କର ଫେରିଆସିଲା । ଯୋଗା-ଯୋଗ ଫେରିଆସିଲା । ସେ ମଟମଟ କରି ଗୋଟେ ଆଡ଼େ ଚାହିଁ ରହିଗଲେ ।···ଆରେ, ଟୁକୁମା ଏଠିକି କୁଆଡ଼ୁ ଆସିଲା !···ଜମ୍ବୀ ଟୋକା ବି ତ ସାଙ୍ଗରେ ତା'ର ଆସିଛି !!···ଅଦ୍ଭୁତ ! —ସେଇ ତ !! ସେମିତି ପଛଆଡ଼, ଠିକ୍ ସେମିତି ଚାଲି, ସେଇ ଓଢ଼ଣା !!···ଏଁ···ଏ କ'ଣ ମୁଁ ଦେଖୁଛି ? ଠିକ୍ ଦେଖୁଛି ତ ?···

ଟିକିଏ ଉତ୍ତେଜିତ ହୋଇଗଲେ ସେ ମୁଣ୍ଡର ପଛଟା କୁଣ୍ଡାନ୍ତି । ହାତରେ ଲଣ୍ଡା-ମୁଣ୍ଡର ଟାଆଁସା ରୁଢ଼ ଲାଗିଲା । ସେ ବେଶ୍ ଚେତା ଅଛନ୍ତି ତା'ହେଲେ !

ବୁକୁ ତାଙ୍କର ଦାଉଁ ଦାଉଁ ପଡ଼ୁଥାଏ । ଏକ ଲୟରେ ସେ ସେଇ ମା' ପୁଅ ଦୁଇ ଜଣଙ୍କୁ ଚାହିଁରହିଥାନ୍ତି । କେତେବେଳକୁ ସେମାନେ ଫେରି ଚାହିଁଲେ । ହାଉକିନା ଦାସଙ୍କ ମୁହଁଟା ଜଳି ଉଠିଲା···ଏଇଲଗେ ଦିଶିଯିବ !···ସ୍ତ୍ରୀଲୋକଟି ତାଙ୍କର ଆଡ଼େ ଚାହିଁ ହସିଦେଲା ପରି ତାଙ୍କୁ ଲାଗିଲା । ସେ ଆହୁରି ଚମକିପଡ଼ିଲେ । ଅବିକଳ ସେଇ ହସ ··ସବୁ ଠିକ୍ ସେମିତି···କିନ୍ତୁ···ଏ···ସେ ନୁହେଁ !!···ପିଲାଟା ମଧ୍ୟ ପଛଆଡ଼ୁ ଯିନା ଜମ୍ବୀ ପରି ଦିଶୁଥିଲା, ଆଗପଟୁ କେତେ ଭିନେ ଜଣାଯାଉଛି !! ନାଃ···ଏସବୁ ଆଉ କିଏ !

ତଥାପି ଏ ଚମକଟାକୁ ଦାସେ ସହଜରେ ଜରେଇ ପାରିଲେ ନାହିଁ । ଶେଷରେ ସେ ସ୍ତ୍ରୀଲୋକଟି ତାଙ୍କ ସ୍ୱାମୀଙ୍କ ସାଙ୍ଗରେ କଥାବାର୍ତ୍ତା କରି ଚାଲିଗଲେ । ଦାସେ ସେମିତି ତାଙ୍କୁ ଚାହିଁରହିଥାନ୍ତି ।

ସେ ଦେଖିଥିଲେ କ'ଣ ଭାବି ନ ଥିବେ ?···ମାତ୍ର ସେଥିରେ ଦାସଙ୍କର ଚାରା କ'ଣ ?

ଦାସେ ସେଇଠୁ ଉଠିଲେ ଗଙ୍ଗାରେ ସ୍ନାନ କରିବାକୁ । ସିଧା ଯାଇ ପାଣି ଧାରି ପାଖରେ ବସି ଆଗ ମୁଣ୍ଡରେ ଘଡ଼ିଏ ଗଙ୍ଗାପାଣି ଛିଞ୍ଚିହେଲେ । ତାପରେ ଧୀରେ ପାଣିରେ ପଶିଲେ । ତାଙ୍କ ଚାରିଆଡ଼େ ସବୁ ନାକ କାନ ଚିପି ପାଣିରେ ବୁଡ଼ୁଥାନ୍ତି । ଜଣେ ବୃଦ୍ଧ ଅଣ୍ଟେ ପାଣିରେ ଠିଆହୋଇ ସୂର୍ଯ୍ୟଙ୍କୁ ଆଞ୍ଜୁଳା ଆଞ୍ଜୁଳା ଅର୍ଘ୍ୟ ଦେଉଥାନ୍ତି । ତାଙ୍କ ଯୋଡ଼ରେ କଦମ୍ବ କେଶର ପରି ପାଚିଲା ରୁଢ଼ିଆ ଦାଢ଼ି, ରୁଢ଼ସବୁ ଗଜେଇ ଗଜେଇ ଠିଆ ହୋଇ ରହିଥାଏ ।···ଦାସେ ବେଳ ପର୍ଯ୍ୟନ୍ତ ପାଣିରେ ବୁଡ଼ିରହି ସବୁ ଦେଖୁଥାନ୍ତି ।

ସୁଅ ମଝିରେ ଗୋଟିଏ ଜାଉଆ ନାଆ ଭାସି ଚାଲିଗଲା । ସେଥିରେ ଚାରୁଆ ଟଣା-ହୋଇଥାଏ । ତା' ତଳେ ଚୌକି ପକେଇ ଜଣେ ସାହେବ ତା' ମେମ୍‌କୁ ସାଙ୍ଗରେ ନେଇ ବସିଥାଏ । ଦୁହେଁ ଯାକ ଆଖିରେ ଯନ୍ତ୍ର ଯୋଖି ଗଙ୍ଗାକୂଳ ଦେଖୁଥାନ୍ତି ।

ନାଆ ଚାଲିଗଲା ପରେ ଦୁଇଟି ସରୁ ଗାର ପାଣିରେ ମିଳେଇ ଗଲା । ଅକଳନ୍ତି ସୋତ, ଆଖି ପାଉ ନାହିଁ । ମୁଦ୍‌ର ଗୁଡ଼ିଆ ହେଲା ପରି ପାଣି ଚଢ଼ି ଚାଲିଛି । ମକର-ବାହିନୀର ଏ ସୁଅରେ ପଡ଼ି ଐରାବତ ଭାସିଯିବା କିଛି ବିଚିତ୍ର ମଣିବାର ନାହିଁ ।

ଦାସେ ବେଳେ ପାଣିରେ ବସି ଏସବୁ ଦେଖୁଥାନ୍ତି, କାହିଁରେକ'ଣ ଭାବୁଥାନ୍ତି । ପାଣିଟା ତ ପବନ ଅପେକ୍ଷା ଉଷୁମ ଲାଗୁଥାଏ । ସେ କିଛି ସମୟ ପରେ ଭୁଲିଗଲେ ଯେ ସେ ପାଣିରେ ବସିଛନ୍ତି । ତାଙ୍କ ସାତ ପଛରେ ଲୋକ ସ୍ନାନ ସାରି ବାହାରିଗଲେ, ତେବେ ବି ସେ ସେଇଠି ସେମିତି ବସିଥାନ୍ତି ।···ତାଙ୍କ ମନଟା ଆଉ ଜମା ତାଙ୍କ ଆୟତ୍ତରେ ନ ଥାଏ । ଏଣ୍ଡ ଭାବନାଗୁଡ଼ାକ ମଧ୍ୟ କେମିତି ଆସି ଉଦୟ ହୋଇ ପୁଣି ଉଭେଇଯାଉଥାନ୍ତି । ଦାସେ ଅଣାୟତ୍ତରେ ପଡ଼ିଯାଇଥାନ୍ତି । ନଈଧାରକୁ କିଛି ନ ବୁଝିଲା ପରି ସେ ଅନେଇ-ରହିଥାନ୍ତି । ସେଇଠୁ ମୁହଁ ଫେରି ଘାଟରେ ଗାଧୋଉଥିବା ଯାତ୍ରୀଙ୍କୁ ମଧ୍ୟ ସେମିତିଆ ଭାଟକୋ ଭଳି ଅନଉଥାନ୍ତି । ମୁଣ୍ଡ ଭିତରକୁ କିଛି ହେଲେ ଯାଉ ନ ଥାଏ । ମଣିଷଗୁଡ଼ାକ ଛାଇ ପରି ଦିଶୁଥାନ୍ତି, ନଈ ନଈପାଟ ସବୁ ଛବି ପରି ଜଣାଯାଉଥାନ୍ତି । କିନ୍ତୁ ସେ ସୋତ ? ସେଇଟା ତାଙ୍କୁ ଗୋଟାଏ ଗମ୍ଭୀରଆ ଅନୁଭୂତି ଦେଉଥାଏ । କେଉଁଆଡ଼ୁ କେଉଁଆଡ଼କୁ ଏତେଗୁଡ଼ାଏ ପାଣି ବାଉଳ ପରି ଏମିତି ବୋହିଯାଉଛି ? ଏହାର ଉତ୍ପତ୍ତି କେଉଁଠି ଏବଂ କେଉଁଠି ଏ ଯାତ୍ରାର ଶେଷ ? ବାରମ୍ବାର ସେ ନିଜକୁ ନିଜେ ପଚାରୁଥାନ୍ତି, କିଛି ବିଶେଷ ଉତ୍ତର ମିଳୁ ନ ଥାଏ ।

କ'ଣ ଘଟନା ? ବେଳ ଆସି ଦୁଇ ଘଡ଼ି ସରକ ହେଇଗଲାଣି । ଖରା ଚାଉଁ ଚାଉଁ ମାରୁଛି । ଦାସଙ୍କର ଜମା କିଛି ବୋଇଲେ କିଛି କାମ କରିବାର ଠିକ୍ ରହୁ ନାହିଁ । ଯେମିତିଆ ନିଶା ଖାଇ ମଣିଷ ଘାରିହେଉଥାଏ, ବାଉଳା ପରି ବ୍ୟବହାର କରୁଥାଏ—ବାହାରୁ ଲକ୍ଷ୍ୟ କଲେ ଦାସେ ଅବିକଳ ସେମିତି ଜଣାଯାଉଥାନ୍ତି ।

ଘାଟରେ ଲୋକଗହଳି ଖୁବ୍ ପାତଳ ହୋଇଆସିଥାଏ । ଦୁଇ ତିନି ଜଣ ଘାଟୁଆ ବ୍ରାହ୍ମଣ ଦାସଙ୍କୁ ଦେଖେଇ କ'ଣ ଗୁଡ଼ାଏ କଥାହେଉଥାନ୍ତି । ଇଙ୍ଗିତରୁ ଜଣାଯାଉଥାଏ ଯେମିତି ସେମାନେ ଦାସଙ୍କୁ ପାଗଳ ବୋଲି ଠଉରେଇଛନ୍ତି । ଅବଶ୍ୟ ସେଥିରେ ବିଶେଷ ଭୁଲ୍ ବା କେଉଁଠି ?

ଏତିକିବେଳେ ଗଜର ଗଜର ପାଟିତୁଣ୍ଡ କରି ପହଞ୍ଚିଲେ ମାଇକିନିଆ ଅଣ୍ଡିରା ହୋଇ ଗୋଛେ ଛତରଗଡ଼ । ଏଗୁଡ଼ିକ ସବୁ ତୀର୍ଥ ଯାଆନ୍ତି, ପୁଣ୍ୟ ମଧ୍ୟ ଯାଆନ୍ତି । ସବୁଠେଇ ଲୋକ ସ୍ୱାଙ୍କୁ ଦେଖି ହସନ୍ତି, ବୋକା ଭାବ ଠକନ୍ତି ।

ଦାସେ କ'ଣ ଭାବିଲେ କେଜାଣି, ତିନି ଚାରି ବୁଡ଼ା ମାରିଦେଇ ଆସି କୂଳରେ ଠିଆହେଲେ । ସେଇ ଧୋତି ଗାମୁଛା ଚପୁଡ଼ି ଦେହରେ ପାଣି ମୁହାଏ ବୁଡ଼େଇ ସେ

ଆଡ଼େଇ ହୋଇ ବାହାରିଲେ । ଆଖିରେ ସେମିତି ଫାଙ୍କା ଫାଙ୍କା ଦୃଷ୍ଟି ଲାଗିରହିଥାଏ । ହେଲେ ତାଙ୍କର ବାହ୍ୟଜ୍ଞାନ ଫେରିଆସିଲାଣି ବୋଲି କହିବାକୁ ହେବ । ପାହାଚ ଉଠୁ ଉଠୁ ଦୁଇ ତିନି ଜଣ ଆଗ ପଛ ହୋଇ ଆସି ତିଳକ କରିବାକୁ ଡାକିଲେ । ଦାସେ ସେମାନଙ୍କୁ ଚାହିଁଲେ କେବଳ । ବୁଝିପାରିଲେ ତ କିଛି କହନ୍ତେ ! ଯାହା ଦେଖନ୍ତି ତାକୁ ଗ୍ରହଣ କରି ପୁଣି ସେଇ ଅନୁସାରେ କିଛି କହିବ ବା କରିବ ଭାବିଲାବେଳକୁ ସେ କ୍ଷଣକ ଯେ କଥା ହେଉଥିବ, ହଠାତ୍ ଭୁଲି ପଡ଼ି ଚାଲିଯାଏ । ଟିକିଏ ହସେ ବୋଧହୁଏ ।

ଦାସେ ସବା ଉପର ପାହାଚରେ ପହଞ୍ଚିଛନ୍ତି କିଏ ଜଣେ ପଛରୁ କ'ଣ କହିଲା । ଦାସଙ୍କୁ ତାହା ଶୁଭିଥିବ । କିନ୍ତୁ ମନ ପାଖରେ ପହଞ୍ଚିବାକୁ ଟିକିଏ ସମୟ ଲାଗିଲା । ସେ କିଛି ବାଟ ଯାଇ ଭାବିଲେ—ଆଚ୍ଛା. ସେ କାହିଁକି ସେମିତି କହିଲା, 'ପାଗଳ ନହିଁ ହେ ଶାଳା ଉଲ୍ଲୁ ହେ'···ତାହେଲେ ମତେ କ'ଣ କେତେ. ଜଣ ଏଇଠି ପାଗଳ ବୋଲି ଭାବନ୍ତି ? ଭାବିଥିବେ ।···କଥାବାର୍ତ୍ତା ଢଙ୍ଗଢାଙ୍ଗରେ କ'ଣ ମୁଁ ସତେ ପାଗଳ ଭଳିଆ ଦିଶୁଛି ନା ? ଅଳ୍ପ ହସିଲେ ମନକୁମନ···ପାଗଳ ବଇଲେ ଏଇ···ବାୟାଟି ? କିଓ ମୁଁ କ'ଣ କଲି କି ମୁଁ ବାୟା ହେବ ?···କିଛି ସମୟ ତାଙ୍କୁ ଆମୋଦ ଲାଗିଲା । ପୁଣି ଭାବିଲେ, ଆଚ୍ଛା ଏ 'ଉଲ୍ଲୁ' ବଇଲେ କ'ଣ ? ଭଲ ଭାଷା ବାପ ! କ'ଣ ଗୋଟେ ସେମିତି ହେଇଥିବ । ଗାଳି ଫାଳି କ'ଣଟାଏ ହେଇଥିବ ବୋଧହୁଏ ।

ରାସ୍ତାରେ ଠିଆ ହୋଇ ଦାସେ ହସୁଥାନ୍ତି । ଦୁଇ କଡ଼ରେ ଦୁଃଖୀ ରଙ୍କି, ଖଣ୍ଡିଆ ପୋକଡ଼ା ଧାଡ଼ି ଧାଡ଼ି ହୋଇ ବସିଗଲେଣି । ଦାସେ କିଛି ନ ଥିଲା ମଣିଷ ପରି ଦିଶୁଥିଲେ ମୁଁ ସେମାନେ କ'ଣ ହାତ ପତେଇ ଦି'ଡାକ ନ ମାରିବେ ।···ମାଗିଲେ । ଦାସେ କିଛି ନକହି ଆଗେଇଲେ । ତାଙ୍କୁ କେହି ଆଉ ରକ୍ତମାଂସର ମଣିଷ ଭଳିଆ ବୋଧ ହୋଇ ପାରୁ ନ ଥାନ୍ତି । ସବୁଗୁଡ଼ାକ ଯେମିତି ସେ ସ୍ୱପ୍ନରେ ଦେଖୁଛନ୍ତି । ସମସ୍ତେ ଯେମିତିଆ ଖାଲି ଛାଇ । ନିଜେ ମଧ୍ୟ ପବନରେ ଭାସିଯାଉଥିଲା ପରି ତାଙ୍କୁ ଲାଗୁଛି ।

ତାଙ୍କ ଆଗରେ ଆହୁରି ଦୁଇ ଜଣ ଲୋକ ଗଙ୍ଗା ସ୍ନାନ କରି ଫେରୁଛନ୍ତି । ଓଦା ଲୁଗା ସବୁ ଖଣ୍ଡେ ଲେଖାଏଁ ମୁଣ୍ଡରେ ଧରିଛନ୍ତି । ଶୁଖିଲା ଧୋତି ପିନ୍ଧି ଉଷୁମ ଚାଦର ଘୋଡ଼େଇ ହୋଇ ସେମାନେ ଶୀତରେ ଟିପେଇ ଟିପେଇ ଚାଲିଛନ୍ତି । ଦାସଙ୍କର କିନ୍ତୁ ମେଲା ଦେହ । ପିନ୍ଧା ଲୁଗା ଓଦା । କାନ୍ଧରେ ଓଦା ଗାମୁଛା । ଦାସେ ତାଙ୍କ ଅଜାଣତରେ ସେମାନଙ୍କ ପିଛା ଧରିଛନ୍ତି ।

ବଡ଼ ରାସ୍ତାରୁ କେନା ମେଲି ଡାହାଣକୁ ଗୋଟେ ସରୁ ଗଳି । ସେ ଭିତରକୁ ସୂର୍ଯ୍ୟ-ତାପ ନାହିଁ କି ଆଲୁଅ ମଧ୍ୟ ନାହିଁ । ଏ ପାଖରୁ ହାତ ବଢ଼େଇଲେ ସେ ପାଖକୁ ପାଇବ । ମଝିରେ ବାଉଁଶଫାଳି ପରି ଡେଙ୍ଗି ରାସ୍ତା । ଦୁଇ ପାଖରେ ନାନା ରକମର ଦୋକାନ ବସି-ଥିବାର ଦାସେ ଥରେ ଲକ୍ଷ୍ୟକଲେ । ତାପରେ ଆଡ଼େଇ ହୋଇ ଚାଲିଲେ ।

କିଛି ବାଟ ଯାଇଛନ୍ତି ଦେଖିଲେ ବାଟ ଜଗି ଏଡ଼େ ବଡ଼ କସରା ଷଣ୍ଢଟାଏ ଠିଆ ରହିଛି । ଏ ପାଖ କାନ୍ଥକୁ ସେ ପାଖ କାନ୍ଥ ତା ପେଟ ଲାଗିଛି । ବୋଝ ପରି ଏଡ଼େ ମୁଣ୍ଡ,

ତାକୁ ଗ୍ଦହିଁ ସେମିତଥା ହଲେ ଚକଣିଆ ଶାଳୁଆ ଶିଙ୍ଗ । ତାକୁ ଦେଖିବାମାତ୍ରେ ଦାସଙ୍କର ଭୟ ହେଲ । ଦେହ ମୁଣ୍ଡକୁ ଗ୍ଦହିଁ ଗ୍ଦହିଁ ହୋଇ ବାହ୍ୟଜ୍ଞାନ ଫେର ଆସିଲ ।

ପାର ହୋଇ ଯିବେ କେମିତ ?

ମଟମଟ କର ତାକୁ ଅ ଉ ଘଣ୍ଟାଏ ଗ୍ଦହିଁଲେ । ପାହାଡ଼ ପର ନଦୀ ଠିଆହୋଇଥାଏ । ଆଖି ଦୁଇଟା ଘୂମେଇଲ ପର କର ବଡ଼ ଧୀରେ ପାଗୁଳ କରୁଥାଏ । ମହାଭୟଙ୍କର ଜନ୍ତୁ ସ୍ୱାପ, ଏକା ଉହକେ ଦାରୁଭ୍ରମ ଟାଳଦେବ ।···କନ୍ତୁ ତା'ର ଗମ୍ଭୀର ରୂପ ଦେଖି ଦାସେ ଦୋଦୋପାଞ୍ଚ ହେଉଥାନ୍ତି । ମନେପଡ଼ିଲ—ମୋ ଆଗରୁ ଯେ ଦୁଇଜଣ ଯାଉଥିଲେ ସେ ଗଲେ କେମିତ ? ଏଇ କଡ଼ଦେଇ ଘସିହୋଇ ଯାଇଥିବେ ତ !

ଦାସେ ସାହସ ବାନ୍ଧି ଆଗେଇଲେ !

କ୍ଷଣେ ଜମା ସୃଭାଟାଏ ମଧ୍ୟ ହଲଲ ନାହିଁ । ତାକୁ ପାରହୋଇ ଗଲାବେଳକୁ ତା' ପଛ ଫଡ଼ଆକୁ ଭଡ଼ରେ ଉହଟାଏ ମାର ଦାସେ କହଲେ—

"ଆରେ ପଶ୍ୱ୍ ! ବାଟଟାରେ କ'ଣ ଏମିତଥା ଠିଆ ହୋଇଚ ବା ?"

ଓଃ, କ ଜନ୍ତୁ ସ୍ୱାପ । ଟିକଏ କାହିଁ ଚଲନ୍ତା !

ଫୁଲ ବେଲ ପତ୍ରରେ ଧାଡ଼ି ଧାଡ଼ି ଦୋକାନ ଭର୍ତ୍ତି ହୋଇ ରହିଥାଏ । ଖେଉ ମଧ୍ୟ ସଜା ହୋଇ ରଖାହୋଇଥାଏ । ଦାସେ ଓଦା ଧୋତଟି ପିନ୍ଧିଛନ୍ତି, ଓଦା ଗାମୁଛା ଖଣ୍ଡ କାନ୍ଧରେ ପକେଇଛନ୍ତି, ଫୁଙ୍ଗା ଦେହ । ଦୁଇ ପାଖରୁ ଦୋକାନୀ ତାଙ୍କୁ ଦେଖି ଆଉ ଡକାହକା କଲେନାହିଁ । ଜାଣିଲେ, ସେମିତଥା ଲେକ ପାଖରେ ପଇସା ପତ୍ର ନ ଥାଏ ଏବଂ ସେ କଛ କଣେନାହିଁ ।

ଦାସେ ମଧ୍ୟ ତଳକୁ ମୁହଁ ପୋତ ଗ୍ଦଲଥାନ୍ତି । 'ପଇସା ଦ'ଟାର ଫୁଲ ମିଳନ୍ତା ନ ? ···ହଉ, ଗୁଡ଼ ।—ନ ମିଳଲେ କ'ଣ ହୋଇଗଲ ସେଇଠୁ । ଭକ୍ତରେ ପାଣିଧାରେ ଇଡ଼ଦେଲେ କ'ଣ ସେ ପାଇବେ ନାହିଁ ?

ଏତକବେଳେ ସିନ୍ଦୂର ସିର କାଟିଚ୍ଛ, ଗୋଟିଏ ବୁଢ଼ା ଦୋକାନୀ କ'ଣ ଭାବ ଦାସଙ୍କୁ ଡାକଲ । ଥରେ, ଦୁଇଥର, ତନଥର ଡାକବାରେ ଦାସେ ମୁହଁ ଟେକ ସେଇଆଡ଼େ ଗ୍ଦହିଁଲେ । ତାଙ୍କୁ ଏଇଠି ଡାକବ ଏମିତ ତ କେହ ନାହିଁ ? ବୁଢ଼ାଟି ବଡ଼ ଅମାୟିକ ଭାବରେ ଦାସଙ୍କୁ ହାତଯୋଡ଼ ନମସ୍କାର କଲ । ଦାସେ ସନ୍ଦେହରେ ପଡ଼ ଆଶୀର୍ବାଦ କରବାକୁ ମଧ୍ୟ ପାଶୋରଗଲେ । ସେ ଅତ ସମ୍ଭ୍ରମର ସହତ ଫୁଲ, ବେଲପତ୍ର, ଖେଉ ଗୋଟିଏ ପତ୍ର-ଠୁଙ୍ଗାରେ ଭର୍ତ୍ତିକର ବଢ଼େଇଦେଲ ।

ଦାସେ ଭାବ ଅଡ଼ୁଆରେ ପଡ଼ ଖାଲ ତାର ମୁହଁକୁ ଗ୍ଦହିଁ ହସିଲେ । ସେ କ'ଣ ବୁଝିଲ କେଜାଣି କହଲ—"ମହାଶୟ, ୟେ ସବ ବିଶ୍ୱନାଥ ଜି କେ ଉପର ଚଢ଼ା ଦଜାୟେଗା ।···ଆପ୍ ପୈସେକେ ସମ୍ବନ୍ଧମେ କୁଛ୍ ନ ଶୋଚଏ । ଆପ କୈସେ ସଜ୍ଜନ କେ ହାଥ୍‌ମେ ବିଶ୍ୱନାଥ ଜି କୋ ଅଗର ସନ୍ତୋଷ ଆ' ଜାୟ ତୋ ଉସ୍ ସେ ବଢ଼୍‌କର୍ ହମାରା କ୍ୟା ସୌଭାଗ୍ୟ ହୋ ସକ୍‌ତା ହେ ?"

ଦାସେ ଏଥିରେ ଆଉ କିଛି କହିବା ନିଷ୍ପ୍ରୟୋଜନ ବିଚାରି ଆଗେଇଲେ । ଦଶ ପାହୁଣ୍ଡ ଯାଇଛନ୍ତି କି ନାହିଁ ଆଉ ଏକ ଦୋକାନୀ ଗୋଟାଏ ବଡ଼ ଟୋକେଇରେ ଯେମିତି ଫୁଲ, ବେଲପତ୍ର ଓ ନୈବେଦ୍ୟ ଭର୍ତ୍ତି କରି କଣ ସବୁ କହି କହି ଭକ୍ତିରେ ତାଙ୍କୁ ବଢ଼େଇ ଦେଲା ।

ଗୋଟେ ହାତରେ ପାଣି ଢାଳ, ଆଉ ହାତଟାରେ ଏତେ ସବୁ ଆଉ ଧରି ହେବ ନାହିଁ । ଦାସେ ଗାମୁଛା ଫିଟେଇ ଗୋଟେ କାନରେ ତାକୁ ସବୁ ଏକାଠି ବାନ୍ଧି ଚାଲିଲେ ।

ଆଉ ଯିବା ବି ସହଜ ନୁହେଁ । ଅଧିକରୁ ଅଧିକ ଭୋଗଧରି ଦୋକାନୀ ବାଟ ଜଗି ତାଙ୍କ କାନରେ କୁଢ଼େଇଲେ । ସେ ଶେଷକୁ ସ୍ୱତଃ ଗୋଟେ ଦୋକାନୀ ଆଗରେ କାନି ପତେଇ ଠିଆହେଲେ । "କଣ ହେଲା—ଶେଷକୁ ଭିକ ମାଗିଲ ?"

ତା' ପରେ କଣ ଭାବି ଆଉ କାନି ବନ୍ଦ କଲେ ନାହିଁ, ସେମିତି ପତେଇ ବାଟ ମଝିରେ ଠିଆହିଥାନ୍ତି । "ନିଜେ ତ ସ୍ୱାପ ସବୁ ଦାନ କରିଦେଇ ପୁଚୁଣା ଭିକାରୀ । ଦ୍ୱାର ଦ୍ୱାର ବୁଲୁଥିବ । ତା ପାଖକୁ କଣ ଆଉ ଭଲ ଲୋକ ହେଇ କେହି ଯିବ ? ସମସ୍ତେ ସେମିତି ଥାଳ ଧରି ଯିବାକୁ ହବ ନା ।

ବଡ଼ ଆମୋଦ ଲାଗୁଥାଏ । ଦାସେ ସେମିତି ଠିଆହିଥାନ୍ତି । ଆଗରୁ ପଛରୁ ଦୋକାନୀ ଆସି ତାଙ୍କ କାନରେ ଅଜାଡ଼ି ଲାଗିଥାନ୍ତି । ଶେଷକୁ କିଏ ଜଣେ ଆଣି ଗୋଟେ ନୂଆ ବାଉଁଶିଆ ତାଙ୍କ ଆଗରେ ଥୋଇଦେଲା । ଲୋକ ଆସି ତାଙ୍କ କାନରେ ଥୁଆନ୍ତି ସେଇ ଡାଲାରେ ରଖିଦେଇଗଲେ । ଆହୁରି ଆହୁରି ଲୋକ ଘେରିଆସିଲେ । ଦାସେ ସେମିତି ଡାଟକା ହେଲାପରି ଠିଆହିଥାନ୍ତି । ସ୍ତ୍ରୀ ପୁରୁଷ ଧାଡ଼ି ଲାଗି ଆସିଲେ । ତାଙ୍କ ଚାରିଆଡ଼େ ଗହଳି । ଅଧେ ତାଙ୍କୁ ନିଜପାଦରେ ରଖିବାକୁ ଭିଡ଼କୁ ଠେଲି ଆଡ଼ଉଥାନ୍ତି । ପାଟି ଗୁଣ୍ଡ ଧୋ ଧୋ ଯିବା ଆସିବା ଭିତରେ ଦାସେ ଅନୁଭବ କଲେ ଯେ ତାଙ୍କୁ ସବୁ ମୁଣ୍ଡିଆ ମାରି ଫୁଲ ଚଢ଼ଉଛନ୍ତି । ଏ ଅପୂର୍ବ କଥା । ଆରେ ଆରେ, ଏସବୁ କ'ଣ ବାୟା ହୋଇଗଲେ ? ଦାସେ ଆଗେଇବାର ଉପକ୍ରମ କଲେ । ପାଦ ଉପରେ ହାତେ ଉଞ୍ଚରେ କ'ଣ ସବୁ କୁଢ଼ା ହୋଇଛି । ଯିବେ କେମିତି ? ସେଇ ଭିଡ଼ରୁ ମଜଭୁତ ଭେଣ୍ଡିଆ ସବୁ ବାହାର ବାଟ କରିଦେଲେ । ଦାସେ ଶୂନ୍ୟକୁ ଚାହିଁ ପାଦେ ପାଦେ ଚାଲିଲେ ।

ବିଶ୍ୱନାଥଙ୍କର କି ଅପୂର୍ବ ରୂପ ସେ ଦେଖୁଥାନ୍ତି । ପ୍ରତ୍ୟେକ ଭକ୍ତ ତାଙ୍କୁ ନୂଆ ନୂଆ ଦିଶୁଥାଏ । ଧୂଆଁ ଲିଆ, ଏକାକାର ହୋଇଗଲା ପରି ଶହ ଶହ ଲୋକ । କାଳିସି ଲାଗିଲେ ତାକୁ ଘେରି ଯେମିତି ଲୋକ ହାଉ ହାଉ ମାଉ, ଉଠନ୍ତି, ଶେଷକୁ ଜଣା ପଡ଼େ ନାହିଁ ପ୍ରକୃତରେ କାହାକୁ କାଳିଶି ଲାଗିଛି, ସେମିତି ଦାସଙ୍କ ଚାରିପଟେ ଲୋକାରଣ୍ୟ । ସେ କିନ୍ତୁ କଥା ନ କହି ଏକ ଦୃଷ୍ଟିରେ ଆଗକୁ ଚାହିଁ ଚାଲିଥାନ୍ତି । ଆଉ ବେଳ ହୋଇଥିଲେ ଦାହେ ଚହିଁକି ଉଠିଥାନ୍ତେ, ଭୟରେ କୋଡ଼ ଗ୍ଲୁଡ଼ ସେଠୁ ପଳେଇଥାନ୍ତେ । କିନ୍ତୁ ଏତେବେଳେ ସେ ଆଉ ନିଜ ଆୟତ୍ତରେ ନାହାନ୍ତି । କ'ଣ ଗୋଟାଏ ତାଙ୍କୁ ବିଭୋର କରିଦେଇଛି ।

ସ୍ୱପ୍ନଦେଖିଲା ପରି ସେ ଶୋକ ହୋଇ ଗ୍ରହିଛନ୍ତି ।

ବିଶ୍ୱନାଥଙ୍କ ମନ୍ଦିର ତାଙ୍କୁ ଆଉ ଖୋଜି କାଢ଼ିବାକୁ ପଡ଼ିଲା ନାହିଁ । ଭିତ୍ତର ସୁଅ ଆପେ ନେଇ ତାଙ୍କୁ ସେଇଠ ପହଞ୍ଚେଇଦେଲା । ବାଁ ପାଖେ ରୁପାର ତୋରଣ ଦେଇ ସେ ଭିତରେ ପଶିଲେ । ସାନ ମନ୍ଦିରଟି ଉପରେ ସୁନା ଗ୍ରଉଣି ହୋଇଛି । ଲୋକ ଗହଳିର ଆଉ ସୀମା ନାହିଁ ।

ଏଇ ତାହେଲେ ବିଶ୍ୱନାଥଙ୍କ ମନ୍ଦିର ।

ଦାସେ ଭିଡ଼ୁ ଭିଡ଼ୁ ଯାଇ କନ୍ଧ ପଛଆଡ଼େ ଠିଆହୋଇଛନ୍ତି । ଦାସେ ଚେତା ପାଇଲା ପରି ଚମକି ଦେଖନ୍ତି ତାଙ୍କ ଆଗରେ କଳା ଭଅଁର ପରି ଶିବ ଲିଙ୍ଗ । ଅଭିଷେକ ପାତ୍ରରୁ ଗଙ୍ଗାଧାର ପରି କ୍ଷୀରଧାର ଅନବରତ ଝରୁଛି ।

ଦାସଙ୍କ ଅଞ୍ଜୁଳିରୁ ପୂଜାସାମଗ୍ରୀ କେହି ବୋଧହୁଏ ନେଇଗଲେ ସେ ଜାଣିପାରି ନାହାନ୍ତି । ଏକ ଲୟରେ ଅନେଇଆନ୍ତି । ତାଙ୍କ ଦେହ ଗୋଟା ଶୀତେଇଉଠିଲା, ଆଖି ବୁଜି ହୋଇଆସିଲା, ସେ ବୃଷଭ ଉପରେ ହାମ୍ପୁଡ଼ିହୋଇପଡ଼ିଲେ ।

ଅନେକ ସମୟପରେ ଦେଉଳର ଭିଡ ଟିକିଏ କୋହଳ ପଡ଼ିଲା । ବିଶ୍ୱନାଥଙ୍କ ଆଗରେ ପଞ୍ଚମୁଖ ମହାଦେବଙ୍କ ମନ୍ଦିର ଭିତରୁ ପଣ୍ଡିତ ମହାଶୟେ ବାହାରିଲେ । ଧ୍ୟାନମଗ୍ନ ଆଖି ଆତୁର ପୁର୍ଣ୍ଣିମାଜାରେ ଫିଟି ନାହିଁ । ସେ ଗ୍ରୀଆଡ଼େ ଟିକିଏ ଗ୍ରହିଁଲେ, ସ୍ୱପ୍ନରୁ ହଠାତ୍ ଉଠିଲେ ଯେମିତ ଦୋ ଦୋ ଚହ୍ଲା ହୋଇ ଲୋକ ଗ୍ରହେ—ଦେଖିଲେ ଦାସେ ହତଚେତ ହୋଇ ପଡ଼ିଛନ୍ତି !! ଘଟଣାଟା ଠଉରେଇବାକୁ ତାଙ୍କୁ କିଛି ସମୟ ଲାଗିଲା । ପଚରାପଚରି କରି ଯେତେବେଳେ ଜାଣିଲେ ଯେ ସେମାନେ ମିଶି ଦାସଙ୍କୁ ସନ୍ଥ ସାଜିବାକୁ ବସିଛନ୍ତି, ତାଙ୍କୁ ବଡ଼ ବିଷମ ବୋଧହେଲା । ସେ ଅବଶ୍ୟ ଦାସଙ୍କ ଚେତା ପାଇବା ପର୍ଯ୍ୟନ୍ତ ଅପେକ୍ଷା କରି ରହିଲେ । ଦାସଙ୍କୁ କେହି ଜଣେ ପାଟ ଯୋଡ଼ାଟାଏ ଘିଚେଇଦେଇଛି । ସେ ବଡ଼ ଅସହାୟ ଭାବରେ ଶୋଇଯାଇଛନ୍ତି । ପଣ୍ଡିତେ ତାଙ୍କ ଦେହରେ ହାତମାରି କିଛି ସମୟ ଧରିବସିଲେ । କେତେବେଳକେ ଦାସଙ୍କ ଆଖି ଫିଟିଲା । ଭାରି ହାଲିଆ ଦେଖା-ଯାଉଥାନ୍ତି । ପଣ୍ଡିତଙ୍କୁ ପାଖରେ ବସିଥିବା ଦେଖି ଟିକିଏ ହସିଲେ । "ବଡ ହୀନସ୍ତା ହେଲି ମହାଶୟେ । ଆପଣ ତ ଆଗ ହୋଇ ବାହାରିଆସିଲେ, ବାଟଯାକ ମୋ ଅବସ୍ଥା ବାରଣ୍ଡା ଧକଡ଼ା । ଇଆଡ଼େ ମୁଣ୍ଡ ଭିତରଟା କେମିତ ଗୋଳମୋଳ ଲାଗୁଛି ଯେ କିଛି ଭଲ ଦେଖା ଯାଉନାହିଁ । ତା ଉପରେ ବାଟରେ ଯାହା ସବୁ କଲେ କ'ଣ ଆଉ ଆପଣଙ୍କୁ କହିବି ? ବଡ଼ ଆଶ୍ଚର୍ଯ୍ୟ ମହାଶୟେ ! ଏଠା ଲୋକଗୁଡ଼ାକ କଣ ବାୟା ହେଇଗଲେ ?"

ଦାସଙ୍କ ସକାଶେ କାଶୀ ନୂଆ ।

କିନ୍ତୁ ପଣ୍ଡିତେ ଜାଣନ୍ତି କେତେ ଅଭୁତ ଏ ଶିବକ୍ଷେତ୍ର, ଆଉ ସେଇଠି ଜୀଇବା ମରିବାଟାକୁ କେଡ଼େ ସହଜରେ ଲୋକେ ଗ୍ରହଣ କରନ୍ତି । ଜୀବନର ପୋଥି ସେଇଠି ଫିଟି ପଡ଼ିଛି, ଆମୂଳଚୂଳ ପତର ପତର ହୋଇ ପ୍ରତିଟି ଅଧ୍ୟାୟ । ମାତ୍ର ସବୁ ସୂତାଟିଏ ଏ ସବୁଟା'ର ମଝିରେ ବଙ୍କାଟଙ୍କା ହୋଇ ଶୋଇ ରହିଛି ।

କାଶୀରେ ସବୁକିଛି ସମ୍ଭବ ।

ସେଇଠି ନାଥ ପ୍ରଭ ଜଣେ ସନ୍ଥ ଆବିର୍ଭାବ ହୋଇପାରନ୍ତି । ନ ହେଲେ ଜଣକୁ ସନ୍ଥ କରେଇଦେବାକୁ କେତେ ଘଡ଼ି । ସବୁ ଏଠା ଲୋକଙ୍କ ଅଦ୍ଭୁତ ସ୍ୱଭାବର ଗୁଣ । କାଶୀବାସୀ ମାନେଇ ଖେଳା । ସବୁ ସେଇ ଭୂତନାଥଙ୍କ ଗହଣର ଲୋକ । ଦାସଙ୍କର ସାଧାସିଧା ଚଳଣ ଆଉ ରୂପ ଦେଖି ତାଙ୍କୁ ବୋଧହୁଏ ଏମିତ ଏକବାଗଆ ବୁଝିଯାଇଛନ୍ତି । ଏଥିରେ ଆଉ ବଚନ କଣ ? ହେଲେ ଗଙ୍ଗାଧାରରେ ଶୁଖିଲା ପଥପର ପାଇଁ ପାଇଁ ଏଠି ଘଟଣା ମଧ୍ୟ ହୋଇଯାଏ । ସକାଳର ଗୋଟିଏ ବୋଲି ଦାସଙ୍କର ଭକ୍ତ ଆଉ ସେଠି ନ ଥିବେ । ମନେ ମନେ ସବୁ ବିଗ୍ଧିର କରି ପଣ୍ଡିତେ ଦାସଙ୍କୁ ନେଇ ପାଦୁକ ପାଇଁ ହାତ ପତେଇଲେ ।

ଦାସଙ୍କ ଚକ୍ଷୁରେ ପଣ୍ଡା ବେଲପତ୍ର ସାଙ୍ଗରେ ଟିକିଏ ପାଦୁକ ଇଡ଼ି ଦେଲେ । ପୁରୁଣା ଅଭ୍ୟାସରୁ ଦାସଙ୍କ ଗୁଣ୍ଡରୁ ବାହାରି ପଡ଼ିଲା—"ଅକାଳ ମୃତ୍ୟୁ ହରଣଂ, ସର୍ବବ୍ୟାଧି ନିବାରଣଂ......"

ମନ୍ଦିର ପଛଆଡ଼େ ପୁରୁଣା ମନ୍ଦିର ବାଟ ଦେଇ ସରୁ ରାସ୍ତା । ତାପରେ ମେଲା ସଡ଼କ । ଦୁହେଁ କିଛି ବାଟ ଯାଇ ଏ ପାଖ ସେପାଖ ଦେଖୁଛନ୍ତି—କାହିଁଥିଲା ଖଣ୍ଡେ ଘୋଡ଼ା ଗାଡ଼ି ଆସି ତାଙ୍କୁ ଛୁଟିଗଲା ।

ଧର୍ମଶାଳାରେ ପହଞ୍ଚି ଗୋଡ଼ହାତ ଧୁଆ ଧୋଇ କରି ସୁସ୍ଥ ନ ହେବା ପର୍ଯ୍ୟନ୍ତ ପଣ୍ଡିତେ ଖୁବ ଗମ୍ଭୀର ଥାଆନ୍ତି । ଦାସେ ମନେ ମନେ ସେତେବେଳକୁ ଡରିଲେଣି । ଇଃ, କି ହିନସ୍ତା କଲା ଏମନ୍ତ ଭଲଲୋକଟାକୁ । ପ୍ରୟାଗରୁ ଆସିଲା ବେଳକୁ ମୁଣିରେ କିଛି କଦଳୀ ଓ କିଛି 'ଅମୃତ୍' ଥିଲା । ତାକୁ ଦାସେ ଫିଟେଇ ରଖିଲେ । ଧର୍ମଶାଳା ଆଗରୁମୁ ଗୋଟିଏ ମିଠେଇ କ୍ଷୀର ଦୋକାନ—ସେଇଠୁ କିଛି କିଛି ଝଲ୍‌ପି ଆଉ ଦୁଇଟି ମାଟି ଗିଲାସରେ ଅଧଃସେର କରି ଖଣ୍ଡି ମୈଣା କ୍ଷୀର ଆଣିଥୋଇଲେ ।

ତାପରେ ନିଜେ ହାତଗୋଡ଼ ଧୋଇ ଆସିଲେ ।

ମୁହଁ ପୋଛୁବେ ଖବାଲୁବେଳକୁ ପାଟକନା ସଡ଼ସଡ଼ ହୋଇ ଖସିଗଲା । ଦାସେ ମୁହଁ ରଙ୍ଗା ପକେଇ ତାକୁ ଧୀରେ କାନ୍ଧରୁ କାଢ଼ି ତାଙ୍କ କମ୍ବଳ ବଡ଼ା ଉପରେ ଥୋଇଦେଲେ ।

ପଣ୍ଡିତେ ଏଇଠି ହସି ପକେଇଲେ । "କଣ ଦାସେ, ଭଲ ପାଟଯୋଡ଼ି ତ ପାଇଗଲ ଆଉ କଣ ? ତମେ ନିଜ ଢ'ଖଣ୍ଡ କୁଆଡେ ଯାଇନାହିଁ, ମୁଁ ନେଇଆସିଛି । ଆଚ୍ଛା, କ'ଣ ଏମିତ ସବୁ ଘଟିଲା କହୁବଟି । ନଇଲେ ବସ, ଅନେକ ବେଳ ହେଲାଣି, ଆଗ ଖାଇପକେଇବା । ମତେ ତ ବଡ଼ ଭୋକକଲାଣି । ଆରେ ବାଃ, ଦେଖୁଛି ବିଶ୍ୱନାଥଙ୍କ କୃପାରୁ ଆଜି ଦିନଟା ବଡ଼ ଅପୂର୍ବ । ଏ ସଜ ଝିଲେବି କେଉଁଠୁ ଯୋଗାଡ଼ କଲ ସନ୍ଥ ମହାରାଜ ।"

"ତାଙ୍କୁ ଆଉର ପଇସା ଦେଇନ ଟି । ତାକୁ ଠଗଠରି କରି କହୁଲ ଆମେ ଏ

ଭିତରେ ଅଛି । ପଇସା ଦେଇଦବୁ । ସେଇଟା ସ୍ୱୀପ ବୃତିଲ ନାହିଁ, ନଣନ୍ଦଲାଳ ଟେକି ହସିଲ । ମୁଣ୍ଡ ମଧ୍ୟ ଲହଲ—ମୁଁ ନେଇଅସିଲି ।''

''ହଉ ପଇସା ପାଇଁ ଏତେ ଭାବନା, ତମେ ଆଗ କେମିତି ସନ୍ଥ ହେଲ କହବଟି ଶୁଣିବା !''

''ମୋର ହେଉଥିବାରେ କ'ଣ ହେଲେ ହେଉଛି କ ? ମତେ ତ ସକାଳୁ କେମିତି ଛନକା ଘୋଟିଛି ଯେ ସପନ ଦେଖିଲି ପର ଅତ ଭୟାନକ କଥା ସବୁ ଦେଖି ଦେଖି ମୁଁ ବବାକେ ଝିମି ମାଇଲା ପର ହେଇଯାଇଥିଲି । ଆଉ ବାଟରେ ଯାହା କଲେ ଭଲ ଲୋକକୁ ଭେଲକ ପର ଦଗିବ; ମୋ କଥା କାହିଁକ ବା କହବ ? ମାସ ଆଜ୍ଞ ଯାହା କହନ୍ତି, ଏ ଶ୍ରେଣୀ ଲୋକଯାକ ବଡ଼ ଭକ୍ତ ଅଂଶ—ନଇଲେ କଣ ଏମିତିଆ ବାସ୍ନା ସେମାନେ ହେଇପାରନ୍ତେ ? ମାସ ସପନ କଥା କହିଲି ବେଳୁ ପଣ୍ଡିତେ ସେଥିରେ ଆଉ ମନ ଗଳେଇ ପାରୁ ନାହାନ୍ତି । ଏକାଲୟରେ ସ୍ଥିର ହୋଇ ଗୋଟେ ଆଡ଼େ ଗୃହିଁ ରହୁଥାନ୍ତି । ଦାସେ ଆଉ କିଛି ନ କହି ତଳକୁ ମୁହଁ ପୋତ ଖାଉଥାନ୍ତି ।

କେତେବେଳକେ ପଣ୍ଡିତେ ନିଶ୍ୱାସ ମାର କହଲେ, ''ବୁଝିଲି ଦାସେ, ପ୍ରଭୁର ଭୂମ ଉପରେ ଅଶେଷ କରୁଣା । ଦେଖାଯାଉ ଏଣିକ ସେ କେଉଁଆଡ଼େ ସୁଅ କାଟୁଛି । ଆଚ୍ଛା, ଏଇଲଗେ କେମିତି ଲାଗୁଛି ?''

''ଜ୍ୱର ଭାଙ୍ଗିଗଲେ ଯେମିତି ସକାଳୁଆ ପବନରେ ଚେଙ୍ଗା ଲାଗେ ସେମିତି ପରିଷ୍କାର ଲାଗୁଛି । ବିନା କାରଣରେ ଫୁର୍ତ୍ତିଟାଏ ଲାଗୁଛି ।''

''ମାହାଲିଆ ପାଟଘୋଡ଼ ପାଇଲ, ଫୁର୍ତ୍ତି ଲାଗନ୍ତା ନାହିଁ ?'' ଅଳ୍ପ ଅଣ୍ଟାଳିଆ ସ୍ୱରରେ ପଣ୍ଡିତେ ପରିହାସ କଲେ ।

ଦାସେ ହସିଲେ । ଅନେକ ଦିନ ପରେ ପ୍ରକୃତ ମନଫିଟା ହସ । ମନ ଭିତରେ କଳଙ୍କିଲଗା ଲୁହା ଫାଳ କବାଟଯାକ ଯେମିତି ସେଇ ମୁକୁଳା ହସରେ କେଁ-କାଁ ହୋଇ ଫିଟି ପଡ଼ିଗଲେ । ଆଉ ଥରେ ଫେର ବୁଜହୋଇଯିବାର ଉପାୟ ନାହିଁ । ଝିପି ଝିପି ବର୍ଷାପାତରେ ନଆଁ ରଡ଼ପର ଆଖିମାନ କର ଝାଲନାଲ ହୋଇ ଗୋଛାଏ ଭୂତ ସ୍ୱୀପ୍ସ ନ ପେଲଲେ କ'ଣ ଏ ଆଉ ସହଜେ ବୁଜହେବେ । ପଣ୍ଡିତେ ଜାଣିଲେ ଯେ ଦାସଙ୍କ ମନ ଭିତରକୁ ସକାଳ ପଶିଆସିଛି, ଆଉ ସେ ସବୁର ଭୟ ନାହିଁ ।

ହସିସାର ଦାସେ କହଲେ—''ଆଚ୍ଛା ମହାଶୟେ, ମତେ ଏଇଟା କିଏ ପିନ୍ଧେଇଲା ? ଦେଖିଲେଣି କେମିତିଆ ବାଉଁଆ କଲୁଟାଏ ମାରିଛି ? ସତେ ଏତେବେଳ ପର୍ଯ୍ୟନ୍ତ ଜଣା ପଡ଼ି ନ ଥିଲା । ଭଲ ହଟହଟା ମଣିଷ ହେଲି ।''

ଟାଉ ଟାଉ ସ୍ୱରଟା ଖାଇଦେଇ ସେ ଉଠିଲେ କଲୁ ବଦଳ କରିବାକୁ । ଦୁହେଁ ହସି ହସି ଲେଟୁଥାନ୍ତି ।

ଶେଷରେ ଦାସେ ପିଣ୍ଡାକୁ ପଳେଇଲେ, ସେଇଠି ଆଣ୍ଠେଇ ଗାମୁଛା ବଦଳ କରିବେ ।

ପଣ୍ଡିତେ ଘଡ଼ାଏ ସେଇଆଡ଼େ ଚାହିଁ ରହିଲେ । ଜାଣିଲେ, ଧର୍ମଯୁଦ୍ଧର ଦଶମ ପରେ କାଳରାତ୍ରି ମଧ୍ୟ ସରିଗଲାଣି । ଯୁଦ୍ଧପଡ଼ିଆକୁ ପଛରେ ପକେଇ ଏକୁଟିଆ କୃଷ୍ଣ ଫେରୁଛନ୍ତି । ହୋମ-ଧୂମରେ ଟିକଏ ମୂର୍ତ୍ତି ହାଲିଆ ଦେଖାଯାଉଛି । ଶ୍ରମଝାଳ ଝୁଡ଼ିପଡ଼ୁଛି । ଭାବୁଛନ୍ତି ଏଥର ଦ୍ୱାରକା ଫେରିଗଲେ ହୁଏ । ଅଳ୍ପ ଅଳସିଆ ହସ ମୁହଁ ଉପରକୁ ଆସୁଛି, ଆସୁନାହିଁ, ଏମିତ !

ପଣ୍ଡିତେ ଶୁଣେଇ କହିଲେ, “ଦାସେ, ଏଥର ବୃନ୍ଦାବନ ଯିବା !”

କହିଦେଇ ଟିକଏ ଆମୋଦ ଲାଗିଲା ତାଙ୍କୁ । ମନେ ମନେ ହସୁଥାନ୍ତି, ଖୀରଟିକକ ପିଉଥାନ୍ତି ।

# ବ୍ରଜବନକୁ ମନ ଯା' ଚଳିରେ

"କ'ଣ ଦାସେ, ଖୁବ୍ ଖୁସି ଲାଗୁଛି ନା ?"

"ଓଃ, କ ଆଉ ସବୁ ସ୍ୱେ ମହାଶୟେ ! ରେଳ ଝରକାବେଳୁ ମୁଁ ଏ କ୍ଷେତ୍ରଟାକୁ ଖାଲି ଦେଖୁଛି—କେମିତି ସମୁଦ୍ର ପରି ସମତୁଲ ହୋଇ ରହିଛି ଏସବୁ ! କୌଣସିଠି ଟିକିଏ ବୋଲି ଖାଲି ଢିପ ଦୃଶ୍ୟ ହେଉନାହିଁ । ଏଠା ପାଣି, ପବନ, ମାଟି କେଡ଼େ ନିର୍ମଳ ଲାଗୁଛି ଦେଖୁନାହାନ୍ତି—ନ ହେଲେ କ ଆଉ ଇଚ୍ଛାରେ ସବୁ ସାର୍ଥକ ଏଇ ହୃଦୟରେ ପୂର୍ଣ୍ଣ ହୋଇଥାନ୍ତେ । ଓଃ, ବଡ଼ ସୁକୃତ ଥିଲେ ମଣିଷ ଏ କ୍ଷେତ୍ରରେ ଜନ୍ମହେଉଥିବ ।"

ଦାସଙ୍କ ମନରେ ଜୁଆର ଧରିଛି । ସେ ଯାହା ଦେଖୁଛନ୍ତି ଖାଲି ବୋଳେଇ ନେଉଛନ୍ତି, ଆଦର ନେଉଛନ୍ତି । ତାଙ୍କ ଆଖିକୁ ସବୁ ସୁନ୍ଦର ଦିଶୁଛି । ନୂଆଣିଆ ସୂର୍ଯ୍ୟର ଅନ୍‌ଅନ୍ ଆଲୁଅ କସ୍ତୁରୀ ଗୁଣ୍ଡ ପରି ତାଙ୍କ ଭିତରେ ଝରିପଡ଼ୁଛି । ମାଟିର କଅଁଳା ଉଷୁମ, ତାଙ୍କ ଦେହସାରା ଚରିଯାଉଛି, ରଙ୍ଗ ମାଡ଼ିଯାଉଛି । ହୁ-ହୁ ହୋଇ ଝର ଝର ପବନ ଅତି ସହଜଭାବରେ ତାଙ୍କ ପଞ୍ଚବାୟୁ ସାଙ୍ଗରେ ମିଶିଯାଉଛି । ବୁଢ଼ାଅଡ଼େ ଅତି ଆପଣାର ଆପଣାର ପରଶ ପାଇ ସେ ଉଲସି ଉଠୁଛନ୍ତି । ହୃଦୟର ଜୁଆର ବୁକୁଭରି ଉଛୁଳି ଉଠୁଛି, ଫେଣେଇ ଉଠୁଛି ଲହଡ଼ି, ଆସି ଦାସଙ୍କ ମୁହଁ ଉପରେ, ଆଖିଧାରରେ ଝାଙ୍କି ପଡ଼ୁଛି !

ପଣ୍ଡିତ ମହାଶୟଙ୍କୁ ମଧ୍ୟ ଖୁସି ଲାଗୁଛି । ସେ ବିଭୋର ହୋଇ ପ୍ରଭାତର ଅପୂର୍ବ ଶୋଭା ଦେଖୁଛନ୍ତି ଏକଲୟରେ ।

ରେଳଡବାରେ ସେତେ ଭିଡ଼ ନାହିଁ । ଦାସେ ମୁହଁ ଫେରାଇ ଯେଉଁ କେତେଜଣ ସେଇଠି ବସିଥିଲେ ତାଙ୍କୁ ଗୋଟିକ ପରେ ଗୋଟିଏ ଚାହିଁଯାଉଛନ୍ତି । ପିଲାଙ୍କୁ ଖେଳ କଲାବେଳେ ଯେମିତି ତାଙ୍କ ମୁହଁଟା କାନ୍ଦୁରା କାନ୍ଦୁରା ଦିଶେ, ସେମିତି ଦିଶୁଥାଏ । ଆଖିରେ ତାଙ୍କର ସ୍ନେହ ବୋଳା ହୋଇ ରହିଥାଏ । କେଡ଼େ ସରଳ ନିର୍ମଳ ଲୋକଗୁଡ଼ିଏ ଏମାନେ । ସେ ଲୋକଟି—ବୟସ ପଚିଶିକି ପଚାଶ ହବ ସବା । ଏଡ଼େ ବଡ଼ ଗୋରା ମୁହଁରେ ଦୁଇପଟା ଗାଉ ଗାଉ ଦାଢ଼ି । କେଡ଼େ ଧୀର ସ୍ଥିର ଶାନ୍ତ ମଣିଷଟିଏ । କୁରୁତା ଖଣ୍ଡିଏ ବେକ ପର୍ଯ୍ୟନ୍ତ ବୋତାମଯାକ ଲଗେଇ ବସିଛି । କେଡ଼େ ସୁନ୍ଦର ଦିଶୁଛି ମ ! ଆଉ ସେ ପିଲାଟି—ତା ଟୋପି ଚନ୍ଦ୍ର ମୂଷା ଲାଙ୍ଗୁଡ଼ ପରି ଚୂଟି ଓହଳିପଡ଼ିଛି । ମଳଚୁଆ ଧୋତିଟିଏ କେମିତି ଅବାଗିଆ କରି ପିନ୍ଧିଛି, ହେଲେ ଜଣା ମାନୁଛି ପ୍ରେ ଖଣ୍ଡ ତାକୁ ! ବାଃ, ଶାଳଗଛା ପରି ଚୋକାଟା । ସମସ୍ତଙ୍କୁ ବଡ଼ ଶ୍ରଦ୍ଧାରେ ଦାସେ ଦେଖିଯାଉଥାନ୍ତି । ଆଉ ପଣ୍ଡିତ ମହାଶୟେ ମଧ୍ୟ ବାହାରୁ ଆଖି ଓହରେଇ ଆଣି ଦାସଙ୍କୁ ସେପରି ଶ୍ରଦ୍ଧାରେ ଦେଖୁଥାନ୍ତି । ଭାବୁଥାନ୍ତି—ଦାସଙ୍କର ରୁଚି

ଅରୁଚ ସବୁ ମରିଗଲା ପରି କ'ଣ ଜଣାପଡ଼ୁଛି । ସ୍ୱତଃସ୍ଫୂର୍ତ୍ତି ଶ୍ରଦ୍ଧାର ପ୍ଲାବନରେ ତାଙ୍କର ଭେଦ ବିଚାର ଆଉ ନାହିଁ । ସବୁ ତାଙ୍କୁ ସୁନ୍ଦର ମନୋମୁଗ୍ଧ ଦିଶୁଛି । କି ଅଦ୍ଭୁତ ଭାବରେ ବିଭୁକୃପା ସ୍ୱାଙ୍କୁ ଟାଣି ନେଇ ଚାଲିଛି । ଦେବତ୍ୱଭାବ ଛାଡ଼ି ଅତୀନ୍ଦ୍ରିୟ ଊର୍ଦ୍ଧ୍ୱଭାବ ପାଇବାକୁ କେବେହେ ସାଧନା କରିବାକୁ ନ ପଡ଼େ । ଦାସଙ୍କର କେବଳ ଆଉ ମାତ୍ର ଗୋଟିଏ ପାହାଚ— ତାପରେ ଅଖଣ୍ଡ ସୃଷ୍ଟିରେ ଚିନ୍ମୟ ପୁରୁଷର ସାକ୍ଷାତ୍କାର ହୋଇଯିବ ।

ଦାସଙ୍କୁ ପଣ୍ଡିତେ ବାରମ୍ବାର ଦେଖୁଥାନ୍ତି । ବାରମ୍ବାର ତାଙ୍କର ବିସ୍ମୟପୁଲକ ହେଉଥାଏ, ରୋମହର୍ଷଣ ହେଉଥାଏ । ଭାବନ୍ତି—ଆମ୍ଭର ଶୁଷ୍କ ସଂସ୍କାର ଉପରେ ଏ କେବଳ ଅବାରିତ କୃପା ଝରିପଡ଼ୁଛି । ଏହି ଚିନ୍ତାରେ ତଦ୍‌ଗତପ୍ରାଣ ହୋଇ ତାଙ୍କର ପୁଣି ପୁଲକ ଜାତହେଉଥାଏ । ଦାସଙ୍କ ଆଖିରେ କେମିତି ଗୋଟାଏ ପ୍ରସାରିତ ଦୃଷ୍ଟି । ମୁହଁରେ ଏଇ ଫାଟିପଡ଼ିବ, ଏହି ଝରିଯିବା ପରି ହସ-କାନ୍ଦର ନରମ ଘନଘଟା । ପଣ୍ଡିତେ ତାଙ୍କୁ ଯେତିକି ଚାହୁଁଥାନ୍ତି ତାଙ୍କୁ ସେତିକି ବିଭୋର, ସେତିକି ଅଥୟ ବୋଧହେଉଥାଏ । ସେହି ପରିମାଣରେ ଶ୍ରଦ୍ଧା ମଧ୍ୟ ବଢ଼ିଯାଉଥାଏ ।

ଦାସେ ହଠାତ୍ ଠିଆହୋଇପଡ଼ିଲେ । ଦେହରେ ବିଛୁଆଣୀ ଚୂଡ଼ା ଲାଗିଲେ ଯେମିତି ହୁଅନ୍ତି ସେମିତି ଝାଡ଼ି ହୋଇ ପଡ଼ିଲେ । ମୁହଁ ଦେହହାତରେ ଯେତେ ଯେପରି ତାଙ୍କର ଶରୀରେ ଟିଅ ଅଦୃଶ୍ୟ ତନ୍ତୁ ଲାଗିରହିଛି । ଗୋଡ଼ ଦୁଇଟାକୁ ତଳେ ଭୂଇଁରେ ଦୁଇଥର ବାଡ଼େଇ ପକେଇଲେ । ମୁଣ୍ଡଟାକୁ ଦଶ ଆଙ୍ଗୁଳିଆ କୁଣ୍ଡେଇ ହସି ହସି ତାଙ୍କର ସାଧାରଣ ଗଳାରେ କହିଲେ—"ବଡ଼ ଆଶ୍ଚର୍ଯ୍ୟ ମହାଶୟେ, ମୁଁ ସତକୁ ସତ ବାଇଆ ହେଇଯିବି ନା କଣ । ମତେ ମଝିରେ ମଝିରେ ଏମିତିଆ କାହିଁକି ଲାଗୁଛି ? ମୋ ହାତଗୋଡ଼ରୁ କିଏ ଛାଡ଼ିଗଲା ପରି ଲାଗୁଛି । ମତେ ଯେମିତିଆ ସାଉଁଟା-ସାଉଁଟି କରି କାହିଁ କେଉଁ ଭିତରକୁ କିଏ ଭିଡ଼ିନେଉଛି । ଆଖିଆଗରେ ଜଗତଟା ଆସ୍ତେ ଉଭାନ ହେଇଯାଉଛି । ମତେ ଲାଗୁଛି ମୁଁ ଫମ୍ପା ହେଇଯାଉଛି । ଗୋଟେ କେମିତିଆ ଅକଳନ୍ତି ଶୂନ୍ୟ ଗହ୍ୱର ହେଇଯାଉଛି ମୋ ଭିତରଟା । ମୁଁ ବୁଝେଇ କହିପାରୁ ନାହିଁ, ମନଟା ଆଉ କୁଆଡ଼େ ଭାସୁଥିଲେ ଯେମିତିଆ କିଛି ଦିଶେ ନାହିଁ କି ଶୁଭେ ନାହିଁ ଠିକ୍ ସେମିତି ଲାଗୁଛି । କୁଆଡ଼େ ହଜିଗଲା ପରି ଲାଗୁଛି ।"

ଆଗପରି ହସୁଥାନ୍ତି । ପୁଣି ଯେଉଁଠି ବସିଥିଲେ ସେଇଠି ବସି ପଣ୍ଡିତଙ୍କୁ ଲାଜେଇଲା ପରି କହିଲେ—"ମୋ ଭିତରଟା ପୂରିଗଲା ପରି କେମିତିଆ ଆକୁଳା ଆକୁଳା ମଧ୍ୟ ଲାଗୁଛି । ମହାଶୟେ, କାହାକୁ କହିବା ଏ ଅସମ୍ଭବ କଥା ? ମୋର ଆଉ ବେଶୀ ଦିନ ନାହିଁ ବୋଲି ମତେ ଜଣାଗଲାଣି ।"

ପଣ୍ଡିତେ କିଛି ନ କହି ତାଙ୍କୁ ଖାଲି ହସିଲା ପରି ଚାହିଁଛନ୍ତି ଦେଖି ଦାସଙ୍କୁ ଟିକିଏ ଲାଜମାଡ଼ିଲା । ସେ ମୁଣ୍ଡ ଉପରଟା ବାଁ ହାତରେ କୁଣ୍ଡେଇ ଆର ହାତରେ ବଟୁଆ-ଖଣ୍ଡ ମୁଣି ଭିତରୁ କାଢ଼ିଲେ । ବୋହୂ ପିଲା ଦି'ଟା ପୁଟ ଖଇର ଦେଇଥିଲା—ସରି ଆସିଲାଣି । ଗୁଆକାତିରେ ତାକୁ କତୁରି ଚୂନ ଉପରେ ଭୂରେଇ ଦେଲା ବେଳେ ଦାସେ

ପ୍ରାୟ ପୂର୍ବ କଥା ମନେପକାନ୍ତି । କିନ୍ତୁ ସେଦିନ ବୋଧହୁଏ ତାଙ୍କ ମନ ସେଆଡ଼କୁ ଆଉ ଯାଇ ନାହିଁ । କାହାଜଗୁଆ ଫାଳକ ଖୋବ ଫର୍ ଫର୍ ହୋଇ ପୋଷେ ହବ ହେଲା । ତାକୁ ମେଞ୍ଚାଏ ଲେଖା ତନଟାଯାକ ପାନରେ ଖୋଜଦେଲା ବେଳକୁ ଝାଉଁ ପବନ ପରି ଟୁକୁମା' କଥା ମନ ଭିତରେ ଭଅଁର କାଟି ଗୃଲିଗଲା । ଭୂଇଁ ତଳୁ ଧୂଳି ଆଉ ପୁରୁଣା ଶୁଖିଲା ପତ୍ର ସାଇଁ ସାଇଁ ଉପରକୁ ଉଠି ଆସିଲେ; କିନ୍ତୁ ଯାଙ୍ଗେ ଦାଙ୍ଗେ ସବୁ ପୁଣି ଶାନ୍ତ ହୋଇଗଲା । ଖଣ୍ଡେ ପାନ ମେଞ୍ଚା କରି ପାଟିରେ ପୁରେଇଦେଲେ । ବାକି ଦୁଇଖଣ୍ଡ ଝିଲ କରି ବଟୁଆ ଭିତରେ ରଖିଦେଲେ ।

“ବୁଝିଲେ ନା ମହାଶୟେ !”

ଦେଖିଲେ ପଣ୍ଡିତେ ସେଠି ନାହାନ୍ତି । ବେଳାବୁଡ଼ ସମୟ ହେଲାଣି, ବୋଧହୁଏ ଶୌଚ ହେବା ପାଇଁ ସେ ଭିତରକୁ ଯାଇଛନ୍ତି ! ଦାସେ ଉଠି ଠିଆହେଲେ । ମେଲ୍ ରେଲ-ଡବାରେ ଏଆଡ଼କୁ ସେଆଡ଼ ଟିକିଏ ଟହଲିଲେ । ପିଜଟା ବାହାରକୁ ପକେଇ ଆସି ତାଙ୍କ ଜାଗାରେ ଆଉଜାପଡ଼ି ଗୋଡ଼ ଲମ୍ବେଇ ବସିଲେ ।

ବାହାରକୁ ଦାସେ ଚାହିଁରହିଥାନ୍ତି । ଆମ୍ବୁଲିଆ ଶୀତ ଧରି ଆସିଥାଏ । ସନ୍ଧ୍ୟାଟା ଏ ରାଜ୍ୟରେ ସତେ କେତେ କଅଁଳିଆ, ଆଉ କେତେ ସୁନ୍ଦର ! ବାଃ, ଏଇଟା ତାହେଲେ ଗୋଠବାହୁଡ଼ା ବେଳ, ନାହିଁ ? ଗୋପ-ଗାଈଙ୍କ ପଛେ ପଛେ ଗଉଡ଼ଟୋକା ସବୁ ଘରକୁ ଫେରୁଥିବେ । ତା ଭିତରୁ ଗୋଟେ ବୋଧହୁଏ ପାତଳ ସ୍ୱରରେ ବଇଁଶୀ ଖଣ୍ଡେ ବଜେଇ-ଦେଉଥିବ । ଦାସଙ୍କ ଆଖିଆଗରେ ଶ୍ରୀଆପଶିଆ ଖେତ ଉପରେ ମହୁଧାର ପରି ସଧାର ଆଲୁଅ ସବୁ ଜାଲଜାଲୁଆ ହୋଇ ଆସ୍ତେ ଆଉ ଦିଶିଲା ନାହିଁ । ସେ ଆଖିରେ ପଲକ ନ ପକେଇ ସେମିତି ଚାହିଁରହିଥାନ୍ତି । କେତେବେଳକେ ତାଙ୍କ ଅଜାଣତରେ ସେ ଗାଉଥାନ୍ତି—

“କୃଷ୍ଣ ଦର୍ଶନ, ଆଶେ ଉଚ୍ଛନ୍ନ, ହୋଇ ଶ୍ୱଫଲ୍କସୁତ ।
ସାଜିଲା ରଥ, ଯୋଚିଲା ଅଶ୍ୱ, ହେଜିଲା ଯିବା ପଥ ॥
ବାଗଦଉଡ଼ି, ଦେଇଣ ଗୁଡ଼ି, ଯା' ବୋଲି ଦେଲା ଚାଳ ।
ଚକ୍ଷୁ ମଟକେ, ଅତି ଛଟକେ, ମଥୁରା ସୀମା ବଳ ॥
କରେ ଗମନ, ଅତି ଶୋଭନ, ଦିଶଇ ରଥବର ।
ସନ୍ଧିରେ ବଜେ, ଦେବଙ୍କ ରାଜେ କରିବେ ମଧୁପୁର ॥
କଂସ ନଗର, କରେ ବିସ୍ତର, ଧନ୍ୟ ହୋଇଲି ଆଜ ।
ଧନ୍ୟ ମୋ ତାତ, ଧନ୍ୟ ମୋ ମାତ, ଦେଖିବି ଦେବରାଜ ॥
ଧନ୍ୟରେ ନେତ୍ର, ହେବୁ ପବିତ୍ର, ଚାହିଁ ଜଳଦତନୁ ।
ନନ୍ଦର କୋଳେ, ଗୋପାଳ ମେଳେ ବସିଥିବେ ଯେ କାହ୍ନୁ ॥”

ଦାସେ ଆଉ ଆଗକୁ ଗାଇ ପାରୁ ନାହାନ୍ତି । ଆଖି ବୁଜି କେବଳ ଶେଷ ଦୁଇପଦ ଘୋଷିଲାଗିଥାନ୍ତି—“ଧନ୍ୟରେ ନେତ୍ର, ହେବୁ ପବିତ୍ର, ଚାହିଁ ଜଳଦତନୁ । ନନ୍ଦର କୋଳେ, ଗୋପାଳ ମେଳେ, ବସିଥିବେ ଯେ କାହ୍ନୁ !”

ଆସ୍ତେ ଆସ୍ତେ ନାଦ ଘାରଆସିଲେ କାନ୍ଦୁରା ପିଲାଙ୍କ ରାହା ଯେମିତ ଧିମେଇଯାଏ ବାସଙ୍କ ସ୍ୱର ସେମିତ କମିଆସିଲା । ଓଠ ଯାହା ପୁଟ୍‌ପୁଟ୍ ହେଉଥିଲା ତା' ମଧ୍ୟ ବନ୍ଦହୋଇଗଲା ।

ପଣ୍ଡିତେ ଆସି ଦେଖିଲାବେଳକୁ ବାସେ ଶୋଇଗଲେଣି । ଆଖିକୋଣରୁ ଟୋପେ ଲେଖା ଲୁହ ଆଉ ଝରିପାରୁନାହିଁ, ସେଇଠି ରହିଯାଇଛି । ପାଟିର ଗୋଟେ କୋଣରୁ ଧାରେ ପିକ ଅଳ୍ପ ବୋହିଆସିଥାଏ । ସେପାଖ ତଳ ଧାଡ଼ିରୁ କ'ଣ ଗୁରୁ ପାଞ୍ଚଟା ଦାନ୍ତ ବାସଙ୍କର ପଡ଼ିଗଲାଣି ତ ! ପଣ୍ଡିତ ମହାଶୟେ କିଛି ସମୟ ବାସଙ୍କର ନିଶ୍ଚଳ ଶରୀରକୁ ବଡ଼ ଶ୍ରଦ୍ଧାରେ ଅନେଇଲେ । ତା ପରେ ସେଠାରୁ ଦୃଷ୍ଟି ଫେରାଇ ଆଣି ଚକା ପକେଇ ବସିଗଲେ । ଡବାଟାରେ ଆଉ କେହି ନ ଥାନ୍ତି । ସମସ୍ତେ ବାଟରେ ଓହ୍ଲେଇଯାଇଥାନ୍ତି । ଏ ଦୁଇଜଣଯାକ ଥିଲେ ନଥାଇ ପରି ବସିଥାନ୍ତି ।

ଘ୍‌-ଘ୍ ଶବ୍ଦ କରି ରେଲ ଅନ୍ଧାର ଭିତରେ ଧସେଇ ଚାଲିଥାଏ । ନିଶ୍ଚଳ ହୋଇ ଶୋଇରହିଥାଏ ରେଳ ପଇ । ତା' ଉପରେ ପାହାର ପକେଇ ପକେଇ ଚାଲିଥାଏ ଧାଡ଼ି ଧାଡ଼ି ଲୁହାଚକ । ଚକର ବେଗରେ ଡବା ଦୁଲୁକୁଥାଏ । ବାସଙ୍କର ପ୍ରତ୍ୟେକ ଅଙ୍ଗ ଚହଲିଯାଉଥାଏ; ମାତ୍ର ପଣ୍ଡିତ ମହାଶୟେ ସେମିତ କାଠି ପରି ବସିଥାନ୍ତି । ରାତ ହେଲା, ବଢ଼ ଢଳିଲା, ତେବେ ସୁଦ୍ଧା ଦୁହେଁଯାକ ଆଗ ପରି ବସିଥାନ୍ତି ।

କେତେବେଳକେ ରେଲ ଯାଇ ଗୋଟାଏ ଷ୍ଟେସନରେ ରହିଲା । ଲୋକ ସେଠି ଆଉ କିଛି ନୁହେଁ । ସେଇ ଡବାଟାରେ ଘ୍‌-ଘ୍ ହୋଇ କୋଡ଼ିଏ କି ତିରିଶ ପଶିଆସିଲେ । ତକାହକା, ପାଟିଗୁଣ୍ଡ ବାକ୍‌ସପତ୍ର ଘୋଷରା-ଘୋଷରି ଶବ୍ଦରେ ପଣ୍ଡିତେ ଟିକିଏ ଅସ୍ୱସ୍ତି ବୋଧ କଲେ ଏବଂ ଆସ୍ତେ ତାଙ୍କର ଧ୍ୟାନ ଭାଙ୍ଗିଗଲା । ସେ ସମସ୍ତଙ୍କୁ ଦେଖି ଗୋଟିଏ କୋଣକୁ ଘୁଞ୍ଚିଗଲେ, ଆଉ ସେଇଠି ନିଶ୍ୱାସଟିଏ ମାରି ପୁଣି ଆଖି ବୁଜିଲେ ।

ବାସେ କିନ୍ତୁ ସେଇଠି ସେମିତ ବସିଥାନ୍ତି । ଲୋକଙ୍କର କ'ଣ ଧାରଣା ହେଲା କେଜାଣି, କେହି ଆଉ ତାଙ୍କୁ ଉଠେଇଲେ ନାହିଁ କି ଡାକିଲେ ମଧ୍ୟ ନାହିଁ । ସେମିତ ଆଡ଼େଇ ଆଡ଼େଇ ହୋଇ ଠିଆହୋଇଥାନ୍ତି । ସେଥିରୁ ଜଣେ ଦି'ଜଣ ଯାଇ ଗୋଡ଼ ଆଡ଼କୁ ଅତି ସନ୍ତର୍ପଣରେ ବସିଗଲେ । ରେଲ ଛାଡ଼ିଦେଲା, କଥାବାର୍ତ୍ତା ବି ସେଇ ଅନୁପାତରେ ଟିକିଏ କମିଗଲା ।

ପଣ୍ଡିତେ ଆସ୍ତେ ଆସ୍ତେ ଶରୀର ଚେତନାକୁ ଫେରିଆସି ଚାରିଆଡ଼କୁ ନିର୍ବିକାର ହୋଇ ଚାହିଁଗଲେ । ମନକୁ ମନ ଅଳ୍ପ ଅଳ୍ପ ହସୁଥାନ୍ତି । ଦେଖିଲେ ଚାଳିଶ କି ପଇଁଚାଳିଶ ବର୍ଷ ବୟସ ହେବ ଜଣେ ଲୋକ ତାଙ୍କ ପାଖକୁ ଲାଗି ଠିଆହୋଇଛନ୍ତି । ସାଙ୍ଗେ ସାଙ୍ଗେ ଜାଗା କରିଦେଇ ତାଙ୍କୁ ବସିବାକୁ ଅନୁରୋଧ କଲେ । ସେ ବଡ଼ ଉପକୃତ ଓ ଆପ୍ୟାୟିତ ହେଲାପରି ପଣ୍ଡିତଙ୍କ ସାଙ୍ଗରେ ନିଜ ଲୋକପରି କଥାବାର୍ତ୍ତା ଆରମ୍ଭ କରିଦେଲେ । ପଣ୍ଡିତେ ସେଥିରୁ ବୁଝିଲେ ଯେ ରାତି ପ୍ରାୟ ନଅଟା ସମୟକୁ ଗାଡ଼ି ମଥୁରାରେ ପହଞ୍ଚିବ ··ଆଉ ଅତି ବଡ଼ ହେଲେ ଦୁଇଘଣ୍ଟା ରହିଲା ।

ଦାସେ ଆରପାଖ ପଟାରେ ହତଚେତ ହେଲାପରି ପଡ଼ିରହିଥାନ୍ତି । ଲଣ୍ଡା ମୁଣ୍ଡ, ମେଲା ଦେହ—ଧୋବ ଫର ଫର ହୋଇ ନଥି ଝିଅ ପଇତାଟା ଜକଜକ ଦିଶୁଥାଏ । ବୁକୁରେ, କପାଳରେ ସକାଳର ଚନ୍ଦନ ଅନ୍ତୁରଣ କରୁନଥାଏ । ଆଖିକଣରେ କଣେ ଲେଖାଏଁ ଲୁହ ସେମିତ ଡବଡବ ଦିଶୁଥାଏ । ଏତେ ଗହଳ-ଚହଳରେ ସୁଦ୍ଧା ଦାସେ ସେମିତ ଗୋଡ ଲମ୍ବେଇ ଶୋଇରହିଥାନ୍ତି । ପଣ୍ଡିତେ ତାଙ୍କୁ ଥରେ ନଟରେଖି ଚାହିଁଲେ । ତାଙ୍କୁ ଦେଖିଲେ ଜଣାପଡ଼ୁଛି, ହର୍ଷ ବିସ୍ମୟ ମିଶାମିଶି ହୋଇ ତାଙ୍କ ଭିତର ଜୁଡ଼ୁବୁଡ଼ୁ । ସତେ ଯେପରି କହୁଛନ୍ତି, ବଡ଼ ସମ୍ବାଦ ପାଇଆସିଛି ମନଟା ସ୍ୱାଇଁର । ନ ହେଲେ ଦ'ଣ ଏମିତ ହୁ-ହୁ ଧୋଇ ହୋଇଯାନ୍ତା ? ସେ ଖୁସିଟାଏ ହୋଇ ଦାସଙ୍କୁ ଚାହିଁରହିଥାନ୍ତି । ଭାବୁଥାନ୍ତି, ଦାସଙ୍କ ଅନୁକୂଳ ହୋଇଗଲା ।

ନାନା କଥାପ୍ରସଙ୍ଗରେ ଦୁଇ ଚାରି ଥର 'ମଥୁରା' ଶବ୍ଦ ଦାସଙ୍କର କାନରେ ବୋଧ-ହୁଏ ଯାଇ ପଡ଼ିଲା । କେମିତଆ ଭିତରକୁ ଭେଦିଗଲା ନା କ'ଣ, ଦାସେ ଚମକିଲା ପରି ହାତଗୋଡ଼ ହଲେଇ ମଟମଟ କରି ଆଖି ଫିଟେଇଦେଲେ । ଧଡ଼ପଡ଼ ଉଠି ଠିଆହୋଇ ସବୁ ଆଡ଼କୁ କେବଳ ବଲବଲ ଚାହିଁଲେ । ସେଜୁଆ ସେଜୁଆ ଆଖିରେ ସ୍ୱପ୍ନ ଯେମିତ ଲାଗିରହିଛି । ତାଙ୍କର ବିହ୍ୱଳ ଅବସ୍ଥା ଦେଖି ପଣ୍ଡିତ ମହାଶୟେ ତାଙ୍କ ହାତ ଧରି ପୁଣି ବସେଇ-ଦେଲେ ।

"ମୁହଁଟା ଧୋଇପକାଅ, ଅବେଳରେ ଶୋଇଗଲ ଯେ !"

ପଣ୍ଡିତଙ୍କ ପାଟି ବାରି ଆଖି ମଳଚି ଦାସେ ସେଇଆଡ଼େ ଚାହିଁଲେ । କିଛି ସମୟ-ପରେ ତାଙ୍କୁ ଦିଶିଲା । ସେ ପାଟି ଫିଟେଇ କହିଲେ—"ଆଜ୍ଞା, ଆପଣଙ୍କ ଚେମ୍ବୁରେ ପାଣି ଟିକିଏ ହବ କି ? ଟିକିଏ ପିଇଥାନ୍ତି ।" ପଣ୍ଡିତେ ଚେମ୍ବୁ କାଢ଼ି ତାଙ୍କୁ ବଢ଼େଇଦେଲେ ।

ବାହାରକୁ ମୁହଁ ବଢ଼େଇ ଦାସେ ଦୁଇ ଚଳା ପାଣି ମୁଣ୍ଡକୁ ମାରିଲେ । ମୁହଁଟା ଧୋଇ ଏକାନିଶ୍ୱାସକେ ବାକିତକ ପାଣି ପିଇ କାନ୍ଥକୁ ଆଉଜି ବସିଗଲେ ।

ପଣ୍ଡିତେ ଶୁଣେଇଲା ପରି କହିଲେ, "ଆଉ ଷ୍ଟେସନଟା ମଥୁରା ।"

ଦାସେ ପଣ୍ଡିତଙ୍କୁ ଚାହିଁଲେ କେବଳ । ଟିକିଏ ଚଞ୍ଚଳଆ ହୋଇ ବଟୁଆରୁ ଆଉ ଖଣ୍ଡେ ପାନ ବାହାର କରି ପାଟିରେ ଦେଲେ । ଟିକିଏ ହସି କହିଲେ, "ଏ ସନ୍ଧ୍ୟାବେଳଟାରେ ଶୋଇଗଲି ମ ! ଆପଣ ତ ଶୌଚ ହେବା ପାଇଁ ଭିତରକୁ ଗଲେ । ମୁଁ ଏକୁଟିଆ ବସି ବସି ମଥୁରାମଙ୍ଗଳ ବୋଲୁଥାଏ । କେତେବେଳେ ଶୋଇପଡ଼ିଛି ଜାଣିନାହିଁ । ବଡ଼ ଅଦ୍ଭୁତ ସ୍ୱପ୍ନଟାଏ ମଧ୍ୟ ଦେଖିଲି ।"

"ତୁମର କୌଣସି ସ୍ୱପ୍ନ ତ ଆଉ ଅଦ୍ଭୁତ ନ ହୋଇ ନାହିଁ ।" ବଡ଼ ଅମାୟିକ ଭାବରେ ହସି ପଣ୍ଡିତେ ତାଙ୍କର ଆଗ୍ରହ ପ୍ରକାଶ କଲେ ।

"ନାହିଁ ମହାଶୟେ, ଏଇଟା ସତେ ବଡ଼ ଅଦ୍ଭୁତ ! ମୋତେ ଦୁର୍ଲଭ ଦେବଦର୍ଶନ ମିଳିଲା । ମତେ ସ୍ୱପ୍ନରେ ଲାଗିଲା ମୁଁ ଗରୁଡ଼ ପଛରେ ଠିଆହୋଇ ଜଗନ୍ନାଥଙ୍କୁ ଦର୍ଶନ କରୁଛି । ମୂଳରୁ ଶେଷଯାଏ ସେଇ ନିର୍ମଳ ରୂପ ମୁଁ ଦେଖିଛି । ଗମ୍ଭୀର ଭିତରୁ ସେ ସତେ

ଯେମିତ ମତେ କଣେଇ କଣ ଗ୍ରହିଁଛନ୍ତି । ସେଇଠି ଆପଣ ଥିଲା ପରି ଲାଗୁଛନ୍ତି । ମୁଁ ଆପଣଙ୍କୁ ନେଇ ବାଲିଶିପାହାଚ ସାଗ୍ ଗଡ଼ୁଛୁ । ଆଉ ଆମେ ଦୁହେଁ ଖାଲି କହିକହି କାନ୍ଦୁଛେ । ଜଣେ ଦକ୍ଷିଣୀ ମାଇକିନିଆ ଭେଲ ହୋଇ ନାଚୁଛି, ଆଉ ପାଟିକରି ଡାକୁଛି—'ଅନିମେଷ, ଅନିମେଷ' । ଓଃ, ବଡ଼ ଜୀଅନ୍ତା ସ୍ୱପ୍ନଟା ମହାଶୟେ ! ମୋ ଶୋଷ ଆଉରି ମେଣ୍ଟି ନାହିଁ ।"

ସ୍ୱପ୍ନରେ ଦେବଦର୍ଶନ ବଡ଼ ଶୁଭଲକ୍ଷଣ । ଆଉ ସେ ଯେଉଁ ଅଭୂତ ନାଁ ଧରି ଡାକୁଥିଲା, ସେଇଟା ଜଗନ୍ନାଥଙ୍କର ବା ଚୈତନ୍ୟ ପୁରୁଷଙ୍କର ଗୁଣବାଚକ ଅନିମେଷଃ । ବାଃ, ଗୁଣ ମନ୍ତ୍ର ଦାନ ହେଲା ପରି ଲାଗୁଛି । ଆଚ୍ଛା, ଦାସେ, ତୁମର ଗୁରୁଦୀକ୍ଷା ହେଲାଣି ?"

ଦାସେ ଏ ପ୍ରଶ୍ନ ପାଇଁ ପ୍ରସ୍ତୁତ ନ ଥିବାରୁ ଚମକିପଡ଼ିଲେ । ଟିକିଏ ଅପ୍ରତିଭ ହେଲେ ମଧ୍ୟ କେମିତିଆ ଲାଜେଇଲା ପରି ପଣ୍ଡିତଙ୍କ ମୁହଁକୁ ନ ଗ୍ରହିଁ କହିଲେ, "ସେ ସୌଭାଗ୍ୟ କ'ଣ ସହଜରେ ମିଳୁଛି ?"

ପଣ୍ଡିତେ ମଧ୍ୟ ସେଇ କଥାଟାକୁ ଦୋହରେଇ କହିଲେ—"କଥା ପ୍ରକୃତ । ଭାଗ୍ୟ ନ ଥିଲେ ଉପଯୁକ୍ତ ଗୁରୁ ମିଳିବା କଠିନ । ଯଦି ଏ ପୁଣ୍ୟପୀଠରେ ଆମର ସୁକୃତ ଥିବ ଜଣଙ୍କ ପାଖରେ ଆମେ ଦୁହେଁ ଦୀକ୍ଷା ନେଇଯାଆନ୍ତେ ।"

ଆଶ୍ଚର୍ଯ୍ୟ ହୋଇ ଦାସେ ତାଙ୍କୁ କେବଳ ଗ୍ରହିଁରହିଲେ । ମନ ଭିତରେ ଭାବୁଥାନ୍ତି, ତାହେଲେ ପଣ୍ଡିତ ଆପଣେ ଆଉରି ଗୁରୁ କରିନାହାନ୍ତି ! ମୁଁ ଭାବିଥିଲି ସିନା ତାଙ୍କୁ ଗୁରୁ କରିବି ବୋଲି—ଏବେ ଯୋଗ ଆସି ହେଲା ଯେ ଆମେ ଦୁହେଁ ପୁଣି ଜଣେ ଗୁରୁଙ୍କୁ ଆଶ୍ରା କରିବୁ । ମାତ୍ର କିଛି ପାଟି ଫିଟେଇ କହିଲେ ନାହିଁ ।

ମଥୁରା ଷ୍ଟେସନ ।

ରେଲଡ଼ବାରେ ବସିଥିବା ଲୋକସବୁ ଉଠିଲେ । ଯେ ଯାହା ଜିନିଷପତ୍ର ଧରି ଓହ୍ଲେଇବାକୁ ସଜହୋଇଗଲେ । ଦାସେ ମଧ୍ୟ ତାଙ୍କ ମୁଣିଟି ଧରି ଠିଆହୋଇଥାନ୍ତି, ଆଉ କୌତୂହଳରେ ବାହାରକୁ ଅନେଇଥାନ୍ତି । କେତେ ଆଲୁଅ, ମେଞ୍ଚା ମେଞ୍ଚା, ମାଲ ମାଲ, ଧାଡ଼ି ଧାଡ଼ି ।

ଗାଡ଼ି ରହିବାରୁ ସମସ୍ତେ ଓହ୍ଲେଇଗଲେ ।

ପଣ୍ଡିତଙ୍କୁ ମଥୁରାର ଅନ୍ଧିକନ୍ଧି ଜଣା । ସେ ଖୁବ୍ ପରିଚିତ ଭଙ୍ଗୀରେ ଗ୍ରାରିଆଡ଼କୁ ଗ୍ରହୁଁଥାନ୍ତି । ଦାସେ କିନ୍ତୁ ବାହାରକୁ ଆସିଲା ମାତ୍ରେ ସେ ଘଉ ଘଉ ବିଜୁଳିବତି ଆଲୁଅରେ କୁବୁଜା, ଅକ୍ରୂର, ଉଦ୍ଧବଙ୍କୁ ମନେ ମନେ ଖୋଜୁଥାନ୍ତି । ଦେଖୁଥାନ୍ତି କିନ୍ତୁ ଅଗଣିତ ମଟର, ଘୋଡ଼ାଗାଡ଼ି, ନାହିଁ ନ ଥିବା ଲୋକଗହଳି । ତଥାପି ତାଙ୍କୁ ସବୁ ସୁନ୍ଦର ଦିଶୁଥାଏ, ଭଲଲାଗୁଥାଏ । ଏ କି ପବିତ୍ର ମାଟି, କି ପୁଣ୍ୟ କ୍ଷେତ୍ର ! ତାକୁ ଧୂଳି ଆଣି ମୁଣ୍ଡରେ ମାରିବାକୁ ଦାସଙ୍କର ଭାରି ମନହେଉଥାଏ ।

ଏତିକିବେଳେ ଜିନିଷ ଉଠେଇ ଘୋଡ଼ାଗାଡ଼ିଟାରେ ଦୁହେଁ ଉଠି ବସିଲେ । ପଣ୍ଡିତେ ତାକୁ କ'ଣ କହିଲେ କେଜାଣି ସେ ପଛମୁହାଁ ସବୁ ବୁଝିଦେଇ ଘୋଡ଼ାକୁ କଷି

କରି ଗୁଡ଼େ ମାରିଦେଲା । ଘୋଡ଼ା ଆଗ ଟାପୁ ଟେକି ଡିଆଁଟାଏ ମାରିଦେଲା ବେଳକୁ ଦୁହେଁଯାକ ପରସ୍ପରକୁ ଧରାଧରି ହୋଇ ସେଇ ଗାଡ଼ି ଭିତରେ ଗଡ଼ିପଡ଼ିଲେ । ଦୁହିଁଙ୍କୁ ହସମାଡ଼ିଲା, ମାତ୍ର ଅଳ୍ପକେ ପୁଣି ସମ୍ଭାଳି ବସିଲେ ।

ଏକାଠି ଗୁରୁଙ୍କ କରିବା କଥା ପଢ଼ିଲବେଳୁ ଦୁହିଁଙ୍କ ଅଜାଣତରେ ପରସ୍ପର ପ୍ରତି ତାଙ୍କର ଆଦର୍ ବଢ଼ିଯାଇଛି । ଦାସେ ପିଳଙ୍କ ପରି ପଗ୍ଭରିଲେ, "ଆଚ୍ଛା, ଅକ୍ରୂର ରଥ ଏମିତିଆ ଘୋଡ଼ାଟଣା ରଥଟି ! ଏଇ ମଥୁରାକୁ ସେ ତ ରଥ ବାହି ଯାଇଥିବ ! ଏ ଲୋକଟାକୁ ପଛରୁ ଦେଖିଲେଣି, ଏଇ ଯେ ଗାଡ଼ି ଚଳଉଛି, କେମିତି ପାଟ ପଗଡ଼ି ଭିଡ଼ିଛି ଦେଖୁଛନ୍ତି ତ ! ଏଇଟା କ'ଣ ସତେ ଅକ୍ରୂର କି ଆଉ ?"

ପଣ୍ଡିତେ ମଧ୍ୟ ଦାସଙ୍କ ଭାବରେ ମଜ୍ଜିରେ ମଜ୍ଜିରେ ମଜ୍ଜିଯାଉଥାନ୍ତି । ସେ କିଛି କହିଲେ ନାହିଁ, ଖାଲି ହସିଲେ । ଦାସେ ଟିକିଏ ରହି ହଠାତ୍ ଗଳା ଛାଡ଼ି ଗାଇଲେ—

"କଂସ-ନଗର କରେ ବସ୍ତିର ଧନ୍ୟ ହୋଇଲି ଆଜ,
ଧନ୍ୟ ମୋ ତାତ ଧନ୍ୟ ମୋ ମାତ ଦେଖିବି ଦେବରାଜ ।"

ଗାଡ଼ିବାଲା ପଛକୁ ଗ୍ଭହିଁ କ'ଣ ବୁଝିଲା କେଜାଣି ଅଳ୍ପ ହସିଲା । ମୁହଁ ଫେରାଇ ଘୋଡ଼ାକୁ ଆଉ ଗୁଡ଼େ କଷି କରି ମାରିଦେଲା ।

ଏମିତି ଗାଡ଼ି ଗ୍ଭଲିଥାଏ ହାଟ ବଜାର ଗହଳି-ଚହଳି ଭିତର ଦେଇ । ଗାଡ଼ି ଗ୍ଭଲିଥାଏ—ଦାସେ ମଧ୍ୟ ଆଖିବୁଜି ମଥୁରାମଙ୍ଗଳ ଛାନ୍ଦ ପ୍ରାଣଭରି ଗାଉଥାନ୍ତି ।

ଶେଷରେ ଆସି ଅଳ୍ପ ନିରୁଛିଆ ଅଞ୍ଚଳରେ ଗୋଟିଏ ଧର୍ମଶାଳା ଆଗରେ ଗାଡ଼ି ଠିଆହେଲା । ଦାସେ ଗୀତ ଆଉ ବଡ଼ପାଟିରେ ନ ବୋଲି କେବଳ ଗୁଣୁଗୁଣୁ ହେଉଥାନ୍ତି । ଟୋକା ବୟସରେ ଯେମିତି ଚଞ୍ଚଳିଆ ହୋଇ ଗ୍ଭଲି ଗ୍ଭଲି କାମ କରୁଥିବ, ସେମିତି ଦାସେ ଏକାଡିଆଁକେ ଗାଡ଼ିରୁ ଓହ୍ଲାଇ ଝୋଲାଖଣ୍ଡି ଧରି ଖାଲି ଅଥୟ ହେଉଥାନ୍ତି । ତାଙ୍କ ଗତିବିଧି ଦୂରରୁ ଲକ୍ଷ୍ୟ କରିଥିଲେ ନ ଜାଣିବା ଲୋକ ତାଙ୍କ ବୟସ କେତେଇଶି କି ଚବିଶ ଠଉରେଇଥାନ୍ତା । ତାଙ୍କ ମନ ଏକ ଅପୂର୍ବ ଆନନ୍ଦରେ ଆଉ ଜମା ଥୟ ଧରୁନାହିଁ । ମନେ ହେଉଛି— ନୂଆ ହୋଇ ବାହାହେବାର ମାସକ ପରେ ଆଠମଙ୍ଗଳା ବାସୀଠାରୁ ଆସିବ ଆସିବ ହୋଇ ଶଶୁରଘରକୁ ଆସିଛନ୍ତି କି ? ଆଉ ଠିକ୍ ସେତିକି ପ୍ରଥମ ପ୍ରଣୟର ଆନନ୍ଦ, ସେତିକି ଆତ୍ମୀୟତା, ସେତିକି ଲାଜ ଦାସଙ୍କ ପ୍ରତି ହାବଭାବରେ ସୂଚିତ ହେଉଥାଏ ।

ଦୋମହଲା ଉପରେ ଛୋଟ ଗୋଟିଏ କୋଠରି । ତା ଝରକା ପିଟେଇଦେବାରୁ ଘୁ-ଘୁ କାକର ପବନ ପଶିଆସିଲା । ଦାସେ ଯେଉଁ ଜନ୍ଲାକବାଟିକୁ ଧରି ବାହାରକୁ ଗ୍ଭହିଁଲେ । ଅନ୍ଧାରରେ କିଛି ଦିଶୁ ନ ଥାଏ । ଶେଷକୁ ଦିଶିଲା କିଛି ଦୂରରେ ଗୋଟେ ନଈ ।

ଦାସେ ଲେଉଟିପଡ଼ି ପଗ୍ଭରିଲେ, "ଏଇଟା କ'ଣ ଯମୁନା କି ମହାଶୟେ ?"

"ହଁ, ଏଇ ହଉଛନ୍ତି ଯମଙ୍କ ସୁନ୍ଦରୀ ଭଉଣୀ ।"

ଦାସଙ୍କ ମନକୁ ପାଇଗଲା । ସେ ଖେଁ-ଖେଁ ହୋଇ ଗୁଡ଼ାଏ ହସିଲେ । ଏ ହସର ମୌଳିକ ଉନ୍ମାଦନା କେଉଁଠି ଅବଶ୍ୟ ଜାଣିବା କଠିନ । ପଣ୍ଡିତ ମହାଶୟେ ମଧ୍ୟ ଅନେକ

କାରଣରୁ ଭାରି ଖୁସି ଅଛନ୍ତି । ଦାସେ ହସିସାରି କହିଲେ, "ଏଇ କାଳୀ କୋଚଟା ଏମିତି ସିନା ଦଉଡ଼ୁଛି, ଯାହାର ଗୁଣ ହେଲେ ଜଣା କି ? ଆଉଟାକୁ ଯାହା ହଟହଟା କରୁଛି ଏଇଟା, ଉଚିତ ହେଉଛି ଯାହାକୁ ଏ ଶାସ୍ତି । ମହା ଅଲଛ୍ଛୀ ଏ ଯମୁନା ।"

ମହାଶୟେ ଦାସଙ୍କ କଥାରେ ପ୍ରାୟ ରାଜି ହେଲା ପରି କହିଲେ, "ତା ଠିକ୍ ଯେ; ମାତ୍ର ସେଗୁଡ଼ାକର ଗୋଟେ ଲେଖା ବୃଥା ରହିଛି । ସେ ଯାହାହେଉ, ଏ ଯମୁନାରେ କିନ୍ତୁ ସମସ୍ତ ଆବରଣ ତ୍ୟାଗ କରି ନିଜକୁ ଧୋଇଦେବାକୁ ହୁଏ । ଆତ୍ମାକୁ ଅବୋରି ଯେଉଁ ସବୁ ଖୋଳ ରହିଛି, ସଂକୋଚ ଛାଡ଼ି ତାକୁ ତ୍ୟାଗ କରିବାକୁ ହେବ । ତାପରେ ସେହିପରି ଅନାବୃତ ଯୌବନ ଥରେ ଅର୍ପଣ କରି ଦେଇପାରିଲେ ଆଉ କେଉଁଣିକି କୌଣସି ଖୋଳ ଦେହରେ ଲଖିବ ନାହିଁ ।"

ମହାଶୟେ ଅବଶ୍ୟ ତାଙ୍କର ସ୍ୱାଭାବିକ ଗମ୍ଭୀରତାରେ ଏସବୁ କଥା କହୁ ନ ଥାନ୍ତି, ହେଲେ ବଡ଼ ତତ୍ତ୍ୱ କଥା ଏଗୁଡ଼ାକ ନା ! ଦାସେ କିନ୍ତୁ ସେମିତି ଟୋକାଳିଆ ମନଖୋଲା ହସ ହସୁଥାନ୍ତି । ଯେମିତି ଜଣାଯାଉଥାଏ—ଆରେ ବାବା ! ଏସବୁ ଠିକ୍ । ହେଲେ କ'ଣ ଏତିକରେ ସରୁଛି ? କିନ୍ତୁ ଦାସେ ଏ କଥା ନିଜେ ଜାଣି ଇଙ୍ଗିତ ଦେଉନାହାନ୍ତି କି ତାଙ୍କ ହସ ଭିତରେ ପଣ୍ଡିତ ମହାଶୟ ମଧ୍ୟ ଏ କଥା ଜମା ସନ୍ଦେହ କରିପାରୁନାହାନ୍ତି । କେତେ-ବେଳକେ ଦାସେ ଅଳ୍ପ ସଂଯତ ହୋଇ ସେମିତି ହସହସ ହୋଇ କହିଲେ, "ଆଚ୍ଛା, ଏ ଗୋପୀଯାକ ଓଳିଆ ନୁହନ୍ତି ! ଜାଣିଛନ୍ତି ନ ଗୋଟେ ହଟିଆ ଗାଁରେ ଅଛି, ତାଙ୍କୁ ଛକିବସିଛି । ଯୋବଡ଼ା ପଞ୍ଝା ଦେହରୁ ମୁଣ୍ଡରୁ ଲୁଗା କାଢ଼ି ନାହିଁକି ପାଣିରେ ପଶୁଥିଲେ ? ତାକୁ ସୁବିଧା ଦେଲେ ସେ ଛାଡ଼ିବ, ଛାଡ଼ିଛି ଭଲ କାହାକୁ ? ଠିକ୍ ହୋଇଛି ଅଲାଜୁକୀଗୁଡ଼ାଙ୍କୁ । ତାଙ୍କୁ କ'ଣ ଲାଜ ଅଛି କି ? ତାଙ୍କ ଯାପ ଆଉରି ସୁଖ ନା ! ମନେ ମନେ କ'ଣ ସେଇଆ ସେ ଖୁନ୍ଦୁନି ନଥିଲେ ତ ? ଉପରକୁ ଲୋକଦେଖାଣିଆ ସିନା ଖାଲି ଲାଜ କାମୁଡ଼ି ପକାଉଥିଲି !"

ଏତିକି କହିଦେଇ ଦାସେ ପୁଣି ବୁଢ଼ୀ ହସିଲେ । ଗୋପୀଗୁଡ଼ିକ ଯେମିତି ତାଙ୍କର ଅତି ଆପଣାର ଲୋକ, ତାଙ୍କ ସାଙ୍ଗରେ ଅନେକ ଦିନରୁ ଦାସଙ୍କର ଠାପରା ଚାଲେ । ପଣ୍ଡିତେ ଏତେବେଳେ ଯାଇ ଦାସଙ୍କଠାରେ ଅସ୍ୱାଭାବିକତା ଭଲକରି ଲକ୍ଷ୍ୟ କଲେ । ଦାସେ ଯେମିତି ଦାସେ ନୁହନ୍ତି, ତାଙ୍କ ଭିତରେ ଆଉ କିଏ ପ୍ରବେଶ କରିଥିଲେ । ଯେମିତି ଏକ ଆବିଷ୍ଟ ଅଚ୍ଛନ୍ନ କାଳଣି ଲାଗିଲା ପରି ଭାବ ଜଣାଯାଏ, ସେମିତି ଦାସଙ୍କ ହାବଭାବ ।

ପଣ୍ଡିତେ ଭାବିଲେ, ଭୁଲ ଛାଡ଼ି ଏଥର ଦାସେ ବୋଧହୁଏ ବାହାରିଲେ । ତାଙ୍କୁ ବଂଶୀ ବାଉଳା ଧରିଲାଣି । ଯାହାକୁ ଆଉ ସେ କ'ଣ ଛାଡ଼ିବ ? ଡୋରି ଲାଗିଗଲେ ତାକୁ କାଟି-ଦେବ ଏମିତି ଆଉ ଶକ୍ତି କାହାର ? ସେ ଶୂନ୍ୟଦୃଷ୍ଟିରେ କିଛି ସମୟ ଦାସଙ୍କୁ ଚାହିଁରହିଲେ । ତା ପରେ ମୁଣି ଖୋଲି ଅନ୍ୟାନ୍ୟ କାମସବୁ କରିବସିଲେ । ଦାସେ ମଧ୍ୟ ତାଙ୍କ ଦେଖାଦେଖି ଆରମ୍ଭ କରିଦେଲେ । କମ୍ବଳ ବାହାର ହବ, ଗାମୁଛା ସାଙ୍ଗକୁ ଲୋଟା ବାହାରିବ, ଏପରି ନାନା କଥା । ବୁଝିବସିଲେ କିଛି ନାହିଁ, ହେଲେ ନିର୍ଝଞ୍ଜାଳୀ ଲୋକଙ୍କୁ ସେଇତକ ଘୋର ଜଞ୍ଜାଳ ।

ଏତକବେଳେ ଜଣେ ସେ ଘରକୁ ପଶିଆସିଲ । "କହଲେ ପଣ୍ଡିତ ଜୀ ! କହୁଚ ଧନୋ କେ ବାଦ୍ ଆପ୍‌ସେ ଭେଁଟ୍ ହୁଇ ।" ଦାସେ ତାଟକା ହୋଇ ତାକୁ ଗ୍ରହିଁଥାନ୍ତି । ଆଉ ଟିକଏ ଗ୍ଭବ ବଳପଡ଼ିଥିଲେ ହସିପକେଇଥାନ୍ତେ । ଗୋଟିଏ ହାତୀ ମଣିଷରୂପ ନେଲା କି ଆଉ ! ଏମିତ ଆକାରର ଲୋକ ଦାସେ ଜୀବନରେ ଏଇ ଥର ଦେଖିଲେ । ପଣ୍ଡିତେ ତାଙ୍କୁ ଦାସଙ୍କୁ ଦେଖେଇ କ'ଣ କହିବାରୁ ସେ ଖମ୍ବ ପରି ଦୁଇଟା ହାତ ଟେକି ନମସ୍କାର କଲା । ଦାସେ ଗ୍ରହଁଆଁରେ ତାକୁ କ'ଣ ଆଶୀର୍ବାଦଟାଏ ମଧ୍ୟ କରିପକାଇଲେ । ସେ ତାପରେ ପଣ୍ଡିତଙ୍କ ସାଙ୍ଗରେ ବସି ଗମ୍ଭୀର ଆତ୍ମୀୟତାରେ କଥାବାର୍ତ୍ତା କରୁଥାଏ । ଦାସେ କେବଳ ତାକୁ ଆବାକାବା ହୋଇ ଗ୍ରହିଁରହିଥାନ୍ତି । ସେ ହସିଲାବେଳେ ପଟା ଖଟ ଖଣ୍ଡିକ କେମିତ କେଁ-କେଁ ରଡ଼ି ଗ୍ଭଡ଼ୁଛି ଏବଂ ଘରଟା ଗ୍ଭଳଠୁ ତଳ ପର୍ଯ୍ୟନ୍ତ କେମିତ ଦୁଲୁକୁଛି ଦେଖୁଥାନ୍ତି ।

ମୋ ବାପା ଲୋ ! ଏଇଟା ଯ୍ବାପ ସେଇ କଂସ-କେଶୀର ବଂଶଧର ହୋଇଥିବ ! ତା' ଆଗରେ ପଣ୍ଡିତ ମହାଶୟେ କୁନ ପିଲାଟିଏ ପରି ବସିଥାନ୍ତି । କଥାବାର୍ତ୍ତା ଗ୍ଭଲିଥାଏ । ସରୁ ସରୁ ବାଳ ଅନେକ । ଶେଷରେ ସେ ବିପୁଳବପୁ ବଡ଼ ସନ୍ତର୍ପଣରେ ଦୁଆରବାଟେ ଗଳି ଗ୍ଭଲିଗଲେ ।

ଦାସଙ୍କ ଆଖିରେ ପ୍ରଶ୍ନ ଦେଖି ପଣ୍ଡିତ ମହାଶୟେ ସ୍ୱତଃ ଆରମ୍ଭ କଲେ, "ଏ ହେଉଛନ୍ତି ମଥୁରା ପ୍ରସାଦ ଚୌବେ—ମୋର ଜଣେ ଅତି ପୁରାତନ ବନ୍ଧୁ ।" ଦେଖିଲେ ସେତକ ଯଥେଷ୍ଟ ହେଲା ନାହିଁ । ଦାସଙ୍କର କୌତୂହଳ ତାଙ୍କ ନାଁ ଉପରେ ଯେତେ ନୁହେଁ, ତାଙ୍କର ଅତମାନବକ ଶରୀର ଉପରେ ସେତେ । କହଲେ, "ଏଇ ଚୌବେଗୁଡ଼ିକ ହେଲେ ଚତୁର୍ବେଦୀ—ଜାତରେ ବ୍ରାହ୍ମଣ । କନ୍ତୁ ଗ୍ରରୋଟିଯାକ ବେଦକୁ ପରିତ୍ୟାଗ କରି ଏ କେବଳ ଆୟୁର୍ବେଦୀୟ ଶରୀରଚର୍ଯ୍ୟାରେ ମନଦେଇଛନ୍ତି । ତାଙ୍କର ରାତରେ ନିଦ ଭାଙ୍ଗେ ପ୍ରାୟ ସୂର୍ଯ୍ୟୋଦୟର ଦୁଇ ଘଣ୍ଟା ପୂର୍ବରୁ । ସେ ଖଣ୍ଡେ ଲେଖାଏଁ କାଚ୍ଛା ପିନ୍ଧି ପହଞ୍ଚିଯାଆନ୍ତି ଆଖଡ଼ା ଘରେ । ସେଇଠି ଦାଣ୍ଡି ପେଲୁ ପେଲୁ ବେଳ ଘଡ଼ିଏ । ସେ କ'ଣ କେବଳ ଦାଣ୍ଡି ? ହାତ ପାଖକୁ ଏମିତ ଗଦେ ଲେଖାଏଁ ବଡୁରା ପସ୍ତାବା ବୁଟ, କସ୍‌ମିସ୍, କଞ୍ଚା ଗାଜର ଚେକା ଓ କିଛି ଭଲ ଗୁଣ୍ଡ ଗୁଡ଼ ମିଶା ହୋଇ ଥୁଆହୋଇଥିବ । ଶହେ ଦାଣ୍ଡି ମାରସାରି ସେଥିରୁ ମୁଠେ, ଆଉ ଶହେ ମାରି ଆଉ ମୁଠେ, ଏମିତ ଗ୍ଭଲିଥିବ ଅସଂଖ୍ୟ ଦାଣ୍ଡି ଆଉ ଅମାପ ଖିଆ । ଓଃ···ତାକୁ ଆଖିରେ ନ ଦେଖିଲେ ଦାସେ, ବିଶ୍ୱାସ କରିପାରିବ ନାହିଁ । ଶୀତଦନରେ ମୁଦ୍ଧା ଝାଳ ଫିଟିପଡ଼ୁଥିବ । ଏମିତ ଗଣ୍ଡେ ଲେଖାଏଁ ଲୋକଙ୍କୁ ମେଲା ଦେହରେ ଅନବରତ ସ-ସ ହେଉଥିବା ଓ ଅନବରତ ତଳକୁ ଉପରକୁ ହେଉଥିବା ଗୋଟାଏ ଦୃଶ୍ୟ । ଏସବୁ ସାରି ପାଏ ଲେଖାଏଁ ସୋରିଷ ତେଲ ମର୍ଦ୍ଦନ ହେବ ସ୍ବାଙ୍କ ଦେହରେ । ସେଇଠୁ ଯାଇ ମାଜଣା ସାରି ଫେରୁ ଫେରୁ ଲହୁଣିରେ ଘୋଟି ରଖାହୋଇଥିବ ପେଣ୍ଡୁଲାଏ ପେସ୍ତାବାଦାମ୍, ଆଉ ତା ସାଙ୍ଗକୁ ଆଉଟା କ୍ଷୀର ଦୁଇ ତନ ସେର । ଫଳ, ମୂଳ, ପିଠା ଆଦ ଜଳଖିଆ ସକ ମଧ୍ୟ ଥୁଆରହିଥିବ । ଏତକ ବାଲୋଟେଗ ଆକାରରେ ଟୁଙ୍କିଦେଇ ସେ ବସିଯିବେ । ଏଇ ଅନୁପାତରେ ବାକ ଦନଯାକ

ଭିତରେ ଝିଅପିଅ । ଖାଇବାଟା ହେଲା ଏ ମଥୁରା ଚୌବେଙ୍କର ସର୍ବଶ୍ରେଷ୍ଠ ଆନନ୍ଦ, ଆଉ ସ୍ୱାସ୍ଥ୍ୟଟି ହେଲା ସର୍ବସ୍ୱ ।"

ବୁଢ଼ୋଁଯାକ ମିଶି ହସିଲେ । ପଣ୍ଡିତେ ଗାମୁଛା ଖଣ୍ଡକ ଧରି ହସି ହସି ପିଣ୍ଡାକୁ ଗଲେ ଶୌଚ ହେବାକୁ । ଦାସଙ୍କ ଆଖିରୁ ମଧ୍ୟ ବିସ୍ମୟ ଓ କୌତୂହଳ କ୍ରମଶଃ ଧୋଇ ହୋଇଗଲା । ଆସ୍ତେ ଆସ୍ତେ ନିଃସ୍ପୃହ୍ୟ ମଧ୍ୟ ମରିଗଲା । ଆଉ ସେ ବିଷୟରେ ଚିନ୍ତା ମଧ୍ୟ କଲେ ନାହିଁ । ଗାମୁଛାଖଣ୍ଡ ଧରି ଠିଆହୋଇଥାନ୍ତି ପଣ୍ଡିତ ମହାଶୟେ ଆସିଲେ ସେ ଯିବେ ।

ଗୁଣୁଗୁଣୁ ଗୀତ ଗାଇ ଦାସେ ପିଣ୍ଡାରେ ଟହଲୁଥାନ୍ତି । ହଠାତ୍ ତାଙ୍କର ଗୀତ ରହିଗଲା । ସେ ଦେଖିଲେ ମେଞ୍ଚାଏ ରଙ୍ଗନିଆଁ ପରି କୃତ୍ତିକା ନକ୍ଷତ୍ର ଆକାଶରେ ଜଳୁଛି । ଆଖି ମଟ୍‌ମଟ୍ କରି ତାକୁ ଘଡ଼ିଏ ଚାହିଁଲେ । ମନ ଭିତରେ କେତେ ପୁରୁଣା ସ୍ମୃତି ସବୁ କହୁ ଲେଉଟେଇଲେ । ଅତୀତଟା ପୁଣି ଜୀଇଉଠିଲା । ପ୍ରାୟ ପ୍ରତ୍ୟେକ ସ୍ମୃତିରେ ଟୁକୁମା' ଆଗ ପରି ଦାସଙ୍କ ପାଖେ ପାଖେ ଘସିହୋଇ ବସିବା, ଚାଲିବା ଦାସେ ଅନୁଭବ କଲେ । ବଡ଼ ଅଦ୍ଭୁତ ଭାବରେ ପ୍ରାଣବନ୍ତ ସେ ସ୍ମୃତି । ଦାସେ ଝାଉଁଳି ପଡ଼ିଲେ ଅତୀତର ବାରମ୍ବାର ଗୁରୁ ଆଘାତରେ । ଯେପରି ହତବୁଦ୍ଧି ହୋଇ ନିଷ୍ପନ୍ଦ ଭାବରେ ଠିଆ ହୋଇ ରହିଗଲେ । ମନ ଭିତରର ପୁରୁଣା ଘା'ରୁ ଖୋଳପା ଛାଡ଼ି ପୁଣି ଝିର୍ ଝିର୍ ରକ୍ତ ବୋହିବାକୁ ଆରମ୍ଭ କଲା । ଦାସେ ଧଡ଼ପଡ଼ ଚାଲିପଡ଼ି ଧର୍ମଶାଳାର ଘର ଭିତରର ଆଲୁଅକୁ ଚାହିଁଲେ । ଲଣ୍ଠା ମୁଣ୍ଡକୁ ପାଞ୍ଚଆଙ୍ଗ ଳଆ ଘର୍ମି ଘର୍ମି ପୁଣି ଟିକିଏ ପ୍ରକୃତସ୍ଥ ହେଲେ । ବାମ୍ଫୁଆ ମେଘକୁ ପ୍ରସ୍ତ ପ୍ରସ୍ତ ଆଡ଼େଇ ପୁଣି ଚକେ ନେଲା ଆକାଶ ଦଗିଗଲା । ସେ ସେଇଠି ଆଉ ଠିଆହୋଇ ନ ରହି ‹ଆଡ଼ ସେଆଡ଼ ଟିକିଏ ବୁଲାବୁଲି କଲେ । କିନ୍ତୁ କାହିଁ ? ମନ ଆଏ ଥାଏ, କେଜାଣି କାହିଁକି ପାତଳ ଧରିଯାଉଥାଏ । ଆଚ୍ଛା, ଭଲ କଥା ହେଲା ଯେ, ଘର ଛାଡ଼ିବାର ଏତେ ଦିନ ପରେ ଆସି ବୃନ୍ଦାବନରେ ପ୍ରଥମ ଥର ପାଇଁ ସପାରି ତାଙ୍କର ମନେପଡ଼ୁଛି...ଆଉ ଏମିତ ଗୁରେଇ ଗୁରେଇ ହୋଇ ମନେପଡ଼ୁଛି ! ସେ ତ ଭାବିଥିଲେ ଯେ ସେ ତାକୁ ଅନେକ ଦୂରରେ ଛାଡ଼ିଆସିଛନ୍ତି । ତାକୁ ପୋଡ଼ିଜାଳି ତାର ଖାରି ପର୍ଯ୍ୟନ୍ତ ନଈବାଲିରେ ବିସର୍ଜିଦେଇଛନ୍ତି । କିନ୍ତୁ ସେ ସେଇଠୁ ଉଠିଆସିଛି । ଦାସେ ପୁଣି ଟୁକୁମା'କୁ ଦେଖୁଛନ୍ତି । ତଳ ଘରୁ ଉପରକୁ ପାହାଚ ବାଟେ ସେ ଉଠିଆସୁଛନ୍ତି, ପଛକରି ପିଣ୍ଡାରେ ଠିଆହୋଇ ମୁଣ୍ଡରେ ଗଣ୍ଠି ପକାଉଛନ୍ତି, କଥା-କଥାରେ ମୁହଁ ବୁଲେଇ ହସୁଛନ୍ତି !!

ଦାସେ କେବଳ ଶୂନ୍ୟକୁ ଚାହିଁରହି ଠିଆହୋଇଥାନ୍ତି ।

ପଣ୍ଡିତେ ଏତକବେଳେ ଗାଧୁଆଘରୁ ବାହାରିଆସି ଦେଖିଲେ, ଦାସେ ଥକା ହୋଇ ଠିଆରହିଛନ୍ତି । ତାଙ୍କ ଦେଣା ଧରି ହଲେଇଦେଲେ । ଦାସଙ୍କ ସ୍ୱପ୍ନ ଭାଙ୍ଗିଗଲା । ସେ ପଣ୍ଡିତଙ୍କୁ ଦେଖି କେମିତିଆ ଅପ୍ରତିଭ ବୋଧକଲେ । ଟିକିଏ ହସିଦେଇ ଗାଧୁଆଘର ଆଡ଼କୁ ଆଗେଇଲେ । ପଣ୍ଡିତେ ତାଙ୍କ ଆଖି ଭିତରକୁ ଚାହିଁ କହିଲେ, "ଚଞ୍ଚଳ ବାହାରି ଆସିବ ।"

ସତକୁସତ ଦାସେ ଅଳ୍ପ ସମୟ ଭିତରେ ପିଚୁଳା ପିଚୁଳ ହୋଇ ବାହାରିଆସିଲେ । ଓଦାଲୁଗା ଟାକୁ ଝରକା ଉପରେ ରଖି ରଖି ବଡ଼ ଅଟ୍ଟେ ସ୍ୱଗତରେ କହିଲା ପରି ପଣ୍ଡିତଙ୍କୁ ପଚାରିଲେ, "ଆଚ୍ଛା, ଟଙ୍କୁମା କାହିଁକି ମୋ ମନ ଭିତରକୁ ଆସିଲା ? ଏଇ ଘଡ଼ିଏ ହେଲା ଖାଲି ତାହାରି କଥା ଘୁରାଇ ଘୁରାଇ ମନେପଡ଼ୁଛି । ମନ ବଡ଼ ଅଥୟ ଲାଗୁଛି ।" ବୁଲପଣ୍ଡି ପଣ୍ଡିତଙ୍କ ପାଖକୁ ଆସି କହିଲେ, "ଅନେକ ଦିନ ତଳେ, ସେତେବେଳକୁ ଗପ୍ ଖୁବ୍ ଗ୍ଲେଟଟିଏ ହୋଇଥାଏ, ଦିନେ ଯେ କହୁଥିଲା, ହଇହେ, ଏ ମଥୁରା ବୃନ୍ଦାବନ ସବୁ କେମିତି, ଆମର ଥରେ ଯାଆନ୍ତେ ନାହିଁ ? ସାଆନ୍ତଘର ଘର ନୂଆ ସମୁଦୁଣୀ ଯାଇ ବୁଲିଆସିଲେଣି । ମୁଁ ସେତେବେଳେ କଉରୁକ କରି ହସିଦେଇଥିଲି । ଖୁବ୍ ସମ୍ଭବ ତା ଆମ୍ଭା ଆହୁରି ଏଇଟା ଭୁଲି ନ ଥିଲା । ମୁଁ ଏଠିକି ଆସିବାରୁ ସେ ମଧ୍ୟ ଚାଲିଆସିଛି । ମୋ ଭିତରେ ପଶି ସେ ବୃନ୍ଦାବନ ଦେଖିଦେବ । ମୁଁ ଅଯୋଗ୍ୟ; ତାକୁ ସବୁ ଥରେ ସୁଦ୍ଧା ନେଇ ଦେଖାଇ ପାରିଲି ନାହିଁ ।"

ଦୀର୍ଘ ନିଶ୍ୱାସଟିଏ ପକେଇ ଦାସେ ପଣ୍ଡିତଙ୍କ ମୁହଁକୁ ଚାହିଁ ରହିଥାନ୍ତି । ପଣ୍ଡିତେ ଅଳ୍ପ ହସି କହିଲେ, "ଗ୍ଭଡ଼ ସେକଥା ଦାସେ, ତାକୁ ତ ଗ୍ଭଡ଼ିବା ପାଇଁ ଏତେ ବାଟ ବୁଲି ବୁଲି ଆସିଲ । ଆଉ ଫେର୍ କାହିଁକି ? ଗ୍ଭଇଟା ପଛରେ ଗୁଚ୍ଛାରେ ଲଗିଛ ?"

"ନାହିଁ ମହାଶୟେ, ଆଲୁଅ ଭିତରକୁ ପଶିଲେ ଅବଶ୍ୟ ଗ୍ଭଇଟାକୁ ସାଙ୍ଗରେ ଘୋଷାରି ନେବାକୁ ହେବ ।"

ପଣ୍ଡିତ ମହାଶୟେ ହଠାତ୍ ସଜାଗ ହୋଇଉଠିଲେ । ଦାସଙ୍କ ଭିତରେ ସ୍ୱତଃ ଜ୍ଞାନର ସ୍ଫୁରଣ ଦେଖି ତାଙ୍କର ସ୍ତୁଗପତ୍ ହର୍ଷ ବିସ୍ମୟ ଜାତହେଲା । ସେ ଆଉ ମଧ୍ୟ ଲକ୍ଷ୍ୟ-କଲେ ଯେ ଦାସେ କେମିତି ଉଦାସ ଭଙ୍ଗୀରେ ଚାହିଁରହିଛନ୍ତି । ଆଖି ଯୋଡ଼କରେ ଗୋଟିଏ ହଳକା ହଳକା ଶାନ୍ତଭାବ ଫୁଟିଉଠୁଛି । ସେ ପରୀକ୍ଷା ଛଳରେ କହିଲେ, "ଆଲୁଅ ଆଡ଼କୁ ଲକ୍ଷ୍ୟ ଥିଲେ ତ ବଳେ ଗ୍ଭଇଟା ପଛକୁ ପଡ଼ିରହିବ, ତା ପାଇଁ ଏତେ ବ୍ୟସ୍ତ କାହିଁକି ?"

"ତା ବୋଲି କ'ଣ ଗ୍ଭଇଟା ଛାଡ଼ିଯିବ କି ମହାଶୟେ ! ସେ ସବୁବେଳକୁ ଲାଗି-ରହିଥିବ ନା ! ତା ଉପରେ ଚଢି ସିନା ମଣିଷ ଆଲୁଅ ଆଡ଼କୁ ଯିବ । ଆଲୁଅ ଯେତେ ପାଖକୁ ଆସୁଥିବ ଗ୍ଭଇ ସେତେ ଶକ୍ତ ଯୋଗାଉଥିବ । ତାପରେ ଆଲୁଅରେ ମିଶିଗଲା ମାନେ ଗ୍ଭଇ ଆଉ ରହିବ ନାହିଁ । ସେ ବି ସେଇ ଆଲୁଅରେ ମିଶିଯିବ ।"

ପଣ୍ଡିତେ ତାଙ୍କର ଆଗ୍ରହ ଏବଂ ବିସ୍ମୟ ଆଉ ଲୁଚେଇ ପାରୁନାହାନ୍ତି । ସେ ଦାସଙ୍କ ହାତ ଧରି ଆଣି ପଟାଖଟ ଉପରେ ବସେଇଲେ । ସାଙ୍ଗେ ସାଙ୍ଗେ ଦାସଙ୍କର ମନ-ବୁଦ୍ଧି ସବୁ କୋହଲ ପଡ଼ିଗଲା । ସେ ପୁଣି ସ୍ୱାଭାବିକରେ ବୁଲିଗଲେ । ହସି ହସି ଜଭ କାମୁଡ଼ି କହିଲେ—

"ମୋର ଆଜ୍ଞା, ଆଉ ହବ ନାହିଁ । ମୁଁ ନିଶ୍ଚୟ ବାୟା ହେଲି ବୋଲି ଜାଣନ୍ତୁ । ମୋର ବୁଦ୍ଧି ନ ହଜିଲେ କ'ଣ ମୁଁ ଆପଣଙ୍କ ସାଙ୍ଗରେ ଶାସ୍ତ୍ରାର୍ଥ କରନ୍ତି ! ଦୟାପ ମୋର ଦେଖନ୍ତୁ ।"

ପଣ୍ଡିତେ ଭାବିଲେ, ଏ ଫେର୍ କ'ଣ ? ବଡ଼ ଜଟିଳ ମାନସିକ ଅବସ୍ଥା ! ମାନସ-କ୍ଷେତ୍ରର ଭିତ୍ତି ଭୂମି—ସେହି ମୂଳ ଚେତନାର ସ୍ତରରେ ଏ ଜଟିଳତା ଜାତହୋଇଛି । ଜ୍ଞାନ ଯେ ସ୍ୱତଃ ବିକଶିତ ହେଉଛି ଏଥିରେ ସନ୍ଦେହ ନାହିଁ । ନହେଲେ କି ଏଡ଼େ ସହଜରେ ପଙ୍ଗୁ ସ୍ୱୀକୃତିକୁ ସେ କହିଦେଇଥାନ୍ତେ ।

"ମୋର ଦୋଷ ହେଲା ଆଜ୍ଞା ! ମୁଁ କ'ଣ କରୁଛି, କ'ଣ କହୁଛି ମୋର ଆଉ ଆୟତ୍ତରେ ହେଉ ନାହିଁ ପରି ଲାଗିଲାଣି । ମୋର ଦୋଷ ଧରିବେ ନାହିଁ ।"

ପଣ୍ଡିତେ ଯାହା ଗମ୍ଭୀର ହୋଇ ଭାବୁଥିଲେ, ହସିଦେଇ କହିଲେ, "ଆହେ, ନାହିଁ ମ କ'ଣ ଦୋଷ କଲ ମୁଁ କାହିଁ ଜାଣି ନାହିଁ ତ ? ପ୍ରଶ୍ନକୁ ଉତ୍ତର କ'ଣ ଆଉ ଦିଅନ୍ତି ନାହିଁ କି ?"

ଏତିକବେଳେ ଗୋଟେ ଥାଳରେ କ'ଣ ଜିନିଷସବୁ ନେଇ ଗୋଟିଏ ସତର ଅଠର ବର୍ଷର ଟୋକା ଘର ଭିତରକୁ ପଶିଆସିଲା । ଚୂଡ଼ିଆ ନୁଖୁରା ମୁଣ୍ଡ ପଛଆଡ଼େ କହରା ହୋଇ ଲମ୍ବା ଶିଖା । ଯୋଡ଼ ଝଣ୍ଡେକ କେମିତିଆ ଉଡ଼ାଭିଡ଼ା କରି ପିନ୍ଧିଛି ଯେ ଆଣ୍ଠୁ ଉପରକୁ ଉଠିଯାଇଛି । ଝଣ୍ଡେ କନା ଫତେଇ ବେକ ପର୍ଯ୍ୟନ୍ତ ବୋତାମ ଲଗାହୋଇଛି । ପାଦରୁ ମୁଣ୍ଡଯାଏ ଖାଲି ମଳି ତା ଦେହରୁ ପ୍ରସ୍ଥେ ହେବ ବାହାରିବ । ନିଃସନ୍ଦେହ, ସେ ଧର୍ମଶାଳା ଆଉପଟ ଚୌବେଙ୍କ ହୋଟେଲରେ କାମ କରେ ।

"ଚୌବେଜୀନେ ଭେଜା ହୈ ।"

ପଣ୍ଡିତେ ତାକୁ ଆଉ ପଟାଖଟେଟା ଦେଖାଇ କହିଲେ, "ଇଧର୍ ରଖ୍ ଦୋ ।" ସେ ଥୋଇଦେଇ ହାତ ପଛପଟେ ନାକ ପୋଛୁ ଚାଲିଗଲା । ବଡ଼ ଥାଳୀଟାରେ ଦୁଇ ଗିଲାସ କ୍ଷୀର ବାମ୍ଫ ବାହାରୁଥାଏ, ଦୁଇଟି ପେଡ଼ା, ଆଠଟି ବଡ଼ ବଡ଼ କଦଳୀ ।

ଦାସେ ଦେଖି ବଡ଼ ଉଲ୍ଲାସରେ କହିଲେ, "ବାଃ କି ସୁନ୍ଦର କଦଳୀ ହୋଇଛି ଦେଖିଲେଣି ! ଅଉ ଆଉ ଯୋଡ଼ାକ କ'ଣ ?

"ପେଡ଼ାଟା ପେଡ଼ା, ଖୁବ ଭଲ ଫଳ ଭିତରେ ସେ ଯାଏ । ଏଠି ତାର ଭଲ ପ୍ରଚଳନ । ଆଚ୍ଛା, ତା ହେଲେ ଖାଇ ଶୋଇଗଲେ ତ ହବ ।"

"ହଉ ।"

ଖାଇସାରି କ୍ଷୀର ପିଇବା କଥା । ଦାସେ ପିଇବାକୁ ବଡ଼ ଅମଙ୍ଗ—"ସ୍ନାନ ଉପରେ ତାଜା କ୍ଷୀରଗୁଡ଼େ ପିଇଲେ ପେଟଭିତର ଗୁରୁଣ୍ଡି ହୋଇ ବାନ୍ତି ହୋଇଯିବା ପରି ଲାଗୁଛି ।"

"ଆରେ ନାହିଁ ହେ, ପିଇଦିଅ, କିଛି ହବ ନାହିଁ । ଏଠି ସମସ୍ତେ ସେମିତି ପିଅନ୍ତି ।"

ଦାସେ ବଡ଼ କଷ୍ଟରେ ସେତିକି ପିଇ ପାନ ଦୁଇ ଖଣ୍ଡ ଭାଙ୍ଗି ଖାଇଲେ । ଆଲୁଅ ଲିଭେଇ ଶୋଇ ଶୋଇ ଅନେକ ରାତି । ପଣ୍ଡିତେ କିନ୍ତୁ ପିଲାଟିଏ ପରି ଗଡ଼ ପଡ଼ୁ ପଡ଼ୁ ଶୋଇଗଲେ । ଦାସଙ୍କୁ ଆଉ ନିଦ ନାହିଁ । ଆଖି ବୁଜି ପଡ଼ିଥାନ୍ତି, ଆକାଶ ପାତାଳ

ହଜାରେ ଚନ୍ଦ୍ରା ମନକୁ ଆସୁଥାଏ । କେଉଁଠି ଗଡ଼େଇ ଗଡ଼େଇ କେଉଁଠି ତାଙ୍କୁ ଆଣି ପକେଇଲଣି, ସେଇ କଥା ସେ କେବଳ ଭାବୁଥାନ୍ତି ସମୁଦ୍ର ଲହଡ଼ିରେ ଫମ୍ପା ପଇଡ଼ ପରି ସେ ଅଣାୟତ୍ତରେ ଭାସିହୋଇ ଆସୁଛନ୍ତି । ଗର୍ଜନ ହୋଇ ସମୁଦ୍ର ଉଥଲି ଉଠୁଛି; ମୁନ୍ଦ୍ରା ଗୁଡ଼ା ହେବାପରି ଢେଉ ଉପରକୁ ଢେଉ ମାଡ଼ି ଆସୁଛି । ଆଠକାଳ ବାରମାସୀ ବୋଲି ଯଥାର୍ଥ ଧରୁ ନାହିଁ । ବଡ଼ ଅସ୍ଥିର, ଅବୁଝା, ଅଶାନ୍ତ । କିନ୍ତୁ ଦାସଙ୍କୁ ଲାଗୁଥାଏ ଯେ ଦୁରନ୍ତ ଢେଉ ତଳୁ ପାପୁଲି ରଖି ସେ ଅଥଳ ଜଳରୁ ତାଙ୍କୁ କିଏ ଗ୍ରୁଣି ଆଣୁଛି । କୂଳରେ ଆଣି ସବାଶେଷରେ ପକେଇଦେବ କି ? ସମୁଦ୍ର ପାଣିରେ ରହି ରହି ତାଙ୍କର ଶିରା ଶିରା ଲୁଣିଧରିଗଲାଣି । ସେ ଅଥୟ ଦୋଳାରେ ତଳକୁ ଉପରକୁ ପଡ଼ିଉଠି ସଂସାରଟାକୁ ହାଡ଼ ଭିତରେ କଷି ଆସିଛନ୍ତି । ଝର୍ ଝର୍ ଶୁଖିଲା ବାଲିଟା ଉପରେ ନିଷ୍ଠୁର ତାଙ୍କୁ ପକେଇଦେଲେ ସେ ସମ୍ଭାଳି ପାରିବେ କି ?

ଦାସଙ୍କୁ ଲାଗୁଥାଏ, ତାଙ୍କୁ ସତକୁ ସତ କିଏ ପାପୁଲିରେ ତୋଳିଧରିଛି, ଟେକି-ନେଉଛି । ନ ହେଲେ ଏ କାଳନ୍ଦୀକୂଳ ବୃନ୍ଦାବନ କାହିଁ, ସେ କାହାନ୍ତି ? ଘରୁ ଗୋଡ଼ କାଢ଼ିବାକୁ ଯା'ର ବଳ ନ ଥିଲା, ସେ କ'ଣ ଏଠି ଆସି ତା ମନକୁ ପହଞ୍ଚିଯାନ୍ତା ? ସେଇ ମୁହୂର୍ତ୍ତରେ ଖବର ଜୁଆର ପ୍ରାଣ ଭିତରେ ଉଥଲିଉଠିଲା । ମୁଦ୍ରିତ ଆଖିକୋଣରୁ ଉଷୁମ ଲୁହ ଧାର ଧାର ହୋଇ ବୋହିବାକୁ ଲାଗିଲା, ରହି ରହି ଦେହଟା ସାରା ରୋମାଞ୍ଚିତ ଶିରେଇ ଉଠିଲା । ଦାସଙ୍କ ଭିତରେ କେବଳ ସେଇ ପଦେ ଗୁମୁରୁଥାଏ—

"ଧନ୍ୟ ରେ ନେତ୍ର ହେବୁ ସଫଳ ଦୃଷ୍ଟି ଜଳଦ ତନୁ,
ନନ୍ଦର କୋଳେ ଗୋପାଳ ମେଳେ ବସିଥିବେ ଯେ କାହ୍ନୁ ।"

ତାଙ୍କର ଘନ ଘନ ନିଶ୍ୱାସ ବହୁଥାଏ । ଆଖିରୁ ଲୁହ ଝରୁଥାଏ । ପେଟ ଦ'ଖଣ୍ଡ ହୋଇ ଓଠ ଥରିଉଠୁଥାଏ, ଦେହସାରା ରୋମାବଳି ଠିଆ ହୋଇ ରହିଥାନ୍ତି ।…ଏତିକିବେଳେ ଧର୍ମଶାଳା ତଳ ରାସ୍ତାରେ ଗୋଟିଏ ଘୋଡ଼ାଗାଡ଼ି ଦୌଡ଼ି ଚାଲିଗଲା । ଘୋଡ଼ା ଟାପୁର ଶବ୍ଦ ଗର୍ଜନର ନିସ୍ତବ୍ଧତାରେ ଦାସଙ୍କୁ ଲାଗିଲା, ସେ ଦ୍ୱାପରରେ ଅକ୍ରୂର ରଥକୁ ଦେଖୁଛନ୍ତି ।…ଧଳା ଧଳା ଅପରାଜିତା ଫୁଲ ପରି ଦୁଇଟା ଘୋଡ଼ା । ଆଖି ପିଛୁଳାକେ ବିଜୁଳି ପରି ଉଡ଼ିଯିବେ । ପାଟ କନାର ପାଗ ଭିଡ଼ି ଅକ୍ରୂର ବସିଛି । ଆଚ୍ଛା, ସେ କାନ୍ଦୁଛି କାହିଁକି ? କ'ଣ ହେଲା, କାନ୍ଦିବ ନାହିଁ ? ନ କାନ୍ଦିଲେ ଭଲ ତା ହିଆ ସମ୍ଭାଳିବ ? ଧାର ଧାର ଲୁହ କାନ ପର୍ଯ୍ୟନ୍ତ ବୋହିଯାଉଛି । ଦାସଙ୍କୁ ଲାଗୁଛି ଉଷୁମ । ତାଙ୍କୁ ବୋଧ ହେଉଛି, ସେ ପାଗର ପାଟ କାନରେ ଲୁହ ପୋଛି ପକେଇବେ କି ! କିନ୍ତୁ ପାରୁ ନାହାନ୍ତି । ଘୋଡ଼ାଙ୍କୁ ଟିକିଏ ହାତ ମାରି ଯା'ବୋଲି ଚାଲିଦେଲେ । ଘୋଡ଼ା ପବନ ବେଗରେ ଯାଇ ପହଞ୍ଚିଲେ ନଈ-କୂଳରେ । ତେଣିକି ଆଉ ରଥ ନାହିଁ କି, ଘୋଡ଼ା ବି ନାହାନ୍ତି । କଦମ୍ବର ବାସ୍ନାରେ ତାଙ୍କ ପେଟ ଭିତର ସୁଦ୍ଧା ବାସି ଯାଉଛି । ତାଙ୍କ ଦେହରୁ ଶାଖା ପ୍ରଶାଖା ଉଲ୍ଲସି ଉଠୁଛନ୍ତି, ଉଙ୍କୁଟି ଉଠୁଛନ୍ତି ଡାଳପତ୍ର । ଦେହସାରା ମଣ୍ଡଣି ହେଲା ପରି କଣ୍ଟା କଣ୍ଟା ହୋଇ ଲକ୍ଷେ କଦମ୍ବ ଫୁଟିଯାଇଛି । ତାଙ୍କ ପାଦତଳେ ଅତସୀ ଫୁଲର ଖର ଖର ପାଖୁଡ଼ା ପରି କଅଁଳିଆ

ବ୍ରଜଧୂଳି । ତା'ର ଦେହରୁ କ'ଣ ଏ ଚନ୍ଦନ, କର୍ପୂରର ବାସ ବାହାରୁଛି କି ଆଉ ? ଯେତେ ଦୂର ଆଖି ପାଉଛି, କେବଳ କୁଞ୍ଜ । କଏ ଯୂଇ ଫୁଲରେ ନଇଁ ପଡ଼ୁଛି ତ କଏ ଲଟା ମଲ୍ଲୀରେ । କେଉଁ ଋତୁର କେଉଁ ଫୁଲ ଅଉ ସେଇଠି ନାହିଁ ବୋଲି କଥା ନାହିଁ । ମାଉ ଏତେ ନଗ୍ଣଟିଆ କାହିଁକି ହୋଇଛି ଏ କୁଞ୍ଜ ? ମତେ ଦେଖି କ'ଣ ସବୁ ଲୁଚଗଲେ କି ଆଉ ?

ଇସ୍ କେଡ଼େ କଳା ଏ କାଳନ୍ଦୀର ପାଣି ! ଗଣ୍ଡଟା ନା, ଏଠି ଲହଡ଼ି ଜମା ନାହିଁ । ଦେଖୁଛ ନା ରନ୍ଦୁବୋଉ, ଏ ଜାଗାସବୁ କେମିତି ? କେଡ଼େ ପବିତ୍ର ସ୍ଥଳୀ ! ହଇହେ, ଏଥିରେ ମୁନ୍ଦେ ଗାଧୁଅନ୍ତେ ନାଇଁ ? ମୁଣ୍ଡ ବୁଡ଼େଇଲେ ସବୁ ପାପ ଗ୍ଧୁଡ଼ିଯାଆନ୍ତା । ତୁମ ମାଇକିନିଆ ଜାତି ପରା ମୁଁ କହୁଛି ସବୁ କଥାରେ ଖାଲି କାଉଳି । ଆରେ ଦେଖ ଅ,ଗ ! ମନ ଭିତରକୁ ଏ ପଶିଯାଉ, ତେଣିକି ମୁଣ୍ଡ ବୁଡ଼େଇବାକୁ କେତେ ଘଡ଼ି ! ଦେଖିଲ, ଏତକରେ କାହିଁକି ମୁହଁଟା ଏମିତି ଶୁଖେଇଦେଲ ? ଆରେ, ଘିବା ମ ! ଆମର କ'ଣ ବୟସ ଗ୍ଲଲଗଲଣି ! ଏ ଦେଖୁଚି ଟିକିଏ ବଢ଼ ହେଉଯାଉ, ଘିବା । ଆସ, ଆସିବଟି ମୋ ପାଖକୁ ।

ପଟାଖଟରେ ବଳବଳେଇ ଦାସେ କଡ଼ ଲେଉଟେଇଲେ । ଏତକବେଳେ ବହୁ ଦୁରରୁ ଶୂନ୍‌ଶାନ ରାତିରେ କିଏ ଜଣେ କାହାକୁ ଡାକବାର ଶୁଣାଗଲା—"ହୋ···ଇ··· ଲ୍ଲ·····ଆ !"

ଦାସେ ସେମିତିଆ ସ୍ୱପ୍ନ ଦେଖିଲା ପରି ଉଠି ବସିଲେ । ଏଇ ତ ତାଙ୍କୁ ଡାକରା ଆସିଲା !

"ଘିବା ଏଥର, ଉଠ, ଗ୍ଲଲ, ହଇ ହେ !"···

ଦାସେ ଖଟରୁ ଉଠି ସେଇ ଅନ୍ଧାରରେ ଗାମୁଛା, ଲୋଟା ସବୁ ଧରଲେ । କିନ୍ତୁ ହାବଭାବରୁ ଜଣାଯାଉଛି, ଯେମିତି ସେ ଆଉ ଜଣେ କେହି !

ପଣ୍ଡିତ ମହାଶୟଙ୍କ ନିଦ ଭାଙ୍ଗିଗଲା । ସେମିତି ଶୋଇ ରହି ଦାସଙ୍କୁ ଲକ୍ଷ୍ୟ କଲେ । ଅରେ ଦାସେ କ'ଣ ନିଦରେ ଏମିତି ଗ୍ଲଲୁଛନ୍ତି ?

ଦାସେ ନଇଁ ନଇଁ ଝଟିଙ୍କୁ ମୁଣା, ଲୋଟା କାଢୁଥାନ୍ତି । ପଣ୍ଡିତଙ୍କୁ ଜମା ଲକ୍ଷ୍ୟକର ପାରୁ ନ ଥାନ୍ତି । ହଠାତ୍ ତାଙ୍କୁ ଦେଖି ତରତର ହୋଇ ଯାଇ ପଟାଖଟଟାର ଆରପାଖେ ଲାଜରେ ଜଡ଼ସଡ଼ ଭାବେ ଠିଆହୋଇ କହଲେ—"ହଇ ହେ, ଏଠିକି କ'ଣ ଆଣିଲ ମ ? ଏଠି ପଣ୍ଡିତେ ଶୋଇଛନ୍ତି ଯେ ! ଚ୍ଛି, ଚ୍ଛି, ତମେ ଆଉ ହବ ନାଇଁ । ହଁ, ମୁଁ କ'ଣ ନାଇଁ କରୁଚ, ସେ ଋଷି ପରି ଲୋକ ବୋଲି ! ହେଲେ କ'ଣ ହେଇଗଲା ସେଇଠୁ ? ଗ୍ଲଲବଟି ଅମେ ଘିବା । ତମ ଲୋଟା ? ମୁଁ ଏଇ ଧରିଛି ପରା ! ଚ୍ଲଲ !!"

ପଣ୍ଡିତେ ଗମ୍ଭୀର ବୈସ୍ମୟରେ ତାଙ୍କୁ ଲକ୍ଷ୍ୟକରୁଥାନ୍ତି ।

ଦାସେ ଲଦରପଦର ଯାଇ କବାଟ ଫିଟେଇ ବାହାରକୁ ବାହାରିଲେ । ପଣ୍ଡିତେ କିଛି ନ କହି ନୀରବରେ ତାଙ୍କ ପଛେ ପଛେ ଗ୍ଲଲଲେ ।

ଦାସେ ଯେ ସ୍ୱପ୍ନାବିଷ୍ଟ, ଏଥିରେ ତାଙ୍କର ସନ୍ଦେହ ନାହିଁ । କିନ୍ତୁ ବଡ଼ ଅଦ୍ଭୁତ ! ସ୍ୱାଙ୍କର ତ ସମସ୍ତ ବାହ୍ୟେନ୍ଦ୍ରିୟ ପରିଷ୍କାର କାମ କରୁଛନ୍ତି, କିନ୍ତୁ ମନଟା ଏମିତ ଆଚ୍ଛନ୍ନ ହୋଇ ରହିବା ଅତି ଅସ୍ୱାଭାବିକ ।

ଦାସେ ଅତି ସନ୍ତର୍ପଣରେ ପାହାଚ ଓହ୍ଲେଇ ଆସି ରାସ୍ତାରେ ଠିଆହେଲେ । ସେତେବେଳକୁ କେହି କୁଆଡ଼େ ନାହାନ୍ତି ।

ସେଇଠୁ ଯମୁନାର ଅକ୍ରୁର ଘାଟ ଅତି ନିକଟ । ତାହାଙ୍କୁ ବୁଲିଗଲେ ଘାଟ ଆଡ଼େ ରାସ୍ତା । ବାଁଆଡ଼େ ମଥୁରା କଂଚସନ୍ । ଦାସଙ୍କର ମୋଟ ଉପରେ ଆଦୌ ଇତସ୍ତତଃ ନାହିଁ । ସେ ଜାଣିଲା ପରି ସଳଖ ଘାଟ ରାସ୍ତା ଧରିଲେ, ଯେମିତି ସେ ବହୁ ଆଗରୁ ସେ ବାଟରେ ଯାଇଛନ୍ତି, ତାକୁ ଭଲରୂପେ ଚିହ୍ନିଛନ୍ତି ।

ପଣ୍ଡିତେ ଧିରେ ଧିରେ ଚାଲିଣ ହାତ ପଛରେ ଚାଲିଥାନ୍ତି ।

ଦାସଙ୍କର ସ୍ୱପ୍ନାବିଷ୍ଟ ଚେତନାର ବାହ୍ୟ ସ୍ତର ତାଙ୍କର ସହଧର୍ମିଣୀଙ୍କଦ୍ୱାରା ଆଚ୍ଛନ୍ନ, କିନ୍ତୁ ଭିତରେ ସେ ନିଜେ ବୃନ୍ଦାବନର ଅଦ୍ଭୁତ ମିଳନର ଉପଭୋଗ କରିଚାଲିଛନ୍ତି । ମଝିରେ ମଝିରେ ଯାହା ଶୁଭେ ସେଥିରୁ ଜଣାପଡ଼େ, ଯେପରି ଜଣେ ଅଦୃଶ୍ୟ ବ୍ୟକ୍ତି ସହିତ କଥାବାର୍ତ୍ତା ଚାଲିଛି । ଯେପରି ଝୁନୁମା ଅତି ସ୍ୱାଭାବିକ ଅବସ୍ଥାରେ ଦାସଙ୍କ ସହିତ ଆଳାପ କରୁଛନ୍ତି । କିନ୍ତୁ ସେଥିରେ ଦାସଙ୍କ ପ୍ରଶ୍ନ ବା ଉତ୍ତର କେବଳ ଶ୍ରାବ୍ୟ ରହିଯାଉଛି ।

ଅକ୍ରୁର ଘାଟ । ବୃନ୍ଦାବନକୁ ଖୁବ୍ ନିକଟ । ଅଧିକାଂଶ ଯାତ୍ରୀ ସ୍ନାନ କରନ୍ତି । ଏଣ୍ଡି ଜାଗା ଖଣ୍ଡିକ ଖୁବ ସଫା । ରାତିଟାରେ ଯମୁନାର କଳା ପାଣି ଏକ ନୂଆ ରୂପ ଧରି ରହିଛି, ଯେମିତି ସେ ତା ଗର୍ଭରେ ଆକାଶେ ତରଳ ତାରାଙ୍କୁ ଥାନଦେଇଛି । ଅତି ଅକଳନୀୟ ଗମ୍ଭୀର, ତା ଭିତରକୁ କିମା ଦୃଷ୍ଟି ହେଉନାହିଁ ।

ଦାସେ ପାଣି ଧାର ପାଖରେ ଠିଆହେଲେ । କହିଲେ, "ଓହୋ, ଏମିତ କାହିଁକି ହଉଚ ମ ! ପିଲାଙ୍କ ପରି ଏମିତଗୁଡ଼େ ପାଟି କାହିଁକି କରୁଛ ? ପାଖରେ କିଏ ଶୁଣିଲେ କ'ଣ କହିବ ?"

ପଣ୍ଡିତେ ସବୁ ଶୁଣୁଥାନ୍ତି ।

ଏହା ପରେ କିଛିକ୍ଷଣ ନୀରବରେ ରହିବା ପରେ ଦାସେ ତାଙ୍କ ସ୍ୱାଭାବିକ ସ୍ୱରରେ କହିଲେ, "ପାଟି କରିବ ନାହିଁ ! ଏ ସ୍ୱର୍ଗ କ'ଣ ଜୀବନରେ ଆଉ ଥରେ ମିଳିବ ?"

ଏତକ କହିଦେଇ ସେ ପ୍ରାୟ ନାଚିବାକୁ ଆରମ୍ଭ କରିଦେଲେ । ସ୍ୱପ୍ନାବସ୍ଥା ହେତୁ ବୋଧହୁଏ ଅଙ୍ଗପ୍ରତ୍ୟଙ୍ଗର ଗତି ଟିକିଏ ଶିଥିଳ—ନ ହେଲେ ଦାସେ ଉନ୍ମତ୍ତ । "ରମାମାଧବ ଗିରିବରଧାରୀ, ଗୋପୀଜନବଲ୍ଲଭ କୁଞ୍ଜବିହାରୀ ।" ଏହି ଗୋଟିଏ ପଦର ଦ୍ରୁତ ଲୟରେ ସେ ତାଳ ଦେଇ ନାଚୁଥାନ୍ତି ।

ପଣ୍ଡିତେ ଲକ୍ଷ୍ୟ କଲେ ଯେ ଦାସେ ବୋଧହୁଏ ବର୍ତ୍ତମାନ ଝୁନୁମାଙ୍କୁ ପଛେଇ-ଦେଇ ଅନ୍ୟ ସ୍ତରକୁ ଉଠିଗଲେ । କିନ୍ତୁ ଦାସେ ହଠାତ୍ ସ୍ଥିର ହୋଇଗଲେ ଏବଂ ବାହୁ ପ୍ରସାରି ଡାକିଲେ, "ଆସ, ଯମୁନାରେ ପଶିଯିବା । ହଉ, ଚାଲନା ! ଗୋପୀ ଆସିଲେ କ'ଣ

ହେଲ ସେଇଠୁ ? କଲେ, ଗୋପୀ କ'ଣ ? ଗୋପୀ କଏ ? ମୁଁ ଏବେ କ'ଣ ଭଲ ତତେ ଦିଶିଲ କ ? ଆ, ଆ · ଗ୍ଲଲଆ !"

ପଣ୍ଡିତଙ୍କର ରୋମାଞ୍ଚ ହେଉଥାଏ । ଭଙ୍ଗୀରୁ ମନେହେଲା, ଦାସେ ସମ୍ପୂର୍ଣ୍ଣ ପାଣିରେ ପଶିଗଲେ । ବଡ଼ ଉତ୍କଣ୍ଠାର ସହିତ ଅପେକ୍ଷା କଲେ ପଣ୍ଡିତ ମହାଶୟେ, କାଳେ ଏଇଠି ଦାସଙ୍କର ସ୍ୱପ୍ନ ଭାଙ୍ଗିଯିବ···କିନ୍ତୁ କାହିଁ ?

ଦାସେ ନୀରବରେ ଆଖି ବୁଜି ଆକଣ୍ଠ ଜଳରେ ବୁଡ଼ି ରହିଲେ ।

'ନା, ତାଙ୍କୁ ଏଠୁ ନେଇଯିବାକୁ ହେବ । ତାଙ୍କର ବଡ଼ ଅପ୍ରକୃତସ୍ଥ ଅବସ୍ଥା ।' କିନ୍ତୁ ପୁଣି କ'ଣ ଭାବି ସେ ଓହରିଗଲେ । ନିଶ୍ୱାସଟିଏ ମାରି ମୁହଁ ଫେରାଇଲେ ଘାଟଆଡ଼କୁ । ଆକାଶରେ କୃଷ୍ଣପକ୍ଷର ଜହ୍ନଟିଏ ପଡ଼ିଥାଏ । ତାକୁ ସେ ପର୍ଯ୍ୟନ୍ତ ପଣ୍ଡିତେ ଲକ୍ଷ୍ୟ କରି ନ ଥିଲେ । ଅଙ୍କୁର ଘାଟର ଘାଟଆଡ଼େ ନିସ୍ତବ୍ଧତା । ଓଦା ଓଦା ଜହ୍ନ ଆଲୁଅ ଖାଲି ସ୍ୱପ୍ନ ବର୍ଷା କରୁଛି । ପଣ୍ଡିତ ମହାଶୟେ ମଧ୍ୟ ଆସ୍ତେ ଆସ୍ତେ ମଙ୍କି ଆସିଲେ ।

"ବାଃ, କେତେ ଶାନ୍ତ ପରିବେଶ ହେଇଚ ମ ! ଏଠି ଘଡ଼ିଏ ବସିଗଲେ ଭ ହୁଏ ।"

ସେ ଯେଉଁଠି ଠିଆହୋଇ ରହିଥିଲେ ସେଇଠି ବସିଗଲେ ଏବଂ ଘାଟଆଡ଼କୁ ଅତି ଆଦରରେ ଚାହିଁଗଲେ । ତାପରେ ସ୍ୱତଃ ସେ ଅଜାଣତରେ ଧ୍ୟାନସ୍ଥ ହୋଇଗଲେଣି ।

ପାଣି ଭିତରେ ପ୍ରାୟ ବାହ୍ୟଜ୍ଞାନଶୂନ୍ୟ ହୋଇ ଦାସେ ବସିଛନ୍ତି ଏବଂ କୌଣସି ଏକ ଅତି ନିବିଡ଼ ସ୍ୱପ୍ନର ଅସଂଖ୍ୟ ତନ୍ତୁ ତାଙ୍କୁ ଆଶ୍ଳିଷ୍ଟ କରିରଖିଛି । ଏଣେ କୂଳରେ ପଣ୍ଡିତେ ମେଘନିର୍ମୁକ୍ତ ନିର୍ମଳ ଆକାଶରେ ଚନ୍ଦ୍ରକାର ପରାଗ ଦେଖି ପ୍ରକୃତିପୂରୁଷଗତ ତତ୍ତ୍ୱଚିନ୍ତନରେ ବିଭୋର ହୋଇ ବସିଛନ୍ତି ।

ମନେହେଉଛି, ଜଣେ ଯମୁନା ପାଣିରେ ମିଳେଇ ବୋହିଯିବ, ଆଉ ଆର ଜଣକ ସେହିପରି ସ୍ଥାଣୁ ହୋଇ ପଥରପାଲଟିଯିବ ।

ଅନେକ ସମୟ ପରେ ନିସ୍ତବ୍ଧତାରେ ଶୁଭିଲା ରାଧିକାର ନୂପୁର—ନା, ବୋଧହୁଏ ଷୋଳ ହଜାର କଟି କିଙ୍କିଣି । ହୋଇପାରେ ମଧ୍ୟ ଆକାଶ ଯମୁନାର ସେ ପାରିରୁ କ୍ଷୀଣ ବଂଶୀର ତାନ । ପବନର ଲହରି ଭିତରେ ଜୋଛନାର ଏକ ବେପଥୁଭାବ ଚନ୍ଦ୍ରାଲୋକ ପର୍ଯ୍ୟନ୍ତ ପ୍ରସରିଗଲା । ଧରିତ୍ରୀ ଯେପରି କଣ୍ଟକିତ ହୋଇଉଠିଲା । ଏ ଅସ୍ଥିରତା ପ୍ରଥମେ ପଣ୍ଡିତେ ନିଶ୍ୱାସରେ ବାରିଦେଇ ଆଖିଖୋଲିଦେଲେ । କ'ଣ ଗୋଟାଏ ଯେପରି ତାଙ୍କ ଅଲକ୍ଷ୍ୟରେ ଘଟିଯାଉଛି ଏବଂ ତାଙ୍କୁ ଜମା ସ୍ଥିର ରଖେଇ ଦେଉ ନାହିଁ । ସେ ଉଠି ଠିଆ-ହେଲେ ।

ଏହି ସମୟରେ ଅତି ଦୂରରୁ ବଡ଼ କ୍ଷୀଣ ସ୍ୱରରେ ତାଙ୍କୁ ଶୁଭିଲା—"ଓ······ଇ ···ଲ୍ଲଲ···ଆ···!"

ଏବଂ ତା ଠିକ୍ ପରେ ପରେ ପାଣି ଭିତରୁ ହଠାତ୍ ଏକ ଶବ୍ଦ । ଦାସେ ଭୂଷିକନା ଠିଆହୋଇପଡ଼ି ପୁଣି ପାଣି ଭିତରେ ପଡ଼ିଗଲେ । ପଣ୍ଡିତ ମହାଶୟେ ତରତରରେ ତାଙ୍କୁ କୂଳକୁ ଟାଣି ଆଣିଲେ । ଦାସଙ୍କର ସମସ୍ତ ଶରୀର ମୃତପ୍ରାୟ । କେବଳ ବାଣବିଦ୍ଧ ହରିଣଟା

ପର ବୃକୁ ଉପରୁ ମୁଣ୍ଡ ପର୍ଯ୍ୟନ୍ତ ଠକ୍ ଠକ୍ ହୋଇ ଥରୁଥାଏ । ପଲକଶୂନ ଆଖି ଦୁଟା ଉପ୍ରକି ରହିଛୁ । ତାଙ୍କ କିଛୁ ଶୁଭୁ ନାହିଁ କ ପାଟି ମଧ୍ୟ ଫିଟୁ ନାହିଁ କିଛୁ କହିଦେବାକୁ ।

ପଣ୍ଡିତଙ୍କର ଘୋର ଅନୁତାପ ହେଲା, କିନ୍ତୁ ସେତେବେଳକୁ ଭାବିବାକୁ ମଧ୍ୟ ସମୟ ନାହିଁ । ଏଣେ ବଳ ନାହିଁ ଦାସଙ୍କୁ ସେଇଠୁ ଟେକିନେଇ ଚାଲିଯିବେ । ଚାରିଆଡ଼କୁ ଚାହିଁଲେ ସାହା ହେବାକୁ କେହି କୁଆଡ଼େ ନାହିଁ । ତାଙ୍କୁ ଆଉ କିଛୁ ବୁଦ୍ଧି ଦିଶିଲା ନାହିଁ । ସେ ରାସ୍ତା ଆଡ଼େ ଧାଇଁଲେ । ବଡ଼ ରାସ୍ତାରେ ବାଁକୁ ମୋଡ଼ୁ ଛନ୍ତି, ଦେଖିଲେ ବତୀ ଆଲୁଅରେ ଜଣେ ପିଣ୍ଡାରେ କଏ ଘୋଡ଼ାଘାଡ଼ିହୋଇ ଶୋଇବାର ଉପକ୍ରମ କରୁଛି । ପଣ୍ଡିତଙ୍କୁ ଧାଇଁବାର ଦେଖି ଥରେ ତାଙ୍କୁ ଚାହିଁଲା । ପଣ୍ଡିତେ ଆଶାରେ ତା ପାଖେ ପହଞ୍ଚି କହିଲେ—"ଭାଇ, ହମାରେ ଏକ ମଦତ କର୍ ସକ୍ତେହୋ ।"

ପଣ୍ଡିତଙ୍କ ବ୍ୟକ୍ତିତ୍ୱରେ ଏବଂ କଣ୍ଠର ଆବେଗରେ କିଛି ବିଶେଷତ୍ୱ ସେ ଦେଖିଲା ବୋଧହୁଏ, ଚଦ୍ଦର ଖସାଇ ତାଙ୍କୁ ଭଲରୂପେ ଚାହିଁଲା ।

ଆଲୁଅରେ ପଣ୍ଡିତେ ଦେଖିଲେ, ବେଶ୍ ବଳିଷ୍ଠ ଚେହେରା । ବୟସ ତିରିଶିରୁ ଏଣିକି । ମୁହଁରେ କଳା ମଚମଚ ଗୋଛେ ଦାଢ଼ି । ଆଖି ଯୋଡ଼ାକ ତେଜସ୍ୱୀନ୍ ହେଲେ ମଧ୍ୟ ବେଶ୍ କୋମଳ ।

କହିଲା, "କହିୟେ, ହମ୍ କୈସେ ଆପ୍‌କେ ଉପ୍‌କାର କର୍ ସକତେ ହେଁ ?"

"ଇଧର୍ ବହୁତ୍ ନିକଟ ହି ହେ, ହମାରେ ଏକ ସାଥୀ ଜରା ଅସୁସ୍ଥ ହୋ ଗୟେ ହେଁ । ଉନ୍‌କୋ ଓହାଁସେ ଉଠାକେ ଧରମ୍‌ଶାଲେ ମେ ପହୁଞ୍ଚନା ହୈ । ହମ୍ ଅକେଲେ ନହିଁ ଲେ ସକେଙ୍ଗେ ।"

ଲୋକଟି ସାଙ୍ଗେ ସାଙ୍ଗେ ଉଠି କହିଲା "ଚଲିୟେ" ।

ଦାସେ ପୂର୍ବବତ୍ ପଡ଼ି ରହିଛନ୍ତି । ପଣ୍ଡିତେ କିଛି କହିବା ପୂର୍ବରୁ ଲୋକଟି ନିଜ ଚଦ୍ଦରରେ ଦାସଙ୍କ ଦେହସାରା ପୋଛି ସେଇଟାକୁ ଘୋଡ଼େଇ ତାଙ୍କୁ ଏକାକୀ ଟେକି-ଧରିଲା ।

"ଚଲିୟେ କିଧର ଜାନାହେ । ଇନ୍‌କି ହାଲତ୍ ତୋ ବହୁତ୍ ଖରାବ୍ ହେ ।"

ପଣ୍ଡିତେ ଦାସଙ୍କ ମୁଣ୍ଡ ଖଣ୍ଡିକ ଧରି ଯେତେ ଚଞ୍ଚଳ ପାରିଲେ ଆଗେ ଆଗେ ଚାଲିଥାନ୍ତି । ମନରେ ତାଙ୍କର ନାନା ଅସ୍ୱସ୍ତିକର ଚିନ୍ତା । ଧର୍ମଶାଳାରେ ଜଗୁଆଳୀ ନଥିଲା । ସେତେବେଳକୁ ପାହାନ୍ତିଆ ପହର ହୋଇଗଲାଣି । ପଣ୍ଡିତେ ନିଜ କୋଠରୀକୁ ଯାଇ ଦାସଙ୍କ ପଟାଖଟ ଦେଖେଇଦେଲେ । ତାଙ୍କ କମ୍ବଳ କାଢ଼ି ଦାସଙ୍କୁ ଘୋଡ଼େଇ-ଦେଲେ ।

ଲୋକଟି କିଛି ନ କହି ସେଠୁ ଚାଲିଗଲା; କିନ୍ତୁ ଅଳ୍ପ ସମୟ ପରେ ଗୋଟିଏ କାଠ ଆଣି ପହଞ୍ଚିଲା । ସେତକ ଜାଳିଦେଇ ଦାସଙ୍କୁ କନା ପୁଡ଼ାରେ ଖୁବ୍ ସେକିବାକୁ କହିଦେଇ ପୁଣି ଚାଲିଗଲା ।

ଗଲାବେଳେ କହିଗଲା—"ଆପ୍ ମତ୍ ଘବ୍‌ରାଇଏ । ହମ୍ ସାଧୁ ମହାରାଜ କୋ ଅଭି

ଲେକର୍ ଆତେ ହେଁ । ଓ୍ୱ ଆନେ ସେ ସବ୍ ଠିକ୍ ହୋ ଜାଏଗା ।"

ପଣ୍ଡିତଙ୍କ ଲୌକିକ ବୁଦ୍ଧି ଜାଣୁଥାଏ ଯେ ଏପରି ଅବସ୍ଥାରେ ନିହାତି ଡାକ୍ତରଙ୍କ ପରାମର୍ଶ କରିବା ଉଚିତ । ହେଲେ ତାଙ୍କୁ ଲାଗୁଥାଏ ଯେ ଲୋକଟି ଉପରେ ପୂରା ନିର୍ଭର କରିଗଲେ ବି ହୁଏ ।

ବାହାରେ ଲୋକ ଯିବା ଆସିବା କଲେଣି । ଗାଡ଼ି ଖଣ୍ଡେ-ଅଧେ ମଧ୍ୟ ଚାଲିଲାଣି । ପଣ୍ଡିତେ ଏକଲୟରେ ଦାସଙ୍କ ହୃମ-କାକର ଦେହଟାକୁ କନାପୁଡ଼ାରେ ସେକୁଥାନ୍ତି । ନୀରବରେ ଦୁଇ ଜଣ ଘରେ ପଶିଲେ । ଜଣେ ତାଙ୍କର ପରିଚିତ ବନ୍ଧୁ ଏବଂ ଆଉ ଜଣକ ଜଣେ ଅତି ଭବ୍ୟ ପୁରୁଷ । ପଣ୍ଡିତେ ତତ୍‌କ୍ଷଣାତ୍ ଉଠି ତାଙ୍କୁ ପ୍ରଣିପାତ ହେଲେ । ସେ ଅଲ୍ପ ହସି ତାଙ୍କୁ ବରଦ ମୁଦ୍ରାରେ ଆଶୀର୍ବାଦ କଲେ; ଦାସଙ୍କୁ ସେମିତି ଠିଆ ହୋଇ ରହି ଘଡ଼ିଏ କାଳ ଚାହିଁଲେ । ହଠାତ୍ ତାଙ୍କ ଆଖି ଜକେଇଲା ପରି ଦିଶିଲା । ସେ ବୁଲିପଡ଼ି ପଣ୍ଡିତଙ୍କୁ ପଚାରିଲେ—"ବେଟା, ତୁମ୍ କିସ୍ ପ୍ରାନ୍ତ କେ ହୋ ?"

ପଣ୍ଡିତଙ୍କର ଏ ପ୍ରଶ୍ନରେ ରୋମହର୍ଷଣ ହେଲା । କହିଲେ– "ହମ୍ ଓଡ଼ିଶା କେ ହେ ।"

"ଅରେ ଓ୍ୱା, ଜଗଦୀଶ୍‌ନେ ତୁମ୍ କୋ ଇଧର ଭେଜା ହୈ ।" କଥା କଥାକେ ଆତ୍ମା ଭିତରୁ ହର୍ଷ ତାଙ୍କ ମୁହଁ ଉପରକୁ ଉଚ୍ଛୁଳି ଆସୁଥାଏ । ପଣ୍ଡିତଙ୍କ ମନକଥା ଜାଣିଲା ପରି ପୁଣି କହିଲେ, "ତୁମେ ଇନକି ଚିନ୍ତା ମତ୍ କରୋ । ୟେ ଖୁଦ୍‌ହି ଠିକ୍ ଆଜାଏଁଗେ ? ହମ୍ ଆଜ୍ ଦିନଭର୍ ଇନ୍‌କି ସେବା କର୍‌ନା ଚାହତେ ।"

ସେ ଦିନଯାକ ଦାସଙ୍କର ଶୁଶ୍ରୂଷା ଚାଲିଥାଏ । ଦୁହିଁଙ୍କର ଗମ୍ଭୀର ଚର୍ଚ୍ଚା ମଧ୍ୟ ଚାଲିଥାଏ । ସନ୍ଧ୍ୟାବେଳକୁ ଦାସଙ୍କ ହାତଗୋଡ଼କୁ ଉଷୁମ ଛାଡ଼ିଲା, ନାଡ଼ୀ ଚାଲିଲା ଏବଂ ତାଙ୍କୁ ଖୁବ୍ ଗୋଟେ ଜର ହେଲା ।

ରାତିରେ ଯେ ଯିଏ ଆସିଥିଲେ ସବୁ ଗଲେ, କିନ୍ତୁ ଏ ଦୁହିଁଙ୍କର ଲାଗିଥାଏ କଥାବାର୍ତ୍ତା— ଅତି ଜ୍ଞାନଗହନ କଥା । ପରିଶେଷରେ ପଣ୍ଡିତ ମହାଶୟେ ସାଧୁଙ୍କର ପାଦ ଧରି ସାଷ୍ଟାଙ୍ଗ ପ୍ରଣିପାତ କରି ପଡ଼ିରହିଲେ । ଅନେକ ସାଧନା ସଂଘର୍ଷ ପରେ ତାଙ୍କର ଜ୍ଞାନର ଗଙ୍ଗୋତ୍ରି ସାଗର ସଙ୍ଗମ ଲାଭକଲା । ସାଧୁ ମହାରାଜ 'ପରମସନ୍ତୋଷରେ ତାଙ୍କ ମୁଣ୍ଡ ଉପରେ ହାତଟି ରଖିଥାନ୍ତି ।

ଦାସଙ୍କର ପଲକହୀନ ଆଖି ଏ ନୀରବ ଦୀକ୍ଷା ଗ୍ରହଣ ଆଡ଼େ ଚାହିଁ ରହିଥାଏ । କିନ୍ତୁ ବୋଧହୁଏ ତାଙ୍କର ଶୂନ୍ୟଦୃଷ୍ଟି କିଛି ବୋଇଲେ କିଛି ଗ୍ରହଣ କରିପାରୁ ନ ଥାଏ ।

# ମହାନିଶା ପୁରୀ

ପଣ୍ଡିତେ ଦାସଙ୍କର ବହୁ ଶୁଶ୍ରୂଷା କଲେ । କିନ୍ତୁ ତାଙ୍କର ସବୁ ହେଲା ସିନା, କଥା ଆଉ କହିପାରିଲେ ନାହିଁ; ଯାହାକୁ ହେଲେ ଶିଶୁ ଚାହିଁଲା ପରି ଘଡ଼ିଏ ଚାହିଁଲେ । ଯଦି ମନକୁ ପାଇଯାଏ ଟିକିଏ ହସିଦିଅନ୍ତି । ଆଖିରୁ ସ୍ନେହ ଝରିପଡ଼େ । ହେଲେ ମୁହଁରେ କେମିତିଆ ଗୋଟାଏ ବିଷାଦର ଭାବ ଲାଗିରହିଥାଏ । ସେ ସତେ ଯେମିତି ମାର୍ଗଶିର ମାସ ସକାଳୁଆ କୁହୁଡ଼ିରେ ନିଷ୍ପ୍ରଭ ହୋଇ ଭାସୁଛନ୍ତି । ଦିନଯାକ ବଡ଼ ଭାଗ ସମୟ କାନ୍ଥକୁ ଆଉଜି କଟିଯାଏ । କେହି ସେ ଭିତରକୁ ଗଲେ ଆସିଲେ, କଥାବାର୍ତ୍ତା ହେଲେ ତାଙ୍କୁ କିଛି ଜଣାପଡ଼େ ନାହିଁ ।

ପଣ୍ଡିତେ ସାଧୁଙ୍କ ମଠକୁ ଦାସଙ୍କୁ ନେଇଆସିବା ପରେ ଜାଣିଲେ ଯେ ତାଙ୍କର ଯୁବକ ବନ୍ଧୁଙ୍କ ନାମ ଯୁଗଳକିଶୋର । ସେ ଜଣେ ତରୁଣ ସାଧକ । ତାଙ୍କର ସାଧୁସେବା ହିଁ ଧର୍ମ । ସେ ପ୍ରାୟ ଦାସଙ୍କ କାମ କରିଦିଅନ୍ତି । ମଝିରେ ମଝିରେ ପଣ୍ଡିତଙ୍କୁ ବୁଲେଇବାକୁ ନିଏ ।

ପଣ୍ଡିତେ ଦାସଙ୍କୁ ଖୁବ୍ ଲକ୍ଷ୍ୟ କରନ୍ତି । ତାଙ୍କୁ ଜଣାପଡ଼େ ଯେ ଦାସଙ୍କର ତ ସହଜେ ପାଟି ଫିଟୁନାହିଁ; ବୋଧହୁଏ, କାନକୁ ଶୁଭୁନାହିଁ କି ଆଖିକୁ ମଧ୍ୟ ଦିଶୁନାହିଁ । କିନ୍ତୁ ଦିନେ ହଠାତ୍ ଦେଖନ୍ତି ଯେ ତାହା ଠିକ୍ ନୁହେଁ । କଉଁଛ ପରି ଦାସେ ଭିତରକୁ ଓହରିଗଲେଣି, ବାହାର ସହିତ ଆଉ ଯୋଗାଯୋଗ ହୋଇପାରୁନାହିଁ । ଥରେ ତ କାଠଗଡ଼ ପରି ପଡ଼ିଗଲେ ଯେ ଦୁଇ ଦିନରେ ଯାଇ ଆଖି ଫିଟିଲା ।

ଗୁରୁ ମଧ୍ୟ ଦିନେ ଛାଡ଼ ଦିନେ ଆସି ଦାସଙ୍କୁ ଦେଖିଯାନ୍ତି । ଦାସେ ତାଙ୍କୁ ଦେଖିଲା ମାତ୍ରେ ହାତ ଯୋଡ଼ନ୍ତି, ମୂକ ଇଙ୍ଗିତରେ ବସିବାକୁ ଅନୁରୋଧ କରନ୍ତି । ହସିଲା ହସିଲା ମୁହଁରେ ଉଚ୍ଛୁଳା ଆଦର ଥାଏ ସତ, ମାତ୍ର କଥା କହେ କେବଳ ତାଙ୍କର ଦୁଇଟା ଆଖି । ବେଳେବେଳେ ସେ ଆଖିଯୋଡ଼ିକ ଏତେ ଦୂରରୁ ଏତେ ଗଭୀରରୁ ଚାହିଁରହନ୍ତି ଯେ ପଣ୍ଡିତେ ଦାସଙ୍କୁ ଚିହ୍ନିପାରନ୍ତି ନାହିଁ—ଦାସେ ତ ସହଜେ ତାଙ୍କୁ ନ ଚିହ୍ନିବା କଥା । ହେଲେ ସକାଳ ପହରର ଗଛ ଅଗ ଖରା ପରି ଭାରି କଅଁଳିଆ ସେ ଚାହାଣି—ଠିକ୍ ଯେମିତି କାହିଁ କେଉଁ ମହାଶୂନ୍ୟରୁ ଲହଡ଼ି ମାରି ଆସୁଛି, ଚିହ୍ନା ନ ଚିହ୍ନା ସମସ୍ତଙ୍କୁ କୋଳେଇନେଇ ଚାଲିଯାଉଛି । ଆଉ କେତେବେଳେ ବା ପେଜୁଆ ଆଖିଯୋଡ଼ିକ କାଚ ଆଖି ପରି ନିର୍ଜୀବ ହୋଇଯାନ୍ତି । ସେଥିରେ ଖାଲି ଶୂନ୍ୟ ଭରିଯାଏ । କାଠକୁଣ୍ଢେଇ ତଳୁ ହାତ କାଢ଼ିନେଲେ ସେ ଯେମିତି ସ୍ଥିର ହୋଇ ଅସହାୟ ଭାବରେ ପଡ଼ିରହେ, ସେମିତି ସେ ଆଖିଯୋଡ଼ିକର

ଅବସ୍ଥା । କିନ୍ତୁ ହଠାତ୍ ଛଳଛଳ ହୋଇ ଚେତନା ଫେରିଆସେ, ମୁହଁକୁ ହସ ଫେରିଆସେ ।

ଦାସେ ପ୍ରାୟ ଅଭ୍ୟାସ ଅନୁସାରେ ନିତ୍ୟକର୍ମ କରିଯାନ୍ତି । ଦିନେ ଦିନେ କିନ୍ତୁ ସବୁ ଭୁଲିଯାନ୍ତି । ସେଦିନ ଗୁଳେଇଦେବାକୁ ପଡ଼େ ।

ଦାସଙ୍କ ଆଖିରୁ ପ୍ରାୟ ଲୁହ ଝରେ । ପଣ୍ଡିତେ ଜାଣନ୍ତି ଯେ ଏହା ହର୍ଷ-ବିଷାଦର ଲୁହ ନୁହେଁ । ବଡ଼ ସନ୍ତ୍ରମରେ ତାକୁ ପୋଛିଦିଅନ୍ତି । ଦାସେ କିଛି ଜାଣିପାରନ୍ତି ନାହିଁ । ଆସ୍ତେ ଆସ୍ତେ ତାଙ୍କର ଏତେ ଆବଶ୍ୟକତା ଆଉ ରହିଲା ନାହିଁ । ଖୁବ ପ୍ରସନ୍ନ ମୁଦ୍ରାରେ ସବୁ କାମ କରିଯାଉଥାନ୍ତି ।

ଦିନେ ଏମିତି ହଠାତ୍ ସେ ପଣ୍ଡିତଙ୍କୁ ଚାହିଁ ଠିଆହେଲେ । ପଣ୍ଡିତେ ଲକ୍ଷ୍ୟ କଲେ ଯେ ଏତେ ଦିନ ପରେ ଦାସେ କିଛି କହିବାକୁ ଚେଷ୍ଟାକରୁଛନ୍ତି । ପାଟିରୁ କଥା ବାହାରୁ ନାହିଁ ସତ, କିନ୍ତୁ ଆଖିରୁ ବେଶ୍ ଜଣାପଡୁଛି ଯେ ସେ ପଣ୍ଡିତଙ୍କୁ କିଛି କହିବେ । ପଣ୍ଡିତେ ମଧ୍ୟ ଆଗ୍ରହ ପ୍ରକାଶ କରି ଠିଆହୋଇ ରହିଲେ । ଦାସେ ପାଣିଢ଼ାଳ ତଳେ ଥୋଇଦେଇ ବାଁ ହାତ ପାପୁଲିରେ ଆଙ୍ଗୁଳିରେ ଲେଖିଦେଲେ—'ପୁରୀ' ।

ପଣ୍ଡିତେ ମୁହଁ ଟେକି ଦାସଙ୍କୁ ଚାହିଁଲେ । ସେ ସେମିତି ଖୋଲା ବଲ୍ଲୋର ହସ ହସୁଥାନ୍ତି । ପଣ୍ଡିତଙ୍କୁ ଲାଗିଲା, କଇଁଫୁଲ ପରି ସେ ହସ ଭିତରେ ତାଙ୍କର ସ୍ୱଚ୍ଛ ଧୂଆଧୋଇ ମନଟି ଝରଣାପାଣିରେ ସୁନାଗୁଣା ପରି ଝଲକୁଛି । ଦ୍ୱିଧା ଦ୍ୱନ୍ଦ୍ୱ ସନ୍ଦେହ ବୋଲି ଏତେ ଟିକେ ନାହିଁ ।

ତା'ହେଲେ ଦାସେ ଆଉ ବୃନ୍ଦାବନରେ ରହିବେ ନାହିଁ । କାହିଁକି ରହିବେ ନାହିଁ ବା କାହିଁକି ପୁରୀ ଯିବେ ? କ'ଣ ଦାସଙ୍କୁ ପଚାରିଦେବେ ? ନା, ପଚାରିବାର ପ୍ରୟୋଜନ କ'ଣ ?

ପଣ୍ଡିତେ ଯାଇ ଗୁରୁଙ୍କୁ ଏ କଥା ଜଣାଇଲେ । ସେ କିଛି ସମୟ ସ୍ଥିର ହୋଇ ବସିଲା ପରେ ମନକୁ ମନ କଥା ହେଲା ପରି କହିଲେ, "ଉନ୍‌କୋ ତୋ ଜ୍ୟାଦା ଜା ରହା ହେ ।" ପଣ୍ଡିତେ ବୁଝିଲେ ଯେ ଦାସଙ୍କର ପୁରୀ ଯିବା କଥା ଆଉ କାହାର ଆୟତ୍ତର କଥା ନୁହେଁ । ଦୁହେଁ ଉଠି ଦାସଙ୍କ ରହଣି ଆଡ଼େ ଗଲେ । ସେଇଠି ଦାସେ ନୀରବରେ ଚାହିଁ ରହିଲେ ସାଧୁଜୀଙ୍କୁ ଅନେକ ସମୟ ଧରି । ପଣ୍ଡିତଙ୍କୁ ବୋଧହେଲା ଯେ ଦୁହିଁଙ୍କର ବେଶ୍ ଆଳାପ ଚାଲିଛି ।

ସ୍ଥିର ହେଲା ଯେ ସେହି ଦିନ ହିଁ ଦାସେ ପୁରୀ ଯିବେ । ସାଙ୍ଗରେ ଯିବେ ଯୁଗଳକିଶୋର । ଯିବା-ଆସିବାର ବନ୍ଧାଛନ୍ଦା ତ କିଛି ନାହିଁ । ଦାସେ ତାଙ୍କ ଥଳୀଟି ଧରି ଠିଆହେଲେ ପୁରୀ ଯିବେ । ପଣ୍ଡିତେ ତାଙ୍କ ହାତରୁ ଥଳୀଟି ନେଇ ତା ଭିତରେ ଆମ୍ୱୁଲିଆ ଦରଓଦା ଗାମୁଛା ଖଣ୍ଡ, ଲୋଟା ଆଉ ଢାଳକ ପେଡ଼ି ପୂରେଇଦେଲେ । ଦାସେ ହାତ-ପାପୁଲି ମକଚି ମକଚି ଠିଆ ହୋଇଥାନ୍ତି । ଅଳ୍ପ ଅଳ୍ପ ହସୁଥାନ୍ତି ।

ଆଉ ଦେଢ଼ ଘଣ୍ଟା ପରେ କଲିକତା ଗାଡ଼ିରେ ଦାସେ ବାହାରିଯିବେ । ପଣ୍ଡିତେ

ଗଲେ ଷ୍ଟେସନ ପର୍ଯ୍ୟନ୍ତ ବଳେଇଦେବାକୁ ।

ଦାସେ ଗଲେ ।

ପଛରେ ପଡ଼ିରହିଲା ବୃନ୍ଦାବନ, ଗୋପୀ-ଗୋପାଳଙ୍କର ଯମୁନା, ରସସିକ୍ତ ବୃନ୍ଦାବନ, ଯମୁନାମେଖଳିତ ବୃନ୍ଦାବନ ।

ଦାସଙ୍କର କିନ୍ତୁ ଏବେ ଟିକିଏ ବୋଲି ଆବେଗ ନାହିଁ । କୌଣସି ପ୍ରକାର ଭାବାନ୍ତର ନାହିଁ । ଏତେ ଦିନ ପରେ ପଣ୍ଡିତେ ମଧ୍ୟ ପଛରେ ରହିଗଲେ । ଦାସେ ସେଇଟା ଲକ୍ଷ୍ୟ କରିପାରୁନାହାନ୍ତି । ତାଙ୍କ ଭିତରେ ଯେମିତି ଏସବୁ ଏକାଠି ସମ୍ମେଇ ଯାଇଛି । ସେ ସେଇଥିପାଇଁ ଆଉ କାହାରି ଅଭାବ ଅନୁଭବ କରୁନାହାନ୍ତି । ଆବିଷ୍ଟ ମନ ନେଇ ସେ କାହାକୁ ଆଉ ଆନ ପରି ନିଜଠାରୁ ପାଖରେ ବା ଦୂରରେ ଦେଖିପାରୁନାହାନ୍ତି ।

ପଣ୍ଡିତେ ଦାସଙ୍କ ଡବା ପାଖରେ ଠିଆହୋଇ ରହି ତାଙ୍କୁ ଚାହିଁଥାନ୍ତି । ଦାସେ କିନ୍ତୁ ପୂର୍ବପରି ନିର୍ବିକାର ବସିଥାନ୍ତି । ମଝିରେ ମଝିରେ ଦାସଙ୍କ ଆଖି ଯୋଡ଼ିକ ବେଶ୍ ସଚେତନ ହୋଇ ପଣ୍ଡିତଙ୍କୁ ଘୂରେଇବୂରେଇ ଚାହିଁରହିଥାନ୍ତି । ମୁହଁରେ ହସ ଫାଟି-ପଡ଼ୁଥାଏ । କିନ୍ତୁ ହଠାତ୍ ସବୁ ସ୍ଥିରହୋଇଗଲା । ଦେଖୁଦେଖୁ ଦାସେ ବୁଡ଼େଇଗଲେ । ଉପର ସ୍ତରରୁ ଓହ୍ଲରିଗଲେ ବହୁ ଗଭୀରକୁ—ଯେଉଁଠି ଚେତନା ଗୋଟେଇ ହୋଇ ସାଉଁଟି ହୋଇ ବୁଡ଼ିଯାଏ ।

ଏତିକବେଳେ ଗାଡ଼ି ଛାଡ଼ିଦେଲା ।

ଦାସେ ବାହ୍ୟଜ୍ଞାନଶୂନ୍ୟ ହୋଇ ସେମିତି ଅନେଇ ରହିଥାନ୍ତି ।

ପଣ୍ଡିତେ ମଧ୍ୟ ଶୂନ୍ୟଦୃଷ୍ଟିରେ ସେଇଠି ଠିଆହୋଇ ରହିଗଲେ ।

ତାଙ୍କ ସ୍ଥିର ଆଖିର ପିଗୁଳା ଉପରେ ଚଳନ୍ତା ଗାଡ଼ିର ଛାଇ ଭାସି ଚାଲିଗଲା ବାରୁ ତାହାଣିକୁ ।

ତେଣେ ଦାସଙ୍କ ଆଖିକୁ ଚେତନା ଉତୁରି ଆସିଲା । ସେ ଦେଖିଲେ ଷ୍ଟେସନ ନାହିଁ; ପଣ୍ଡିତେ ନାହାନ୍ତି । ପଣ୍ଡିତଙ୍କର ଚଉଡ଼ା ଚଉଡ଼ା ମୁହଁ, ଦୋ ଦୋ ଡଉଡ଼ା ଆଖି, ସେଇ ଦୀପଶିଖା ପରି ସରୁ ଉଜ୍ଜ୍ୱଳ ନାକ ଅଳ ଅଳ ହୋଇ ପବନରେ ଦଶିଯାଉଛି, ଫେର ଦଶୁନାହିଁ ।

ଦାସେ ଡବା ଭିତରକୁ ମୁହଁ ଫେରେଇ ବସିଲେ । ଦେଖିଲେ ସେଇ ଯୁବକଟି—କ'ଣ ତା' ନାଁଟି ? ଯାଃ କ'ଣ ମନେପଡ଼ୁଛି ? ତାକୁ ଚାହିଁ ରହିଥାନ୍ତି—ହଠାତ୍ ତାଙ୍କୁ ହସମାଡ଼ିଲା ।

ଆଚ୍ଛା, ପଣ୍ଡିତେ ଏଥିରୁ ଏମିତି ଦାଢ଼ିଗୁଡ଼େ କାହିଁକି ରଖିଛନ୍ତି ? ଧନ୍ୟ ଖିଆଲି ଲୋକ । ବେଶ୍ ମୋଟାଗୋଟା ମଧ୍ୟ ଦଶୁଛନ୍ତି ତ !

ଦାସଙ୍କ ଆଖି ଯୋଡ଼ିକ ଖାଲି ହସେ । ସ୍ୱପ୍ନରେ ବୁଡ଼ିରହିଲା ପରି ଫେଜୁଆ ପଲକହୀନ ଆଖି ଯୋଡ଼ିକ । ତା'ପରେ କିଛି ଚେତନା ଛଳଛଳ ହୋଇ ପୁଣି ଫେରିଆସେ । ସେ ଦେଖନ୍ତି ସେଇ ଯୁବକକୁ, ଯାହାର ନାଁ ତାଙ୍କର ମନେନାହିଁ । ମୋଟ ଉପରେ ସେ ଦିଶେ ପଣ୍ଡିତଙ୍କ

ପର, ନା ସେ ପ୍ରକୃତରେ ପଣ୍ଡିତେ ବା ପଣ୍ଡିତେ ସେ ଯୁବକ ପର ଦିଶୁଥାନ୍ତି—ସବୁ ଗୋଲମାଲିଆ ଧରଯାଏ ।

ସ୍ୱା ଭିତରେ ଡ଼ନଟା ଷ୍ଟେସନ ପାରହୋଇ ରେଲ ଗ୍ଭଲଆସିଲଣି । ଦାସଙ୍କ ଆଖି ବୁଜିହୋଇଗଲ । ତାଙ୍କ୍ ବେଞ୍ଚ ଉପରେ ଧୀରେ ଶୁଆଇଦେଇ ଯୁଗଳକିଶୋର ଭାବଲେ ଯେ ଦାସେ ବୋଧହୁଏ ଶୋଇଗଲେ ।

× × × ×

ବହୁଦୂର ପନ୍ଥା—ପାହାଡ଼ର ଅନ୍ଧାର ଗୁମ୍ଫା ଭିତରୁ ଏ ଅଥଳ ଶୀତଳ ଛଳଛଳ ସମୁଦ୍ର । କେତେ ମୋଡ଼, କେତେ ଭଉଁରୀ, କେତେ ଭଗ ଭଗ, କେତେ ମିଶାମିଶି ପାରହୋଇ ସେ ଯାଏ—ନା, ତାକୁ କିଏ ଟାଣିନେଇଯାଏ—ବିଚ୍ୟୁତି ନଈକୁ ପଗ୍ଭରଲେ ସେ କହିପାରିବ ନାହିଁ । ମୁହାଣ ପାଖେଇଆସିଲେ ବାଲିବନ୍ଧ ସେପାରରୁ ସମୁଦ୍ର ଡାକେ । ସ୍ଥିର ନିଶ୍ଚଳ ହୋଇଯାଏ ନଈ । ଘୂଁ ଘୂଁ ହୋଇ ମହୋଦଧି ବାହୁ ପ୍ରସାରି ତାକୁ ନେଇଯାଏ —ଲୁଣ ଫେଣ ଲହଡ଼ି ଭିତରେ ସେ ହଜିଯାଏ—ମଜ୍ଜିଯାଏ ।

ଅଜ୍ଞତ ପଲ୍ଲୀ ବ୍ରାହ୍ମଣ ଶାସନ ପାଟପୁରର କରିଆସିଥିବା ସନେଇ—ସନାତନ ଦାସ— ଦାସେ ଆଉ ଘଡ଼ିଏ ଗଲେ ଶ୍ରୀକ୍ଷେତ୍ରରେ ପଶିଯିବେ—ମିଶିଯିବେ । ଆଉ ସେ କ'ଣ ଫେରିବ ଯେ, ଫେରବେ ' ତଳମୁହାଁ ନଈ କ'ଣ ଆଉ ଫେରପାରେ ? ଶ୍ରେଷ୍ଟ ବଡ଼ ବାଲିଗରଡ଼ାଟିମାନ ଗୁଡ଼ୁରୁ ଗୁଡ଼ୁରୁ ହଉଥାନ୍ତି - ସେଇଟିମାନଙ୍କ ଭିତରେ ସମସ୍ତ ଅଶାନ୍ତ ଗୁଞ୍ଜରୁଥାଏ । ମାତ୍ର ସେଗୁଡ଼ିକ ସବୁ ଚକ୍‌କଣ, ଘଷି ମାଜି ହୋଇ ପଣସକୋଷା ପର ବେଶ୍ ସାଉଁଳିଆ—କାହାର ଆଉ ଦାଢ଼ ନାହିଁ ଚିକିଏ ବୋଲି । ମାତ୍ର ଏ ସ୍ମୃତିଗୁଡ଼ିକୁ ଏଠି ପଗ୍ଭରେ କିଏ ? ତାଙ୍କ ଉପରେ ସାତ ଝାଲ ପାଣି—କୂଳ ଭାଙ୍ଗୁଛି । ଆଉ ନଈର ସୁଅଟା ମଧ୍ୟ ତ ମରିଯାଉଛି—ତାକୁ ସିନା ଆଶ୍ରା କରି ଏତେ ବାଟ ସେଗୁଡ଼ିକ ଗଡ଼ିଆସିଥିଲେ । ଏବେ ଖାଲି ଜୁଆରକୁ ଅପେକ୍ଷା । ଯେତେବେଳେ ଆକାଶକୁ ଫେଣ ଗ୍ଭଟି ପାଣି ମର୍ଚ୍ଛି ହେଉଥିବ—ବାର ହଉ ନ ଥିବ କିଏ ନଈ କିଏ ସମୁଦ୍ର, ସେତିକି ବେଳେ ପାରଲେ ସମୁଦ୍ରର ଅକଳନ୍ତ ଗର୍ଭକୁ ଟଳିପଡ଼ିଲେ ତେଣିକି ସବୁ ଜଞ୍ଜାଳରୁ ପାର ।

ଶ୍ରୀକ୍ଷେତ୍ରରେ ରେଲରୁ ଓହ୍ଲାଇ ଷ୍ଟେସନ ଏପାରି ଆସିବା ପର୍ଯ୍ୟନ୍ତ ଦାସେ ଭାରି ଗମ୍ଭୀର, ଭାରି ସ୍ଥିର ଦେଖାଯାଉଥାନ୍ତି । ମାତ୍ର ପାଖକୁ ଯାଇ ନିରେଖି ଗ୍ଭହିଁଥିଲେ କିଏ ହେଲେ ଦେଖିଥାନ୍ତା ଯେ ତାଙ୍କ ରୁମଗୁଡ଼ିକ କଦମ୍ବ ଫୁଲ ପରି ଠିଆ ଠିଆ ହୋଇ ରହିଛନ୍ତି । ପାଟିକୁ ପାଟି ଜାବିଧରିବାରୁ ସମ୍ଭାଳିଛନ୍ତି ସିନା, ନ ହେଲେ ଗୋଟାପଣେ ଦୁଇ ପାଟି ଠକ୍ ଠକ୍ ବାଜନ୍ତା । ନିଶା ଖାଇଲା ପରି ଧୀରେ ଧୀରେ ପେଙ୍କୁଆ ପେଙ୍କୁଆ ଆଖି, ପୁଞ୍ଜି ପୁଞ୍ଜି ହରପାଟଳି ଆଖିପତା ।

ମାତ୍ର ଟେଲିପେଲି ହୋଇ ଦାସେ ଆଗେଇବାକୁ ଅସମ୍ଭାଳ । ମନରେ ତାଙ୍କର ପବନ ଲାଗିଛି । ହଡ଼ଗଡ଼ ନ ମାନି ସେ ଭିଡ଼ହୋଇ ଗ୍ଭଲିଛନ୍ତି, କିନ୍ତୁ ଦେହଟା ଦୋହଲି-ପଡ଼ୁଛି । ପ୍ରତିଟି ପ୍ରଶିରାରୁ ଯେମିତି ଚେତନା ଦୁହିଁହୋଇ କୋଉଠି ଗୋଟାଏ ଏକାଠି

ହୋଇଯାଇଛୁ । ଗଣ୍ଡି-ଗଣ୍ଡିରୁ ଜୀବନ ଗ୍ରୁଡ଼ିଯାଇଛୁ ।

ତଥାପି ଧଡ଼ସରେ ଦାସେ ପେଲିଚାଲିଛନ୍ତି ।

ଦାସଙ୍କ ଝୋଲାଖଣ୍ଡି ଧରି ଯୁଗଳକିଶୋର ତାଙ୍କ ପଛେ ପଛେ ଚାଲିଥାନ୍ତି । ଯଦି ଟିକିଏ ଦାସଙ୍କୁ ବ୍ୟସ୍ତେଇଲା ଅବସ୍ଥାରେ ପାଆନ୍ତେ ତ ଖଣ୍ଡେ ରିକ୍ସା ପାଇଁ ପ୍ରସ୍ତାବ କରନ୍ତେ । ମାଡ଼ କାହିଁ ? ଦାସଙ୍କ ଆଖିରେ ଯେ ଜମା ଦୃଷ୍ଟି ନାହିଁ । ଗୋଡ଼ ଟଳମଳ । ତଥାପି ପାଦକୁ ଘୋଷାରି ଘୋଷାରି ସେ ଚାଲୁଛନ୍ତି ।

ହଠାତ୍ ଦାସେ ବାଟ ଛାଡ଼ି ଅବାଟରେ ପଶିଗଲେ । ଜଣକ ଘରକୁ ସଳଖିଥିବାର ଦେଖି ଯୁଗଳକିଶୋର ବୁଝିଲେ ଯେ ଦାସଙ୍କୁ କିଛି ଦେଖାଯାଉ ନାହିଁ । ପଣ୍ଡିତଙ୍କ କଥା ମନେପଡ଼ିଲା—'ଦେଖୋ ଭାଇ, ଯବ୍ ୱେ ହୋସ୍ ମେ ନହିଁ ହୋଙ୍ଗେ, ତବ୍ ଉନ୍‌କୋ ଖିଦ ସଁଭାଲ୍‌ଲେନା ।'

ସେ ଦାସଙ୍କ ହାତ ଧରି ତାଙ୍କୁ ଖଣ୍ଡେ ରିକ୍ସାରେ ବସେଇଲେ । ଚାଲିଲେ ସିଧା ସିଂହଦ୍ୱାର ସଳଖ । ଦାସେ ସେମିତି ମୂକ ହୋଇ ବସିଥାନ୍ତି । କେତେବେଳେ ତାଙ୍କୁ ବାଇଶି ପାହାଚ ପାରି କରି ନେଇ ଠିଆକରେଇ ଦିଆଗଲାଣି, ତାଙ୍କ ଗୋଚର ନାହିଁ ।

ତାଙ୍କର ହଠାତ୍ ଏକଠି ଚେତନା ଉଭରି ଆସିଲା । ସେ ଚାରିଆଡ଼କୁ ମଟମଟ କରି ଚାହିଁଲେ । ନିମିଷକେ ଅସମ୍ଭବ ସମ୍ଭବିଗଲା ପରି ତାଙ୍କୁ ଲାଗିଲା । ମନର ନୀଳାଚଳ ଗଳିଆସି ପୁଣି ପଥର ପାଲଟିଗଲା କି ଆଉ !! ତାଙ୍କୁ ଲାଗିଲା ତାଙ୍କର ଭିତର ବାହାର ସବୁ ଘୂ ଘୂ ମେଲା । ଅଶ୍ରୁ ପୁଲକରେ ଚୂରି ହୋଇଗଲା ତାଙ୍କର ଦେହ, ମନ, ଅହଙ୍କାର । ସେ ମୁଖଶାଳା କାନ୍ଥକୁ ଆଉଜି ଅଣାୟତ୍ତରେ ଭୂଷୁଡ଼ି ପଡ଼ିଲେ । ବୃଷ୍ଟି ହୋଇଗଲା ପଥରରେ, ପବନରେ, ଆକାଶରେ ତାଙ୍କ ଚେତନାର ପରାଗ ।

ବହୁ ଉପଚାର ହେଲା ପରେ ସେ ଆଖି ଫିଟେଇ ପୁଣି ଦେଖିଲେ, ସ୍ୱପ୍ନ ଆହୁରି ସତ୍ୟ ହୋଇ ରହିଛି । ନୀଳାଚଳର ଇମାରତିମା ପଥରକୁଚ ତାଙ୍କର ପ୍ରାଣ ନେଇ ଚକାମାଲି ପକେଇ ବସିଛନ୍ତି । ପବନ ତାଙ୍କୁ ଏପାରି ସେପାରି ଭେଦ ବୋହିଯାଉଛି । ଆକାଶ ତରଳି ଛୁଡ଼ିପଡ଼ୁଛି ତାଙ୍କ ଉପରେ । ତଥାପି ବାହାରଟା ତାଙ୍କର ବେଶ୍ ସ୍ଥିର । ପଦ୍ମ ଡୋଳିବାକୁ ଆଣ୍ଠୁଏ ପାଣିରୁ ଘୂଞ୍ଚି ଘୂଞ୍ଚି ଯାଇ ସେ ଯେପରି ଚୂଲ ବୁଡ଼େଇଦେଲେଣି । ତାଙ୍କ ଭିତରେ ବାହାରେ ସେଇ ପାଣି ଉବେଇ-ଟୁବେଇ ଲହଡ଼ି ଭାଙ୍ଗୁଛି ଓ ସେ ଆହୁରି ଆହୁରି ଗହୀରକୁ ବୁଡ଼ି-ଯାଉଛନ୍ତି ।

ଟିକିଏ ଅଶଳ ଅଶଳ ହାତରେ ସେ ପଥରକୁ ଦରାଣ୍ଡି ଉଠି ଠିଆହେଲେ । ଗୋଡ଼ ବଢ଼େଇଲେ ଆଗେଇବାକୁ । ତାଙ୍କୁ ଆଉ ଆଗ ପଛ କିଛି ଦିଶୁନାହିଁ—ଦେହ ଗ୍ରାଚର ଉହାଡ଼ରେ ରହିଯାଉଛି । ସେ ଛଡ଼େଇ ହୋଇ, ଆଡ଼େଇ ହୋଇ ପଶିଗଲେ । ଗରୁଡ଼ ଖମ୍ବକୁ ପାଣି ଭାବି ତାହାରି ଭିତରେ ଡେଇଁପଡ଼ିବାକୁ ବା ନିଜେ ସେଇ ଖମ୍ବ ହୋଇ ଆଉ କେଉଁଠିକୁ ଡେଇଁପଡ଼ିବାକୁ । ଫଳ ହେଲା, ସେ ତାକୁ ଜାବୁଡ଼ି ଧରି ପଡ଼ିକେ ଏକାକାର ହୋଇଗଲେ ।

କେତେବେଳେକେ କୃଷ୍ଣ ହୁଗୁଳିଗଲ, ସେ ବି ପାଖକୁ ବୋହିପଡ଼ିଲେ । ଆଖି ଫିଟିଗଲା, ଆଉ ଫିଟି ରହିଗଲା । ହାତଟି ହାତ, ଗୋଡ଼ଟି ଗୋଡ଼, ନିର୍ବିକାର ପଡ଼ିଗଲେ । ତାଙ୍କ ତଳେ ପଥର ଚକ ତରଳିଲା ନା ଢଳରେ ପଥର ବାଡ଼ ତରଳିଲା କହି ହେଉ ନାହିଁ— ମାତ୍ର ସେ ନିଜେ ତରଳିଗଲେ, ବୋହିଗଲେ ଶରୀରର ହାଡ଼ ଭେଇଁ । ମୁହଁରେ, ଦେହରେ ତାଙ୍କର ଅସୀମ ମହାଶୂନ୍ୟର ଗ୍ରୁପ । ଯେତେ ଯେପରି ସାରସ୍ଥାନ, ରସସ୍ଥାନ ଦୁର୍ବଳ ଖୋଲପାଟିଏ, ପ୍ରାଣରସସବୁ ନିଗିଡ଼ିଯାଇଛି । ଶୋଷି ହୋଇ ଶୁଖିଯାଇଛି କେଉଁଆଡ଼େ ।

ଦାସଙ୍କର ବଡ଼ ଅସାଷ୍ଟମ ଅବସ୍ଥା ।

ଯୁଗଳକିଶୋର ଭିତର ଅର୍ଗଳ ପାଖରେ କାହିଁ କେତେ ବେଳ ଧରି ଠିଆ ହୋଇ ରହିଯାଇଛନ୍ତି, ମଜ୍ଜି ଯାଇଛନ୍ତି ଅପୂର୍ବ ରସରେ । ହଠାତ୍ ପାଟିତୁଣ୍ଡ ଶୁଣି ଲେଉଟି ଚାହିଁଲେ । ଲୁହ ପୋଛୁ ପୋଛୁ ଗରୁଡ଼ଖମ୍ବ ପାଖକୁ ଆସି ଦେଖିଲେ ଦୁଇ ତିନ ଜଣ ଦାସଙ୍କୁ ଛୁଆବାଇଆ କରୁଛନ୍ତି । ତାଙ୍କୁ ଚାଉଁକିନା ଲାଗିଲା । ଦେବାଳୟରେ ଏ କି ଅଘଟଣା ! ସେ ଆଉ କିଛି ବିଚାର ନ କରି ଦାସଙ୍କୁ ଟେକି ଧରି ବାହାରିଆସିଲେ । ପଛରେ ତାଙ୍କର ଅନେକ ଲୋକ । ତାଙ୍କର ଜଲୁ ମନେପଡ଼ୁଥାଏ ସେଇ ନିଗ୍ରୁଟିଆ ଯମୁନା ଘାଟ, ନିସ୍ତବ୍ଧ ରଜନୀ, ଆଉ ଦାସଙ୍କର ଓଦା-ସରସର ଚେତନାହୀନ ଦେହ ।

ବର୍ତ୍ତମାନ ଯିବେ ସେ କୁଆଡ଼େ ? ହଉ, ଯାଉ ଯାଉ ଯୁ'ଠି ପହଞ୍ଚିଗଲେ ।

ସେତେବେଳକୁ ବେଳବୁଡ଼ ସମୟ । ଲୋକଙ୍କ କୌତୂହଳ ମରିଯିବାରୁ ଆସ୍ତେ ଆସ୍ତେ ସମସ୍ତେ ଓହରିଗଲେ । କିଛି ସମୟ ଚାଲି ଚାଲି ଯୁଗଳକିଶୋର ଦେଖିଲେ ସେ ସେ ଆସି ସମୁଦ୍ରକୂଳରେ ପହଞ୍ଚିଯାଇଛନ୍ତି ।

ଦାସଙ୍କୁ ବାଲିରେ ଶୁଆଇଦେଇ ତାଙ୍କର ଶୌଚକ୍ରିୟା ଆଦି କରି ଲୁଗା ବଦଳ କରଉ କରଉ ରାତି । ସେ ଜମା ବିବ୍ରତ ହେଉ ନ ଥାନ୍ତି । ତାଙ୍କୁ ନିର୍ଦ୍ଦେଶ ଥାଏ, ସେ କେବଳ ଅପେକ୍ଷା କରି ରହିବେ ।

ସମୁଦ୍ର ବି ତାଙ୍କୁ ଖୁବ୍ ଧରିଛି । ତାଙ୍କୁ ସେ ଦେଖାଯାଉଛି ଯେମିତି ଆକାଶ ତରଳି ପାଣିହୋଇଯାଉଛି । ସମୁଦ୍ରର ନେଳୀ ସୀମାରେଖାରେ ଆକାଶ ଯୋଗି ପଡ଼ୁଛି । ଲହଡ଼ି ଉଠିଲାବେଳେ ମନେହେଉଛି, ଯେମିତି ପାହାଡ଼ର ଶିଖରମାନ ଗୁଣ୍ଡ ହୋଇ ଝଡ଼ି ପଡ଼ୁଛନ୍ତି; ଖାଇ ଚୂରି ଫେଣ ହୋଇଯାଉଛନ୍ତି । ଘୂ ଘୂ ଗର୍ଜନ ଯେମିତି ପୃଥିବୀର ପେଟ ଭିତରୁ ଗୁମୁରି ଉଠୁଛି ।

ରାତି ନଇଁଆସିଲା ସମୁଦ୍ର ଉପରକୁ । ଗ୍ରୁପଗ୍ରୁପିଆ ମେଘ, ସିର୍‌ସିରିଆ ପବନ ।

ବାଲି ଉପରେ ନିଶ୍ଚଳ ନିର୍ବେଦପରି ପଡ଼ିରହିଛନ୍ତି ଦାସେ ।

ମଝିରେ ମଝିରେ ତାଙ୍କର ଭୁକୁ ବାରି ଯୁଗଳକିଶୋର ଯେମିତି ଜଗି ବସିରହିଛନ୍ତି ।

ରାତି ଆଗେଇଲା ।

ମେଘ ଭାଙ୍ଗିଗଲା ।

ବୈଶାଖ ମାସର ବାମ୍ପିଆ ଆକାଶରେ ତାରା ଫୁଟିପଡ଼ିଲେ, ଅଜାଡ଼ି ହୋଇ ପଡ଼ିଲେ

ଲକ୍ଷ ଲକ୍ଷ କୋଟି କୋଟି ହୋଇ ।

ହୁ ହୁ ହୋଇ ପବନ ବହୁଥାଏ ।

ଅଧରାତିଆ ଜୁଆରରେ ଗର୍ଜୁଥାଏ ଅନ୍ଧାରିଆ ସମୁଦ୍ର—ଗୁରୁଣ୍ଡି ହେଉଥାଏ ଏଡ଼େ ବଡ଼ ବିଶାଳ ସମୁଦ୍ରଟା ।

ପ୍ରତି ତାରା ମିଟିମିଟି ହସୁଥାଏ ।

ମାତ୍ର ପ୍ରଶାନ୍ତ ଆକାଶ ନିଶ୍ଚଳ ସ୍ଥିର ରହିଥାଏ—ତଳତଳ ନିର୍ମଳ ଅମାପ ଗମ୍ଭୀର ଆକାଶ ।

ଆଉ ନିଶ୍ଚଳ ପଡ଼ିରହିଥାଏ ପୃଥିବୀ !

ବହଳିଆ ରାତିଟା ମାଡ଼ି ପଡ଼ୁଥାଏ, ମାତ୍ର ନିଃଶବ୍ଦରେ ଯୁଝୁ ଗୁଲୁଥାଏ । ସ୍ଵରଆଡ଼ୁ ଗୋଟାଏ ଶାଗ ଖାଇ ଘୁରି ଯେମିତ ଦେଖୁରହିଛି, ଆସ୍ତେ ପାକଳ କାଟି ରୁନ୍ଧ ଆଣୁଛି ଦଣ ଦଗରୁ ।

କେତେବେଳକେ ଅନ୍ଧାର ଛନ୍ ଛନ୍ ହୋଇ ଅସରୁଥିଲା । ଜାଣି ନ ଜାଣ ଥମିଗଲା ସମୁଦ୍ରର ଗର୍ଜନ—ଅଧରାତର ମତାଣିଆ ପବନ ବି ଧିମେଇଗଲା । ତାରାସବୁ ଦିଶିଲେ ଜାଣ ନ ଜାଣ ଫାକାସିଆ ।

ଦାସଙ୍କର ଦେହ ବରଡ଼ାପତ୍ର ପରି ଥରୁଥିଲା । ଘନ ଘନ ଥରିଲା ଠକ୍ ଠକ୍ ହୋଇ । ଝାଳରେ ବାଲି ଭିଜିଗଲା ।

ସେତେବେଳକୁ ପାହାନ୍ତାର ପହିଲି ପହର ।

ଦାସଙ୍କର ଆଖିପତା ଫିଟିଗଲା, ଲୁହ ବୋହିଗଲା, ଚେତନା ଯେମିତ ଫେରିଆସିଲା । ଟିକିଏ ପାଣି ପାଟିରେ ଦେବାରୁ କଣ୍ଠ କଳ ଆଡ଼େ ବୋହିଗଲା ।

ବଡ଼ ବ୍ୟସ୍ତ ହେଲା ପରି ସେ ମୁଣ୍ଡଟାକୁ ଏପାଖ ସେପାଖ ଘଡ଼ଉଥାନ୍ତି । କିନ୍ତୁ ଶରୀର ନିଶ୍ଚଳ ହୋଇ ପଡ଼ିରହିଥାଏ । ହଠାତ୍ ପାଦଅଙ୍ଗୁଠିଠାରୁ ତଙ୍କ ଶିରା ପର୍ଯ୍ୟନ୍ତ ଟାଣିହୋଇଗଲା ଧନୁଗୁଣ ପରି । କାଠି ପରି ହାତଦିଟା ଗୁଡ଼ିହୋଇଗଲା । ଦେହସାରା ଥରେଇ ପାଟିରୁ ପବନ ହାବୁକାଏ ବାହାରିଲା—ଶବ୍ଦ ନାହିଁ, ନାଦ ନାହିଁ, କେବଳ ପବନଟା, ପ୍ରାଣବାୟୁର ଶେଷ ଅଞ୍ଜୁଳାକ—

ଯୁଗଳକିଶୋରଙ୍କୁ ଲାଗିଲା ଯେ ସେଇ ନାଦହୀନ ପବନରେ ଶୁଣିପାରିଲେ ଦାସଙ୍କ ଶରୀରର ଶେଷ ଆକୁତ—'ଜଗନ୍ନାଥ' !!

ମହାକାଳ ମୁଖକୁ ପଡ଼ଶାରେ ରଖି ସେ ବସିରହିଲେ ।

ସକାଳ ହେବ । ସକାର ହେବ ।

# ପ୍ରାଣୀର ଭଲମନ୍ଦ ବାଣୀ

ଦିନେ ଏମିତି ଗୋଠବାହୁଡ଼ାବେଳକୁ ନୀଳକଣ୍ଠ ପଣ୍ଡିତେ ଆସି କାହ୍ନୁ ତେଲୁଣୀ ଘର ଆଗରେ ପହଞ୍ଚିଛନ୍ତି, ସେଆଡ଼ୁ ବୃନ୍ଦା ନାହାକ ଓଲଟି ହେଇହେଇକା ବାହାର-ଆସୁଛି ।

ପଣ୍ଡିତେ ଏବେ ଦୁଇଓଳି ଗାଁ ଦାଣ୍ଡେ ଦାଣ୍ଡେ ସେମିଏ ଲେଖାଁ ବୁଲୁଛନ୍ତି । ଚାଲିବାକୁ ସଜ ହେବ ବୋଲି ପୁଅ ମୋଟା କନାର ପାଣ୍ଡେଇ ହଲେ ଆଣିଦେଇଛି । ଶିଙ୍ଗର ଖଣ୍ଡିଏ ଛଡ଼ି ମଧ୍ୟ ଆଣିଦେଇଛି । ମୁଠିଟା ତାର ହାତିଦାନ୍ତ । ସକାଳ ସଞ୍ଜରେ ଏମିତି ବୁଲିଲେ ପଣ୍ଡିତଙ୍କ ବାୟୁଦୋଷଟା କଟିଯିବ ବୋଲି ପୁଅ ଇନ୍ଦ୍ରମଣି କହୁଥିଲା ।

"ଆଜ୍ଞା, ନମସ୍କାର ।"

"ସର୍ବାରିଷ୍ଟ ଶାନ୍ତିରସ୍ତୁ । କିଏ ନାହାକେ, କୁଆଡ଼େ ବାହାରିଲ ?" ପଣ୍ଡିତଙ୍କର କୋଳି ପରି ପାନପଗୁ ଦାନ୍ତ ଗଣ୍ଡାକ ଦାଢ଼ିସନ୍ଧାରୁ ଝଟକୁଥାଏ ।

ବୃନ୍ଦା ନାହାକେ ଅଟକିଲେ । ପଣ୍ଡିତେ ମଧ୍ୟ ।

"ଆଉ କ'ଣ ? ତମେ ତ କାମ ଛାଡ଼ିଦେଲ—ସେଇଦିନୁ ତମ ସାକ୍ଷାତ ଆଉ ମିଳିବାକୁ ଅପୂର୍ବ ।"

"ନାହିଁ ଆଜ୍ଞା, ଆମେ ଆପଣଙ୍କ ସେବକ ବୋଲି ଜ୍ଞାନ କରନ୍ତୁ । ମୁଁ କ'ଣ ନ ଆସି ରହନ୍ତି କି ? ମୋର ତ ଆଜକୁ ଛଅ ମାସ ହେଲା ବୁକୁରେ କ'ଣ ଗୋଟେ ଗୋଳା ଗୋଳା ହୋଇ ପବନ ଉଠୁଛି ଯେ ଆଉ ବେଶି ଦିନ ନାହିଁ ପରି ଲାଗିଲାଣି ।"

ପଣ୍ଡିତେ ଅନ୍ୟମନସ୍କ ହେଇ ଗୋଟେ ଆଡ଼େ ଚାହିଁରହିଛନ୍ତି ଦେଖି ନାହାକେ ଆଖି ଫେରେଇଲେ । ସବୁ ବୁଝିଗଲେ । କହିଲେ, "ଅହୋ, ସତେ ଦାସଙ୍କୁ ଦଇବ-ଦଣ୍ଡ ପଡ଼ି ତାଙ୍କ ସଂସାର ସାରିଦେଲା । ସେ ରଘୁ ଟୋକା ଏ ଘର ଝଣ୍ଟକର କ'ଣ ହେଲେ ବ୍ୟବସ୍ଥା କରିଦିଅନ୍ତା ନାହିଁ ? କାହ୍ନୁ ତେଲୁଣୀ କହୁଥିଲା, ଦାଣ୍ଡର ଏପାଖ ସେପାଖ ଘର ହବ, ବଡ଼ ସଜ ହୁଅନ୍ତା ଯେବେ ଏ ଭିଡ଼ିହଟା ରଘୁନାଥ ବିକିଦିଅନ୍ତା ।"

ପଣ୍ଡିତେ ସେଇଆଡ଼େ ଚାହିଁରହି କହିଲେ, "ଆଛା, ଦାସେ ମଦନପୁରରୁ କୁଆଡ଼େ ତୀର୍ଥ ଯାଇ ଫେରିନାହାନ୍ତି ପରା !"

"ବଡ଼ ଆଶ୍ଚର୍ଯ୍ୟ କଥା ମହାଶୟେ, ଆପଣ ତା'ହେଲେ କିଛି ଶୁଣି ନାହାନ୍ତି ? ମୁଁ ଭାବୁଥିଲି ଆପଣ ସମସ୍ତ ଜାଣନ୍ତି ବୋଲି । ଦାସଙ୍କର ପରା କାଳ ହୋଇଗଲା ।"

"ଏଁ ?"

"ଆଜ୍ଞା ହଁ, ମୁଁ ହେଲେ କ'ଣ ଜାଣିଥିଲି କି ? ଆଜି କ'ଣ ବାଳିଆ ଜଗନ୍ନାଥ ରଘୁନାଥ ପଠେଇଥିଲା ପାନ ବୁଢ଼ା ପାଖକୁ । ସେଥିରେ ଲେଖିଥିଲା ଯେ ପୁସ୍କରେ ବାସଙ୍କ ଦେହାନ୍ତ ହେଲା । ସେକଥା ବୃନ୍ଦାବନରୁ ଲେଖିଛନ୍ତି ଯେ ତାଙ୍କ ସାଙ୍ଗରେ ତୀର୍ଥ କରୁଥିଲେ ।"

"ଓଃ, ବଡ଼ ପୁଣ୍ୟ ଫଳ ଥିଲା ସେ ଲୋକଟାର । ଧର୍ମିଷ୍ଠ ଲୋକଟା ତ, ଛନ୍ଦ କପଟ ନ ଥାଏ ତା'ଠି, ନ ହେଲେ କି ସେ ଶ୍ରୀକ୍ଷେତ୍ରରେ ମରିଥାନ୍ତା ।"

"ପାଟିରେ ପାଣି ଟିକିଏ ଦେବାକୁ ମାତ୍ର କେହି ନ ଥିଲେ । ପୁଅ ହେଲେ ଆଗରୁ ଶୁଣିଥାନ୍ତା ! ହଁ, ଛାଡ଼ନ୍ତୁ, ଯାହା କପାଳ ଲିଖନ ତାଙ୍କୁ ଆନ କରିବାକୁ ପୁଅ କିଏ ?"

ବୁଢ଼ା ନାହାକେ ଓଲଗି ପକେଇ ନଇଁ ନଇଁ ବାହାରିଗଲେ ।

ମାତ୍ର ନୀଳକଣ୍ଠ ପଣ୍ଡିତେ ଥକ୍କା ହେଲା ପରି ସେମିତ ଅଗାତକୁ ଗୃହିଁ ଠିଆହୋଇ ରହିଗଲେ । କେତେ କେତେ ଆଗକଥା ସବୁ ଛବିପରି ଦିଶୁଥିବ ପରି । "ଯ' ହେ, ତମେ ସେ ପଣ୍ଡିତସବୁକୁ ଗଲ ଆମକୁ ଗୌରବ ନା !" ଆହା, ଏତେ ନିର୍ମଳ ମନରେ ସେ ଏକଥା କହିଲ ! ଫେରିଲା ବାଟରେ ବୈକୁଣ୍ଠ କବିରାଜ ତାଙ୍କ ଘରେ ମୁହିଁମାରିବାକୁ କେତେ ସଂକୋଚରେ ସନ୍ତର୍ପଣରେ ସେ କହୁଥାନ୍ତି, ପଇସା ନଥାଏ ବୋଲି ସିନା ଝିପରିକାଳେ ଏମିତ କେହିବି ସେ ହୁଅନ୍ତି ! ଗଲା ଟିକ—ପାରିଥିଲେ ସେ ଯାଇଥାନ୍ତା କାଶୀ, ସେଇ ହେଇଥାନ୍ତା ପଣ୍ଡିତ । ମାତ୍ର ଭାଗ୍ୟ ଭଣା ଲୋକଟାର । "ଏଥିକୁ ଖାଇ ମନରେ କିଛି ଘେନା କରିବ ନାହିଁ । ଭାଗ୍ୟ ହାତରେ ତୁମେ ଯେମିତ ଅସହାୟ, ମୁଁ ମଧ୍ୟ ସେମିତ । ମୋତେ ଏବେ ଯେ ଗୃହିଁଲ ଉପରକୁ ଟେକନେବ ବୋଲି—ନେଲା ମଧ । ମାତ୍ର ସେଥିରେ କ'ଣ କିଛି ଥାଏ ? ତମ ପୁଣ୍ୟବଳ କାହାର ଅଛି ଭଲା ?"

ବୁଦ୍ଧିବା ଲୋକଟା ତ ନୀଳକଣ୍ଠ ପଣ୍ଡିତ । ନିଗ୍ରହିଆ ମଇଳିଆ ମୁଣ୍ଡା ଡିହଟାକୁ ଗୃହିଁ ଅଖି ତାଙ୍କର କଲେଇଆସିଲା । ସେ ମୁହଁ ଫେରେଇ ଦୃଇ ପାହୁଣ୍ଡ ଆଗକୁ ଯାଇଛନ୍ତି କି ନାହିଁ ପୁଣି କ'ଣ ଭାବି ମୁଣ୍ଡ ପୋତ ସେଠୁ ଲେଉଟିଲେ । ଆଜି ତାଙ୍କର ବୁଲା ଏତିକି ।

---